ଶ୍ରୀ ଶ୍ରୀ ମଦନମୋହନଜୀଉ ମଠ,
ଖଣ୍ଡିତର

# ଐତିହ୍ୟ ଓ ସଂସ୍କୃତି



ସଂପାଦକ

ପ୍ରାଧାପକ ସୁଶାନ୍ତ କୁମାର ପଣ୍ଡା

ପ୍ରକାଶକ

ମହନ୍ତ ଶିଶିର କୁମାର ଭାରତୀ

# ଶ୍ରୀ ଶ୍ରୀ ମଦନମୋହନଜୀଉ ମଠ,
# ଖଣ୍ଡିତର
# ଐତିହ୍ୟ ଓ ସଂସ୍କୃତି

**ସଂପାଦନା: ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା**

ବାରବାଟୀ, ଧର୍ମଶାଳା, ଯାଜପୁର

ଫୋନ୍:- ୯୮୬୧୭୨୨୨୫୮

**ପ୍ରକାଶକ- ମହନ୍ତ ଶିଶିର କୁମାର ଭାରତୀ**

କେଉଟଲଗୁଆଁ, ଖଣ୍ଡିତର, ରସୁଲପୁର, ଯାଜପୁର

ଫୋନ୍: ୯୬୬୮୩୯୯୦୧୩

**ପ୍ରକାଶ କାଳ: ୨୦୨୨- ଦେବାଭିଷେକ ପୂର୍ଣ୍ଣିମା**

**ଡି.ଟି.ପି- କୃଷ୍ଣା**

ଜାରକା, ଧର୍ମଶାଳା, ଯାଜପୁର

ଫୋନ୍: ୯୨୩୮୫୧୯୮୧୫

**ମୂଲ୍ୟ:- ଶ୍ରଦ୍ଧା**

# ସୂଚୀପତ୍ର



## ସୃଜନ

## ନବକିଶୋର ପଦାବଳୀ-୬

ଭଜନ, ଜଣାଣ..........

## ସଂସ୍କୃତି

## ମଠ ପରିକ୍ରମା-୧୧୦



ମହନ୍ତ ଶ୍ରୀ ନବକିଶୋର ଭାରତୀ ଗୋସ୍ୱାମୀ



# ସୃଜନ

# ନବକିଶୋର ପଦାବଳୀ





# ନବକିଶୋର ପଦାବଳୀ ସମ୍ବନ୍ଧରେ ପଦେ

ମଦନମୋହନ ମଠ ଖଣ୍ଡିତର ଅତଃ ପୂର୍ବବର୍ତ୍ତୀ ମହନ୍ତ ଗୋସ୍ୱାମୀ ନବକିଶୋର ଭାରତୀ ଜଣେ ସଂଗୀତ ବିଶାରଦ ତଥା ବିଚକ୍ଷଣ ପ୍ରତିଭାଧର ବ୍ୟକ୍ତି ଥିଲେ । ଶ୍ରୀମଦନ ମୋହନଙ୍କ ସେବା- ପୂଜାରେ ନିଜକୁ ସମର୍ପି ଦେଇଥିବାରୁ ଯାନିଯାତ୍ରା, ଦୋଳ, ଝୁଲଣ, ମେଲଣ ପ୍ରଭୃତି ଦେବକାର୍ଯ୍ୟ ସର୍ବାଂଗ ସୁନ୍ଦର କରିବାରେ ସତତ ପ୍ରୟାସ ହେଉଥିଲେ । ଓଡ଼ିଶୀ ବୈଷ୍ଣବ ସନ୍ଥ କବିମାନଙ୍କର ରଚନାବଳୀର ସମୁଚିତ ପରିବେଷଣ ସହ ସ୍ୱରଚିତ ନୈମିତ୍ତିକ ଭକ୍ତିଗୀତିକାମାନ ରଚନା କରି ପାରଂପାରିକ ରାଗ- ତାଳ ଆଧାରରେ ପରିବେଷଣ କରାଉଥିଲେ । କହିବା ବାହୁଲ୍ୟ- ଯେ ମଠ ଆଶ୍ରୟରେ ଏବଂ ମହନ୍ତଙ୍କ ପ୍ରେରଣା ଦ୍ୱାରା ବହୁ କଣ୍ଠଶିଳ୍ପୀ ସୃଷ୍ଟି ହେବାର ଦୃଷ୍ଟାନ୍ତ ରହିଛି । ତତ୍‌କାଳୀନ ପ୍ରସାର ମାଧ୍ୟମ ରେଡ଼ିଓରେ ସ୍ୱୟଂ କଣ୍ଠଶିଳ୍ପୀର ମାନ୍ୟତା ପ୍ରାପ୍ତ ହୋଇଥିଲେ ।

ମଠରେ ଆରାଧ୍ୟ ଦେବତା ମଦନମୋହନ କଳା ମୁଗୁନି ପଥର ନିର୍ମିତ ବିରଳ ଷଡ଼ଭୁଜ ବିଗ୍ରହ; ଉପର ଚାରିଭୁଜରେ ଶଂଖ, ଚକ୍ର, ଗଦା, ପଦ୍ମ ଏବଂ ତଳ ଦୁଇଭୁଜରେ ବଂଶୀ ଧାରଣ କରିଅଛନ୍ତି । ଏପରି ବିରଳ ମୂର୍ତ୍ତି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ । ମୂର୍ତ୍ତି ତାତ୍ତ୍ୱିକ ବିଚାରରେ ଏ ଧରଣର ମୂର୍ତ୍ତିକୁ 'ବିଷ୍ଣୁ କୃଷ୍ଣ' ବା 'କୃଷ୍ଣ ବିଷ୍ଣୁ' କୁହାଯାଏ । ଗୋସ୍ୱାମୀ ନବକିଶୋର ଭାରତୀଙ୍କ ମଠାଧୀଶ କାଳରେ ନିତ୍ୟ, ନୈମିତ୍ତିକ ପୂଜାବିଧି ଖୁବ୍ ଆଡ଼ମ୍ବର ସହକାରେ ପାଳିତ ହେଉଥିଲା । ଦୂରଦୂରାନ୍ତରୁ ଭକ୍ତମାନେ ଶ୍ରୀଦେବଙ୍କ ଆଶିଷ ଲାଭ କରିବା ପାଇଁ ସମବେତ ହେଉଥିଲେ । ପୁନଃ ଜଗନ୍ନାଥ ସଡ଼କ- ଖରସ୍ରୋତା ନଦୀ ନୌକା ଘାଟ ନିକଟରେ ଆଶ୍ରମ ଅବସ୍ଥିତ ହେତୁ ବଂଗଳା, ବିହାର, ଉତ୍ତରପ୍ରଦେଶ ପ୍ରଭୃତି ଦୂର ସ୍ଥାନରୁ

ଶ୍ରୀଜଗନ୍ନାଥ- ପୁରୀଙ୍କୁ ଦର୍ଶନ କରିବା ମାର୍ଗରେ ସାଧୁ, ସନ୍ଥ, ଭକ୍ତ, ମହନ୍ତ, ସେବକ ଇତ୍ୟାଦି ଶ୍ରଦ୍ଧାଳୁମାନଙ୍କୁ ମଠରେ ଆତିଥେୟତା ପ୍ରାପ୍ତ ହେଉଥିଲା । ସେହି କ୍ରମରେ ଭକ୍ତି ସଂଗୀତ ଆସର ମଧ୍ୟ ହେବା ଖୁବ୍ ସଂଭବ । ହିନ୍ଦୀ 'ଗଜଲ' ରଚନା ଏହି ଅନୁମାନକୁ ପୁଷ୍ଟ କରିଥାଏ ।

ମହନ୍ତ ମହାରାଜ ନିଜ ଯୌବନ କାଳରୁ ଶ୍ରୀଦେବଙ୍କୁ ଆଧାର କରି ଭକ୍ତ, ସନ୍ଥ, କବି, ଗୋପାଳକୃଷ୍ଣ, ଗୌରହରି, ଗୌରଚରଣ, ବନମାଳୀ, ଦୀନବଂଧୁ ରାଜ ହରିଚନ୍ଦନ, ସୋମନାଥ ସିଂହ ପ୍ରମୁଖ ଗୀତିକବିମାନଙ୍କ ପୁଷ୍କଳଧାରା ଅନୁବର୍ତ୍ତୀ ହୋଇ ଅଜସ୍ର ଭକ୍ତି ଗୀତିକା ତଥା ଅନ୍ୟ ବିଷୟ ଆଧାରିତ ସଂଗୀତ ମାନ ରଚନାରେ ପ୍ରବୃତ୍ତ ହୋଇଥିଲେ । ଦୀର୍ଘକାଳର ବ୍ୟବଧାନରେ ତାଙ୍କ ସ୍ୱହସ୍ତ ରଚିତ ପାଣ୍ଡୁଲିପିର ବହୁ ଅଂଶ ବିନଷ୍ଟ ହୋଇଯାଇଛି । ଅନେକର ପାଠୋଦ୍ଧାର ଅସଂଭବ । ଯାହାକିଛି ସୁରକ୍ଷିତ ଅବସ୍ଥାରେ ଥିଲା ତାକୁ ହିଁ ବର୍ତ୍ତମାନ ପୁସ୍ତକ ଆକାରରେ ପ୍ରକାଶ କରିବାର ଉଦ୍ୟମ କରିଛନ୍ତି ବର୍ତ୍ତମାନର ମଠାଧୀଶ ଶିଶିର କୁମାର ଭାରତୀ ମହୋଦୟ ।

ଏବେ ଆମେ ସଂପୃଟିତ ଗୀତିକା ସମ୍ବନ୍ଧରେ କିଛି ବିଚାର କରିବା । ଉପଲବ୍ଧ ଗୀତିକାଗୁଡ଼ିକ ମଧ୍ୟରୁ ଅନେକ ପ୍ରୟୋଜନ ନିମିତ୍ତ ରଚିତ । ସହଜାତ ପ୍ରତିଭା ଏବଂ ଅନୁକୂଳ ପରିସ୍ଥିତି ପ୍ରେରଣାରୁ ଭାବ କଲ୍ଲୋଳିତ ଭକ୍ତିସ୍ରୋତ ପରିପ୍ରକାଶ ଲାଭ କରିଛି ସ୍ୱଚ୍ଛନ୍ଦ ରୀତିରେ ।

(୧) ହୋରି- ମହନ୍ତ ମହାରାଜଙ୍କ ସଦୁଦ୍ୟମରେ ଖଣ୍ଡିତର ଠାରେ ରାଧାକୃଷ୍ଣ ମିଳନ (ମେଲଣ) ଅନୁଷ୍ଠିତ ହେଲା । ପୂର୍ବ କଥିତ ଯଶସ୍ୱୀ କବିମାନଙ୍କ ତଦ୍‌ଭାବାପନ୍ନ ସଂଗୀତମାନ ଗାନ ହେବା ସହିତ ସ୍ୱରଚିତ ଗୀତିକାମାନ ମଧ୍ୟ ବହୁ ସଂକୀର୍ତ୍ତନ ମଣ୍ଡଳୀ ଦ୍ୱାରା କୀର୍ତ୍ତନରେ ଗାନ କରାଯାଉଥିଲା । ତତ୍‌କାଳୀନ ସଂଗୀତ ପ୍ରେମୀଙ୍କ ମଧ୍ୟରେ ଏଯାବତ ସେ ସକଳରୁ କିଛି ପୁରୁଷାନୁକ୍ରମେ ପରପିଢ଼ିକୁ ସଂଚରୀ ଆସିଛି । ଦୃଷ୍ଟାନ୍ତ ସ୍ୱରୂପ ଗୋଟିଏ ପଦ ଦେଖନ୍ତୁ-

ବୃନ୍ଦାବନେ ବନେବନେ ମାରେ କେ ପିଚକାରି
ଫଗୁଆ ହେଲା କି ସତେ ଜାଣେନାରେ ସହଚରୀ ।
ନାଟୁଆ ନଟବର ହଟହଟା ତୁ ନକର
ରଂଗ ବସନ ହେଲା ଏ କି ତୁମ ବେଭାର ।
ଶାଶୁ ନଣନ୍ଦ ମୋର କହିବେ ଦୂରଦୂରଂ
ନଥିବ କେହି ଜଣେ କରିବାକୁ ଗୁହାରୀ ।

ବୃନ୍ଦାବନରେ ଶ୍ରୀରାଧା କୃଷ୍ଣଙ୍କ ଅବିର ଉଲ୍ଲାସ ଭାବ ଭକ୍ତ କଣ୍ଠରେ ତଦ୍‌ଭାବ ଭାବିତ କରାଇ ସଂକୀର୍ତ୍ତନ ମାଧ୍ୟମରେ ଭକ୍ତ ହୃଦୟକୁ ଆପ୍ଲାବିତ କରୁଥିଲା ।

(୨) ମଠରେ ଝୁଲଣ ପୂର୍ଣ୍ଣିମା କ୍ରମାଗତ ପାଞ୍ଚଦିନ ଧରି ମହାଆଡ଼ମ୍ବରରେ ପାଳିତ ହୁଏ । ବିଭିନ୍ନ ଗ୍ରାମରୁ ସଂକୀର୍ତ୍ତନ ଦଳ- ସଂକୀର୍ତ୍ତନ କରିବା ସହିତ ଝୁଲଣ ଗୀତିକାମାନ ଗାନ କରିବା ପରଂପରା ଅଦ୍ୟାପି ପ୍ରଚଳିତ । ଉକ୍ତ ପର୍ବ ଉପଲକ୍ଷେ ପ୍ରସଂଗାନୁସାରେ ଗୀତ ରଚନା କରିଛନ୍ତି ବିଭିନ୍ନ ସମୟରେ-

ମଦନ ମୋହନ କୁଞ୍ଜେ ଝୁଲେରେ
ଝୁଲେ...... ଝୁଲେ...... ଝୁଲେ .......ରେ
ଚାନ୍ଦିନୀ ରାତିରେ ଦ୍ୱାଦଶୀ ତିଥିରେ
ମଦନ ମୋହନ କୁଂଜେ ଝୁଲେରେ......
କୁଞ୍ଜ କୁସୁମେ ଭରା
ଗାଏ ସେ କେକୀ ମୁଖରା
ଅଧରେ ମୁରଲୀଧରା ମୁରଲୀ ବାଏ ସୁସ୍ୱରେ ।

(୩) ମା' ବାଗ୍‌ବାଦିନୀ ସରସ୍ୱତୀଙ୍କ ପୂଜାର୍ଚ୍ଚନା ମହା ସମାରୋହରେ ପାଳିତ ହୁଏ । ସେଥି ନିମନ୍ତେ ସଂଗୀତ ରଚନା ତଥା ଗାନ କରିବା, କରାଇବାରେ ଗୋସ୍ୱାମୀ ଅପାର ଆନନ୍ଦ ଲାଭ କରୁଥିଲେ-

ବ୍ରହ୍ମ ବାଦିନୀ ଜନନୀ ଥାଉ ହୁଏ ହୀନିମାନ
ବସନ୍ତ ପଞ୍ଚମୀ ଆଜି ଶେଷ ଦୟିନୀ ।
କେତେ ଅତୀତ ସଂତାନ ରଖି ତାହାଙ୍କ ସମ୍ମାନ
ଅଗ୍ର ତଳେ ଖେଳାଇଲୁ ହୋଇ ପ୍ରସନ୍ନ ।
ମୋ' ବେଳକୁ ଯାଉଛି ଶୁଖି
ଡାକ ନଶୁଣିଲେ ନାଶ ଯିବ ତୋ' ଦୁଃଖୀ ।

ବିଘ୍ନ ବିନାଶନ ଗଣ ନାୟକ, ଜଗନ୍ଜନନୀ ଦୁର୍ଗତି ନାଶିନୀ ଦୁର୍ଗା ଦେବୀଙ୍କ ସ୍ତୁତି, ବନ୍ଦନାରେ କବି ନିଜର ଭକ୍ତି ଭାବର ପରାକାଷ୍ଠା କଳାମଂଜୁଳ ଭାବେ ପ୍ରକଟ କରିଛନ୍ତି ।

(୪) ବେଦାନ୍ତ ଦର୍ଶନ ଆଧାରିତ ବିଚାରରେ ମାନବ ଜୀବନର ନଶ୍ୱରତା, ସଂସାରର ଅଳୀକତା ଉତ୍କଳୀୟ ବୈଷ୍ଣବ ସନ୍ଥ ମହାତ୍ମାଗଣ ନିଜ ଗୀତିକବିତା ମାନଙ୍କରେ ସାବଲୀଳ ଭାବେ ପ୍ରକାଶ କରି ଚିରସ୍ମରଣୀୟ ହୋଇଛନ୍ତି । ସେହି ଧାରାର ଅନୁବର୍ତ୍ତୀ ହୋଇ କତିପୟ ଭଜନ ରଚନା କରି ଅଛନ୍ତି । ଯଥା-

ଭୁଲା ମନ ଭୁଲନା ମିଛ ମାୟା ସଂସାରେ
ଭରମି ନଯାଅ କେଭେ ତୁଚ୍ଛା ଛାୟା ନିଶାରେ
ବାୟା...... ତୁଚ୍ଛା ଛାୟା ନିଶାରେ ...... (ଧ୍ରୁବ)

ଜନନୀ ଜଠେ ରହି
କରାର କଲୁ ତୁହି
ଗୁଇଁନ୍ଦା ଅଛି ପଛେ
ଚେତାଇ ଦିଏ ନିଶି ବାସରେ ।

(୫) ଭକ୍ତି ଗୀତିକାର ବିବିଧ ରୀତି ମଧ୍ୟରୁ 'ଚଉତିଶା' ଏକ ପ୍ରସିଦ୍ଧ ଶୃଂଖଳା । ଓଡ଼ିଶାର ପ୍ରାୟ ସମସ୍ତ ପ୍ରସିଦ୍ଧ କବି ତଥା ଆଂଚଳିକ ସ୍ୱଳ୍ପ ପରିଜ୍ଞାତ କବିବୃନ୍ଦ ଚଉତିଶା ରଚନାରେ ପ୍ରବୃତ୍ତ ହୋଇଛନ୍ତି । ଆଲୋଚ୍ୟ କବିଙ୍କ ସଂପର୍କରେ ପୂର୍ବରୁ ସୂଚିତ ହୋଇଛି ଯେ ବିବିଧ କାରଣରୁ କେବଳ ଉପଲବ୍ଧ ଏବଂ ପଠନ ଉପଯୋଗୀ ଲେଖାଗୁଡ଼ିକୁ ଉକ୍ତ ପୁସ୍ତକରେ ସ୍ଥାନିତ କରାଯାଇଛି । ଅଧିକାଂଶ ନଷ୍ଟ ହୋଇ ଯାଇଥିବାରୁ ସଂଭବତଃ ଅନ୍ୟ ରଚନା ପରି ଚଉତିଶାଗୁଡ଼ିକ ମଧ ନଷ୍ଟ ହେବା ସଂଭାବନାକୁ ଏଡ଼ାଇ ଦେଇ ହେବ ନାହିଁ । ଉପଲବ୍ଧ ଚଉତିଶାରୁ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେଖନ୍ତୁ-

ନନ୍ଦ ରାଜନର ମନ୍ଦ ଭାଗ୍ୟ ଥିଲା ଚନ୍ଦନ ବୋଳାଇ ଦେଲ
ନନ୍ଦନ ହୋଇଣ ରାଣୀ ଯଶୋମତୀ କୀରତି ବାନା ରୋପିଲ
ମହାପ୍ରଭୁ ହେ !
କାହିଁକି ଏକଥା ଶୁଣା
ନୂଆ କରି ଯୁଗ ଓଲଟା କରୁଛ ଏକି ତୁମ ବୁଝାମଣା ।

ଉକ୍ତ ପଦଟିରେ ଅନୁପ୍ରାସ'ର ଚମତ୍କାର ପ୍ରୟୋଗ ସହିତ ପୌରାଣିକ ଦୃଷ୍ଟିକୋଣ ଏବଂ ଭକ୍ତର ଇଷ୍ଟଙ୍କ ନିକଟରେ ଅନୁଯୋଗ ତିଳ ତଣ୍ଡୁଳିତ ଭାବେ ପାଠକ ପ୍ରାଣକୁ ରସସିକ୍ତ କରିଥାଏ ।

(୬) ଧରାପୃଷ୍ଠରେ ଋତୁରାଜ ବସନ୍ତର ଆଗମନରେ ବୃକ୍ଷ, ଲତା, ପଶୁ, ପକ୍ଷୀ ପ୍ରଭୃତିଙ୍କ ଠାରେ ନୂତନ ବିଭାର ସଂଚାର ହୁଏ । ମନୁଷ୍ୟ ଶରୀର- ଚିତ୍ତ ଅପୂର୍ବ ଭାବରେ ତା'ର ଅଲକ୍ଷ୍ୟରେ କଳ୍ପ ରାଜ୍ୟରେ ବିଚରଣ କରେ । ତେଣୁ କବି, ଭାବୁକ, ଦାର୍ଶନିକ, ଭକ୍ତ ପ୍ରାଣରେ ନାନ୍ଦନିକ ଅନୁଭବ ହେବା ସ୍ୱାଭାବିକ । ସେଥିପାଇଁ ଯୁଗେଯୁଗେ କବି କଣ୍ଠରେ ବସନ୍ତର ପ୍ରଶଂସା କରି କୁହାଯାଇଛି 'ସର୍ବେ ନବାଇବାଭାନ୍ତି ମଧୁମାସେ ଇବଦ୍ରୁମାଃ' । ପୁନଃ

'ଦିବସ ରଜନୀ ପ୍ରଦୋଷ ଉଷା
ସର୍ବେ ପିନ୍ଧିଛନ୍ତି ବସନ୍ତ ଭୂଷା' ।

ଆଲୋଚ୍ୟ କବିଙ୍କ ଦୃଷ୍ଟିରୁ ତାହା ବାଦ୍ ଯାଆନ୍ତା କିପରି ? ନାନା ଦୃଷ୍ଟିରୁ ସେ ବସନ୍ତକୁ ନିରୀକ୍ଷଣ ପ୍ରୟାସ କରିଛନ୍ତି-

ଶୀତଯାଇ ବସନ୍ତଟି ହେଲା ଉପସ୍ଥିତ
ଲେଖକ ଲେଖିଲେ ପୁଣି ବିରହୀ ସଂଗୀତ ।
ମଧୁପ ଝଙ୍କାର ନାଦେ ନାନା ଫୁଲେ ବସେ
ଫୁଲେ ଫୁଲ ବସି ମଧୁ ଚୁମ୍ବଇ ହରଷେ ।

ମଧୁମୟ ବସନ୍ତ କାଳରେ ଶ୍ରୀପଞ୍ଚମୀ ଏବଂ ହୋରିଖେଳ- ମିଳନ ଉତ୍ସବ ପ୍ରଭୃତି ସ୍ରଷ୍ଟାଙ୍କୁ ଉତ୍ପ୍ରେରିତ କରିଛି ଭକ୍ତି ଗୀତିକା ରଚନା କରିବା ନିମନ୍ତେ । ପ୍ରକୃତି ରାଜ୍ୟରେ ବିକଶିତ କୁସୁମକୁ ଭ୍ରମର ସସ୍ନେହ ଚୁମ୍ବନ କରୁଛି, କରୁଛି ମଧୁ ସଂଗ୍ରହ ଏବଂ ତା' ସହିତ ମଧୁର ଗୁଂଜନ । ଏହି ସମୟରେ ବିରହୀ ପରାଣ ଏକାକୀ ରହିବ ବା କିପରି ? ତା'ର ଅନ୍ତରବେଦନା, ଅନ୍ତର୍ଦାହକୁ କବି ମର୍ମେମର୍ମେ ଅନୁଭବ କରି ତା'ର 'ସାଧାରଣୀ କରଣ'ରେ ପ୍ରୟାସୀ ହୋଇଛନ୍ତି ସ୍ରଷ୍ଟା । ଏହି ଧାରାରେ ତାଙ୍କର ଅନେକ ଗୀତିକା ଯୁବାବସ୍ଥା(୧୯୪୬-୪୭)ରେ ରଚିତ । କେତେକ ଗୀତିକାରେ ମାନବୀୟ ଅନୁଭବ ଦିବ୍ୟ ଚେତନା ସୂକ୍ଷ୍ମ ସ୍ତରକୁ ଉନ୍ନୀତ ହୋଇ ପରମାତ୍ମାଙ୍କ ସହ ଜୀବାତ୍ମାର ମିଳନ ସ୍ତରକୁ ସ୍ପର୍ଶ କରିଛି ।

(୭) ଇଷ୍ଟ ଷଡ଼ଭୁଜ ମଦନମୋହନଙ୍କ ରୂପ ସଂଭାର ବର୍ଣ୍ଣନାରେ କବିଙ୍କ ଲେଖନୀ ଚଳଚଂଚଳ ହେଇଉଠିଛି-

ଷଡ଼ କୁଞ୍ଜେ ଷଡ଼ ଭୁଜା ମୋହନ
ଶଂଖ ଚକ୍ର ଗଦା ପଦ୍ମ ଚାରି କରେ
କରେ ବେନିକରେ ବଂଶୀ ଚୁମ୍ବନ ।
ରୁଦ୍ରାକ୍ଷ ମାଳାଟି ଆଜାନୁ ଲମ୍ବିତ
ଚୁଳି ପାଦୁକା ତାଙ୍କ ପୟରେ ଶୋଭିତ ।          (ଇତ୍ୟାଦି)

(୮) ଉତ୍କଳର ଆରାଧ୍ୟ ରାଷ୍ଟ୍ରଦେବତା ଶ୍ରୀଜଗନ୍ନାଥ ମହାପ୍ରଭୁ ପ୍ରତ୍ୟେକ ଉତ୍କଳୀୟଙ୍କ ହୃଦୟ ସିଂହାସନରେ ଅଧିଷ୍ଠିତ । କବି, ଭାବୁକ, ଦର୍ଶନିକ ପ୍ରତ୍ୟେକ ତାଙ୍କୁ ସ୍ୱକୀୟ ଦୃଷ୍ଟି ଓ ଦର୍ଶନ ଆଧାରରେ ବର୍ଣ୍ଣନା କରିଅଛନ୍ତି, ସେହି ନ୍ୟାୟରେ କବି ଲେଖନୀରୁ ସ୍ରବି ଯାଇଛି ଅସରନ୍ତି ଭକ୍ତି ଗୀତିକା ।

ତୁମେ ବଡ଼ ଦାରୁଣ ହେ ଜଗବନ୍ଧୁ ଜଗନ୍ନାଥ
ଦରିଆ କୂଳରେ ସଢ଼ି ମରୁଅଛି ଥରିଥରି ପାଶେ ବଢ଼ାଏ ହାତ ।

(୯) ଭକ୍ତ ନିଜର ଇଷ୍ଟଙ୍କ ନିକଟରେ ନିଜର ସର୍ବସ୍ୱ ସମର୍ପଣ କରି ଜୀବନକୁ କୃତାର୍ଥ କରିଥାଏ, ଜନ୍ମ ଜୀବନ ଧନ୍ୟ ହୋଇଯାଏ । ସେହି କ୍ରମରେ କବି ଲେଖନୀରୁ ନିସୃତ କବିତାରୁ ପଦେ-

ଦୁଃଖ ଦେଲ ଯେବେ ପରାଣେ ମୋର
ସୁଖ ଦେବତା ମୋର ସୁଖରେ ଥାଅ
ବେଦନା ଭରା ମୋ' ଅଂଗକୁ ଜାଳି
ଚିତା ଭସ୍ମ ବାରେ ଲଲାଟେ ନିଅ ।
ଅନାଗତ ଅନ୍ଧ ପଟଳି ଭିଡ଼ିଛି
ଛନ୍ଦା ଚରଣରେ ଆଶ୍ରୟ ଲୋଡ଼ିଛି
ଦୁରୁଗମ ପଥ ଚାଲିଚାଲି କ୍ଳାନ୍ତ
ଅବଶ ଲାଗଇ ଧରବାରେ କାନ୍ତ ।

(୧୦) ସଂସାରର ଭୋଗବାସନା ଯେ ଅଳୀକ, ନଶ୍ୱର, ବିନାଶଶୀଳ, ଚେତନଶୀଳ ମାନବର ଏହା ହିଁ ଦର୍ଶନ ନିଷ୍କର୍ଷ । ଏହି ବୈରାଗ୍ୟ ବିଚାର ଆଧାରରେ କବି ଗାଇ ଉଠିଛନ୍ତି ଚିରନ୍ତନ ଶାଶ୍ୱତ ଗୀତିକା-

ବିତ୍ତ- ଦାରା ସୁତ ହିତ ହୋଇ ନଯିବ ତୋ' ସାଥ
ଚିତ୍ତ ଭରମାଇଁ ମିତ ସଂପାଦୁଛୁ ଅପାରତ ।
ହାର କାଟିବେ ଦିନେ, ଦୁଃଖ ନଶୁଣି କାନେ
କାନ୍ଦୁଥିବୁ ବିଜନେ, ବରଜି ନିଜ ଜନେ ।
ଗରଜୁ ଥିବୁ ମିଛେ, ଝୁରିବା ସାର ପଛେ (ଥକାମନ)
ଚକା ନୟନେ ଲଖା ମନକୁ ।

(୧୧ ) ସଂଭବତଃ କାବ୍ୟିକ ଶୈଳୀରେ 'ଅନୁପ୍ରାସ'ର ଉପସ୍ଥିତି ତାଙ୍କ ଅନ୍ତରକୁ ମୁଗ୍ଧ କରିଛି, ସୁତରାଂ ତାଙ୍କ ରଚନାରେ ଅନେକତ୍ର ଅନୁପ୍ରାସର ପ୍ରୟୋଗ ପୂର୍ବକ ଗାନଧର୍ମୀ ତଥା ଶ୍ରୁତି ସୁଖଦାୟୀ ଗାୟନ କରିବାର ପ୍ରୟାସ କରିଅଛନ୍ତି । ଚଣ୍ଡ ମୁଣ୍ଡ ନାଶିନୀ ଖଣ୍ଡ ମୋ' ଦୁଃଖ ବେନି, ପାଷାଣରେ- ରସାଣି, ବନ୍ଦେ- ବନ୍ଧନେ ପଡ଼ି, ଗଣ୍ଡାଗଣ୍ଡା ମୁଣ୍ଡ ଖଣ୍ଡାଧାରେ, ରଂଜ- ରଂଜ ସଂଜବେଳେ, ମାଳତୀ ଫୁଲେ ଫୁଲେ ଝୁଲଣ ଝୁଲା ଝୁଲେ । ଫୁଲ ଫଟା ଫଗୁଣ- ଫୁଲ ଧନୁରେ ଗୁଣ, ଶରଣାଗତ ଭାରତୀ- ଯୁଗଳ ମୂରତି, ଇତ୍ୟାଦି ।

(୧୨) ଭାରତୀୟ ପ୍ରମୁଖ ଆସ୍ତିକ ଷଟ୍ ଦର୍ଶନ ମଧ୍ୟରୁ ପାତଞ୍ଜଳିଙ୍କ 'ଯୋଗ ଦର୍ଶନ' ସାଧନା ସୋପାନ ସରଣୀ ଆରୋହଣର କ୍ରମ ମୁକ୍ତି ମାର୍ଗ' । ଉତ୍କଳୀୟ ଯୋଗ ସାଧନ ପରଂପରାରର ଏହି ଧାରା ଶତାବ୍ଦୀ ଶତାବ୍ଦୀ ଧରି ସାଧକମାନଙ୍କର ବରଣୀୟ ହୋଇଥିବା ଲକ୍ଷ୍ୟଣୀୟ । ଆଲୋଚ୍ୟ କବିଙ୍କ କ୍ଷେତ୍ରରେ ଆମେ ତାହାର ଝଲକ ଲକ୍ଷ୍ୟ କରିପାରିବା । 'ଦୁର୍ଗା ଜଣାଣ' କବିତାରେ କବିଙ୍କ ବର୍ଣ୍ଣନା ଦେଖନ୍ତୁ- 'ଜପା ମାଳ ଛାଡ଼ି ଜ୍ୟୋତି

ଦର୍ଶନ' । ଜପଠାରୁ ଧ୍ୟାନ ଶ୍ରେଷ୍ଠ । 'ଧ୍ୟାନାତ୍‌ପରଂତରଂ ନହି' ଧ୍ୟାନ- ସମାଧି ଅବସ୍ଥାରେ ଯୋଗୀ ଜ୍ୟୋତି ଦର୍ଶନ କରିଥାଏ । ସିଦ୍ଧି କ୍ରମରେ ଏହି ରହସ୍ୟମୟ ଜ୍ୟୋତି ଦର୍ଶନ ସାଧକ ପ୍ରାଣରେ ନବ ଉନ୍ମାଦନା ଖେଳାଇଥାଏ, ତଥା ଇଷ୍ଟଙ୍କ ଶୁଭ ଆଶୀଷ ଭାବେ ଗ୍ରହଣ କରି ଉତ୍ତରୋତ୍ତର ଉନ୍ନୀତ ହୋଇଥାଏ । ଶୁଦ୍ଧା ଭକ୍ତି ଧାରାରେ ତାଙ୍କ ରଚିତ ବହୁ ଗୀତିକା ମନୋମୁଗ୍ଧ କର କିନ୍ତୁ ସେ ଯେ ଯୋଗ ମାର୍ଗର ପଥିକ ଏହା ସଂକେତ ମାତ୍ରରୁ ସୂଚିତ ।

(୧୩) ବ୍ରହ୍ମବୈବର୍ତ୍ତ ପୁରାଣ, ଭାଗବତ, ହରିବଂଶ, ଗର୍ଗସଂହିତା ପ୍ରଭୃତି ସର୍ବଭାରତୀୟ ଆଦୃତ ଗ୍ରନ୍ଥରାଜି ସହିତ ଉତ୍କଳୀୟ କବିବୃନ୍ଦଙ୍କ କବିତାର ମାର୍ମିକ ଆବେଦନକୁ ଆତ୍ମସ୍ଥ କରି ସ୍ୱକୀୟ ବିଚାର ଧାରାରେ ରାଧା- କୃଷ୍ଣ ସମ୍ବଳିତ ବିବିଧ ଗୀତିକା ଅବସ୍ଥା ଭେଦରେ ନବନବ ପ୍ରତିଭାତ ହୋଇଛି କବିଙ୍କ ଲେଖନୀରେ । ଅନୁପ୍ରାସର ନାନାଦି ପ୍ରୟୋଗ ନିମନ୍ତେ କବି ପ୍ରୟାସୀ ହୋଇଛନ୍ତି ।

ଉପଯୁକ୍ତ ଉକ୍ତିର ରସାଶ୍ରିତ ରଚନା ସହିତ (୧୯୪୭) ମସିହାର ରାଜନୈତିକ ବାତାବରଣ ସମ୍ବନ୍ଧରେ କେତେକ ରଚନା ଦେଖିବାକୁ ମିଳେ । ଏଥିସହିତ ଚିର ଅବହେଳିତ କୃଷକ ସମାଜର ସନ୍ତାପିତ ଜୀବନ ତଥା ତା'ର ନିରାକରଣ ପାଇଁ ଶାସକଙ୍କ ଦୃଷ୍ଟି ଆକର୍ଷଣ କରିବାର ପ୍ରୟାସ କରିଅଛନ୍ତି ।

ତାଳ- କହରବା, ଖେମଟା, ଜତ୍ (ଆଠତାଳି), ଆଡ଼ଖେମଟା, ଆଠତାଳି, ତାଲ କଓ୍ୱାଲି, ଆଡ଼ ଖେମଟା, ଓଡ଼ିଶୀ, କାଶ୍ମୀର ଖେମଟା, ଭୈରବ, କରପାଂ, କାରଫ, ଏକତାଲ, ପଢ଼ି, ଭାଟିଆରୀ, ଦକ୍ଷିଣୀ, ଦାଦରା, ପ୍ରଭୃତି ।

ଛନ୍ଦ- ବଂଗଳାଶ୍ରୀ, ରାମକେରୀ, ନଟବାଣୀ, କଳହଂସ କେଦାର, ଚକ୍ରକେଳି, ଋଷିକୁଲ୍ୟା ପ୍ରଭୃତି

ରସ- କବି ଜଣେ ଭକ୍ତ- ସାଧକ ଭାବେ ମୁଖ୍ୟତଃ ଜୀବନ ଉତ୍ସର୍ଗ କରିଦେଇଥିବାରୁ ତାଙ୍କ ସୃଷ୍ଟି ମଧ୍ୟରେ 'ଭକ୍ତି' ରସ ଏବଂ 'ଶାନ୍ତ' ରସର ସମାବେଶ ହୋଇଛି ।

ଶବ୍ଦ ପ୍ରୟୋଗ- ଦିହୁଡ଼ି, ନାଗରା, ହଟ, ଲୀଟ, ଝୀନବସ, ଦାମିନୀ, କେକୀପୁଚ୍ଛ, ସୁରଂଗ, କରଣୀ= (କୃତ୍ୟ), ଚୂଳି ପାଦୁକା, କାଇଁଚ ମାଳିଆ, ଘୁଞ୍ଚିଯିବା, ପଞ୍ଚଶର, କଳକଣ୍ଠ, ଅରାତି, ବାତାୟନ, ଚାନ୍ଦିନୀ, କାଳକୂଟ, ପଣତ, ଦୀପାଳି, ଆଳି ଘୋଷା, ପହଣ୍ଡ, ଯୁଥ, ବାବଳି=ବୋବାଳି, ଘୁମିଯାଏ= ଘୂରିଯାଏ, ବିରହୀ, ମୁଖରା, ପାରିଜାତ, ଦୁର୍ବାଦଳ, ଶିହରୀ, ବିବୋଧ, ମଂଜୁଳ, କରାଇ- କରାଳ, ମୁଖରା, ସଜାଣ, ବୋଲଣା, ମକରନ୍ଦ, ମଣ୍ଡିବା, ମନ୍ଦମରୁତ, କୁହାଟ, ଛନ୍ଦାଚରଣ, ନୋହୁଲି, ରମ୍ଯାବନ, କ୍ଷୋଭ ।

କାବ୍ୟିକ ପ୍ରୟୋଗ- ଅରଘ, ଫଗୁଆ, ବାଇବା (ବଜାଇବା), ସରାଗ, ପାଷାଣ,

ପରଶି, ଗଞ୍ଜଣା, ପରବାସୀ (ପ୍ରବାସ ନିବାସୀ), ପଣତ, ଅନ୍ତରାଳ, ଦୂରୁବାଦଳ, ଅଙ୍କିତ, ମୂରତି, ଘେରଟଅରି, ପରିଚାର, ନୟନନୀରେ ତାପିତ- ପରାଣ, ବୁକୁଫଟା... ଇତ୍ୟାଦି ।

**ଯୁକ୍ତଶବ୍ଦ-** ଝଟଝଟ, ନିତି-ନିତି (ପ୍ରତିଦିନ ଅର୍ଥରେ) ମୁହାଁ-ମୁହିଁ, ହର-ବର, ତୁନି-ତୁନି, ଛନ-ଛନ, ଝୁଲାଇ-ଝୁଲାଇ, ଛନ୍ଦା-ଛନ୍ଦି, ବାରେ-ବାରେ, ଧୀରେ-ଧୀରେ, ଠକା-ଠକି, ଥନ-ଥନ, ଧରା-ଧରି, ଧଂରା-ବନ୍ଧା, ଦୂର-ଦୂର, ହନ୍ତ-ସନ୍ତ, ବଳ-ବୟସ, ବଲ-ବଲ, ଫର-ଫର, ଅଂଗେ-ଅଂଗେ, ତୁନି-ତୁନି, ଝୁରି-ଝୁରି, କୁଞ୍ଜେ-କୁଞ୍ଜେ, ସଂଜେ-ସଂଜେ, ସଂଜ-ସଂଜୁଆ, ଘୁମୁଁ-ଘୁମୁଁ ଇତ୍ୟାଦି ।

**ପ୍ରଭାବ-** 'ଯେତେ ଦେଖୁଥିଲେ ନୂଆ ଦିଶୁଥାଇ' ତୁ କ୍ଷଣେ କ୍ଷଣେ ଯନ୍ନବତା ମୁପୈତି- (ମାଘ) । **କଥିତ ପ୍ରୟାଗ-** ହାର କାଟିଦେବା= ଦାୟିତ୍ୱ ତ୍ୟାଗ କରିବା, ସାତପର= ଅଚିହ୍ନା, ନାଁଚାର ହେବା- ଉପାୟ ଶୂନ୍ୟ, ଲଲାଟ ଲିଖନ, କିଶାଜନ ଇତ୍ୟାଦି ।

ବାସ୍ତବରେ କବିଙ୍କ ଅଚଳା ଭକ୍ତି ଭାବନା ସହ ନୈସର୍ଗୀକ କାବ୍ୟ ପ୍ରତିଭା 'ପରା' ସ୍ତରରୁ ବାଣୀକୁ 'ବୈଖରୀ' ସ୍ତରକୁ ଅବତରଣ କରାଇବାରେ ଯେ ସକ୍ଷମ ହୋଇଛନ୍ତି, ଏହା ଯେକୌଣସି ବିଦଗ୍ଧ ପାଠକ ଲକ୍ଷ୍ୟ କରିପାରିବେ ।

କାଳଚକ୍ରରେ ସମାଜର ଦୃଷ୍ଟିକୋଣ, ମୂଲ୍ୟବୋଧ, ସହୃଦୟତାର, ଆକାଶ-ପାତାଳ ପରିବର୍ତ୍ତନ ଫଳରେ ବିସ୍ମୃତି ପ୍ରାୟ ଲେଖା ମଧ୍ୟରୁ ଯତ୍ କିଞ୍ଚିତ ପ୍ରକାଶିତ ହେବା ଆନନ୍ଦର ବିଷୟ । ଉତ୍କଳୀୟ ବୈଷ୍ଣବ ପଦାବଳୀ ବାଙ୍ମୟରେ ଆଉ ଏକ ନବୀନ ପୃଷ୍ଠା ସଂପୃକ୍ତ ହୋଇଗଲା ବୋଲି ଆମେ କହିପାରିବା ।

ପରିଶେଷରେ ଆମେ କହିପାରିବା ଯେ ଦୃଷ୍ଟି ଅନ୍ତରାଳରେ ରହିଯାଇଥିବା, ସାରସ୍ୱତ 'ବୃଷ୍ଟି ଛାୟା'ରେ ରହିଥିବା ସ୍ରଷ୍ଟାଙ୍କ କୃତିକୁ ଲୋକଲୋଚନକୁ ଆଣିବାକୁ ଯେ ସଦୁଦ୍ୟମ କରିଛନ୍ତି ସେ ନିଶ୍ଚୟ ଧନ୍ୟବାଦାର୍ହ । ଅଳଂ ଅତି ବିସ୍ତରେଣ ।

**ବିନୀତ**

**ସଂପାଦକ**

●●●

# ଜଣାଣ

## (ରାଗ ତୋଡ଼ି ପରଜ)

କ୍‌ରୁଣା ଆକର ବୃଥା କାରବାର ହୁଏକି ଏହି ସଂସାରେ
କେଉଁ ମୁଖେ ଆଜି ଭାଷିବ ଏଦାସ କେହି ନ ଭାବନ୍ତି ଥରେ
ମହାପ୍ରଭୁ ହେ
କେବଳ ପଡ଼ିଛି ଧରା
ମାର ଅବା ତାର ତୋ' ଦରବାରରେ କେହି ନାହିଁ ମୋ ଆଶରା ।(୧)

ଖାମିଦ ତୋ'ପରି ମୋର ଥାଉଁଥାଉଁ ଖାରଜ ହେଲା ଅରଜି
ଖିଆଲ ରଖନ୍ତୁ ତୋ'ବିନା ମରତେ କିଏ ବୁଝିବ ମୋ' ମରଜି
ମହାପ୍ରଭୁ ହେ
କ୍ଷମା ଭଣ୍ଡାରଟି ଊଣା
ଖରସ୍ରୋତେ ଭାଷିଯାଏ ମୋ' ଗୁହାରୀ ନଲଭି କରୁଣା କଣା ।(୨)

ଗତି ଅଗତିରେ ଯେତେକାଳ ବିତିଗଲା ଏ କ୍ଷିତିରେ ଥାଇଁ
ଗରୁଡ଼ଆସନ ଶେଷେ କଲି ଧ୍ୟାନ ମୋ' ପାଇଁ ଶୁଣିଲ ନାହିଁ
ମହାପ୍ରଭୁ ହେ
ଗୋଚର ମୋ' ଅପରାଧ
ଗରିୟାନଦୋଷୀ ମଣୁଅଛ ଯେବେ ରଥାଙ୍ଗେ ମୋ' ଶିର ଛେଦ ।(୩)

ଘେନାଇ କହିଲି ଘେନା ନ ଘେନୁଛ ଘେରଟ ଅରି କବଳୁ
ଘୋର ବିପତ୍ତିରେ ପଡ଼ି ମୁଁ ସଡୁଛି ଏ କେଉଁ ବିଚାର କଲୁ
ମହାପ୍ରଭୁହେ
ଘୂରି ଯିବ କଥା ଯେବେ
ଘଟେ ଥିଲେ ପ୍ରାଣ କରିବି ପ୍ରମାଣ ଦରବାରେ ଯାଇଁ ତେବେ । (୪)

ନୋହିଲା କଥାକୁ ହୋଇଲା କରିଛ ନିଧନ ଅଇରି ତାନୁ
ନୂଆକରି ତନୁ ଅରପି ଦେଇଛ ସେ କଥା କି ଯିବ ମନୁ
ମହାପ୍ରଭୁ ହେ !
ନୋକର ନିକୃତି ହାଟେ
ନାଗରା ଦିଅନ୍ତି ଡାମରା ସଭିଏଁ ସେ କି ତୁମକୁ ନକାଟେ । (୫)

ଚକା ବଇଠିରେ ଚିତ୍ତକେ ଲଗାଇ ଦଗା ପାଇଛି ଶୁଣିବା
ଚମକ ପକାଅ ନୂଆ କରଣୀରେ ଏହା କି ପାଉଛି ଶୋଭା
ମହାପ୍ରଭୁ ହେ !
ଚାହିଁ ନାହିଁ କେବେ କିଛି
ଚାହିଁଥିଲି ଖାଲି ଶ୍ରୀରଙ୍ଗା ପୟର ରେଣୁ କଣିକାକୁ ବାଛି । (୬)

ଛାଟିଆ ଛାଟକୁ ଛନକି ମୋ'ବୁକୁ ତେଣୁ ଛୋଟହେଲା ମନ
ଛଳଛଳ ନେତ୍ରୁ ନୀର ବରାବର ଢାଳି ତିନ୍ତିଲା ବସନ
ମହାପ୍ରଭୁ ହେ !
ଛେଲାଏ ଦୁନିଆ ଯେତେ
ଛାତିକୁ ପାଷାଣ କରି ତୋ'ର ଗୁଣ ବାହୁନୁ ଅଛୁ ନିରତେ । (୭)

ଜଗ ମୋହନକୁ ନୁହେଁ ମୁଁ ଭାଜନ (ସେଠି) ହରୁଛ ଜଗତ ଜନ
ଜନଗହଳିରେ ଜିଭ ଅଲେଉଟା କରୁଛି ଅଳପ ଧ୍ୟାନ
ମହାପ୍ରଭୁ ହେ !
ଜଗତରେ ଅଛ ବସି
ଜଣାଉଛି ପାଶେ ଅକୁହା କାହାଣୀ କରବା ଦୋଷୀ ନିର୍ଦ୍ଦୋଷୀ । (୮)

ଝୀନବସନ ତୋ' ହେଉଅଛି କୁଞ୍ଚ ଲାଗିଛନ୍ତି ପରିଚାର
ଝଲସି ମୋ' ଆଖି ରହିଅଛି ଲାଖି ପରିଛାଇ ସାଖି ତା'ର
ମହାପ୍ରଭୁ ହେ !
ଭୁଲିଯିବ ଯେବେ ତୁମେ
ଝାଂଜ ପିଟିଦାଣ୍ଡେ କରିବି ରଚନା ଅଧିକାରୀ ନୁହଁ ସାମେ ! (୯)

ନିଉଛୁଣା ସୁତ ହେଉଛି ନାହୁଲି ନୂଆ ହେଇ ଆଜି ଦ୍ୱାରେ
ନଭାଂଗ ତା' ମାନ ସମ୍ମାନ ସୁମନ ରଚନାରୁ ନିରାଧାରେ
ମହାପ୍ରଭୁ ହେ !
ନପାରେ ଲପନ ଟେକି
ନରାଜପାଲିକୁ ନିଜ କରେ ଧରି ନ ଖୋଜନ୍ତୁ ଆଉ ବାକି । (୧୦)

ଟକ ଟକ ହୁଏ ଟେକରଖିବାକୁ ଏଟାଯାର ଗୁରୁ ଦୋଷ
ଟେରରଖି କେହି ସାଧୁଛି ବଇରୀ ବୟସେ ମୋ'ଠାରେ ରୋଷ
ମହାପ୍ରଭୁ ହେ !
ଟାଣରେ ଦେଲେ ଅନାଇ
ଟେକାପରି ଧୂଳି ଦେବତା କାମନା ପରବତ ପରା ତୁହି । (୧୧)

ଠକପୁଅଙ୍କୁ ତୁ ଠାକୁରମଣି ମୁଁ ତେବେ ନସରିଲା ଦିନ
ଠଉରାଇ ଗତି ଖୋଳନ୍ତି ଖନ୍ଦକ କରିବେ ବୋଲି ପତନ
ମହାପ୍ରଭୁ ହେ !
ଠୁଳ ସଲିଳେ ମୋ' ପ୍ରାଣ
ଠକାଠକି କଲେ ନିଶ୍ଚେ ନାଶ ଯିବି ଏକଥା ସତ୍ୟ ପ୍ରମାଣ । (୧୨)

ଡର ଡରଲାଗେ ଭଣିବାକୁ ଆଜି ଶ୍ରୀଛାମୁରେ ତୁମ ଗୁଣ
ଡରେ ଯେଉଁ ପ୍ରାଣୀ ଜାଣି ତୁମେ ପୁଣି ବିନିମୟେ ପେଷବାଣ
ମହାପ୍ରଭୁ ହେ !
ଡରିବାରୁ ଏ କଷଣ
ଡକା ଛାଡୁ ଛାଡୁ ଧକ୍କା ବାଜେ ଆସି ଚାହୁଁ ଚାହୁଁ ଅନୁକ୍ଷଣ । (୧୩)

ଢଳ ଢଳ ଚିତ୍ତ ଢାଳିପଦେ ମୁଁ ତ ଫଳ ପାଉଅଛି ଯାହା
ଢୁକିବାମାତ୍ରକେ ଢେଲାବାଜେ ଆସି କାହିଁ ନପାଉଛି ଚାହା
ମହାପ୍ରଭୁ ହେ !
ଢୋକାଏ ସଲିଳ ପାଇଁ
ଢଳିପଡ଼େ ପ୍ରାଣ ମରୀଚିକା ଧାରେ କା' ଆଗେ କହିବି ଯାଇଁ । (୧୪)

ଅଶୋଭା ପ୍ରକାଶ ହୋଇବ ଦୁନିଆ ଭାଷିଲେ ଏ କଥା କାହିଁ
ଅରବିନ୍ଦେ ମଧୁ ନ ମିଳୁଛି ବୋଲି ପରତେ ନ ଯିବେ କେହି
ମହାପ୍ରଭୁ ହେ !
ଆଶା ମୋର ବଳିୟାନ
ଆଶାୟୀ ପ୍ରାଣକୁ ହେଚିର ବାଞ୍ଛିତ ଆଜି କର ଆଶା ଶୂନ୍ୟ । (୧୫)

ତକାରଳ କଲେ ତାଳି ଲୋକସଙ୍ଗେ ହକ କି ପାଇବି କାହୁଁ
ତନୟ ବୋଲି ମୁଁ ବିନୟେ ଗାଇଲେ କାନେ ନ ଶୁଣୁଛୁ ଆଉ
ମହାପ୍ରଭୁ ହେ !
ତାର ବା ନ ତାର ମୋତେ
ତନୁତ୍ୟାଗ ବିନିମୟ ହେବ ଜାଣ କର ନ କର ପରତେ । (୧୬)

ଥନଥନ ମୋର ନୟନ ମନରୁ ବଚନ ଫୁଟୁଛି ଯାହା
ଥୟ ଜାଣି ସେହି ମୋ' ଭୟ ଉଭାଇ ଦିଅ ପଦକଞ୍ଜେ ରାହା
ମହାପ୍ରଭୁ ହେ !
ଅଥୟ ଲାଗିଲା ଆସି
ଥାକ ଦେଇ ଥୋକେ ଦିନଟାଲୁ ଅଛ ନୀଳାଚଳେ ଥାଇଁ ବସି । (୧୭)

ଦୋବଲା ହୋଇଲା ତୁମର ବଚନ ଦେବାଠାରେ ଦେବ ଶୂନ୍ୟ
ଦୀନ ଜନମାନେ କିଂପାଇଁ କରିବେ ଟଳିବ ସାଧୁବଚନ
ମହାପ୍ରଭୁ ହେ !
ଦ୍ୱାରସ୍ଥ ଭିକାରି ମଲେ
ଦଧିଚୀ କିଂପାଇଁ ମିଛେ ମିଛେ ଏଡ଼େ ବଡ଼ିମା ବାନା ବହିଲେ । (୧୮)

ଧରାଧରିକରି ଅରକ୍ଷିତ ରଘୁ ବରଟି ଯାହା ପାଇଲା
ଧରାବନ୍ଧା ହୋଇ କ୍ଷୀତିତଳେ ଆଜି ଗୀତିଟା କିଂପା ରହିଲା
ମହାପ୍ରଭୁ ହେ !

ଧୋଇ ଦେବ ସେ ଚରିତ
ଧଇଲେ ମୋ'କର କେହି ଜନେ ଆସି କହିବି ଏ ମୋ' ବରତ । (୧୯)

ନନ୍ଦରାଜନର ମନ୍ଦଭାଗ୍ୟ ଥିଲା ଚନ୍ଦନ ବୋଲାଇ ଦେଲ
ନନ୍ଦନ ହୋଇଣ ରାଣୀ ଯଶୋମତୀ କୀରତି ବାନା ରୋପିଲ
ମହାପ୍ରଭୁ ହେ !
ନାହିଁକି ଏକଥା ଶୁଣା
ନୂଆ କରିଯୁଗ ଓଲଟା କରୁଛ ଏକି ତୁମ ବୁଝାମଣା । (୨୦)

ପଶାଖେଳେ ପାଞ୍ଚାଳୀକୁ ଦୁଃଶାସନ ଘଞ୍ଚଲା ଯେତେ ଶୁଣିଛି
ପାଶେ ଥିଲା ପରି ବାସ ଯୋଗାଇଛ କଥାକି ଯିବି ମରୁଛି
ମହାପ୍ରଭୁ ହେ !
ପରିଚିତ ନୋହି ଏଠି
ପାରିହେବା ପାଇଁ ଆଶା ମରୀଚିକା ତୁଚ୍ଛା ହୋଇଲା ମୋ' ବେଠି । (୨୧)

ଫନ୍ଦା କରିଥିଲେ ପଦାରବିନ୍ଦକୁ ଧନ୍ଦା ନୋହିଲା ସଫଳ
ଫନ୍ଦିଦେଲେ ମୋତେ ଯାଆନ୍ତି ପରତେ ଅଛିବୋଲି ନୀଳାଚଳ
ମହାପ୍ରଭୁ ହେ !
ଫଣୀ ଗରଳ ଉଚ୍ଛାଟେ
ଫକାସୀ ଉଡୁଛି ଜ୍ୱଳନ୍ତ ଶରୀର ପଡ଼ି ଏକାକୀ ନିଛାଟେ । (୨୨)

ବନ୍ଦୋବସ୍ତ ତୁମ୍ଭ ନୋହିଲା ମୋ'ପାଇଁ ବନ୍ଧନ ଫାସ ଜଟିଳ
ବରକତପାଇଁ ହରକତଲଭି ଶେଷେ ହେଉଛି ନିଷ୍ଫଳ
ମହାପ୍ରଭୁ ହେ !
ବରଜିବି ଜାଣ ପ୍ରାଣ
ବାହାରେ କାହିଁକି ଅପବାଦବାନା ଉଡୁଥିବ ଘନଘନ । (୨୩)

ଭରସା ଦେଇଛ ବୋଲି ତୁମେ ମୋତେ ଭେଳା ଛାଡ଼ିଛି ସଲିଳେ
ଭଉଁରୀ ଗହୀରେ ପଡ଼ିଯାଇ ଆଜି ଚପିଯାଏ ରସାତଳେ
ମହାପ୍ରଭୁ ହେ !
ଭଗାରୀ ହସନ୍ତି ତଟେ
ଭୟ କରିବାରୁ ଜୟ ହେଉନାହିଁ ମିଛେ ମିଛେ ବେଠି ଖଟେ । (୨୪)

ମହତ ବଚନ ସୋପନୁ ସାଇତି ମତ୍ତହସ୍ତୀ କଲି ମନ
ମହକି ଉଠିଲା ଶୟନ ବସନ ସଙ୍ଗେ ସଙ୍ଗେ ହେଲା ଶୂନ୍ୟ
ମହାପ୍ରଭୁ ହେ !
ମର ଦୁନିଆରେ ଥାଇ
ମାରମାର ବାଣୀ ବଇରୀ କହଣି ଆଉ ନ ପାରୁଛି ସହି । ( ୨୫ )

ଯାହାର ଯେତିକି କର୍ମଫଳ ଅଛି ତାହା ତ ଭୋଗିବ ସେହି
ଯେଉଁ ବାନା ତୁମ ସଉଧେ ଉଡୁଛି ସାଇତି ରଖନ୍ତୁ ନେଇ
ମହାପ୍ରଭୁ ହେ !
ଯାତନା ଭୋଗନ୍ତୁ ଜନେ
ଜାଣୁଜାଣୁ କିଂପା ଦୁରୁଗମ ପଥ ଲୋଡୁଛନ୍ତି ଅନୁକ୍ଷଣେ । ( ୨୬ )

ରଖୁଆଳ ଯଦି ଖାଦକ ହୋଇଲା କିବା ଲାଭ ଅଛି ପ୍ରାଣେ
ରହୁ ଅପେକ୍ଷାରେ ରାହୁ ଗରାସିଲା ଚାହୁଁ ଚାହୁଁ ଅନୁକ୍ଷଣେ
ମହାପ୍ରଭୁ ହେ !
ରମ୍ଭା ବନେ ଝଞ୍ଜା ବାୟୁ
ରହିରହି ସବୁ ଭାଙ୍ଗି ମୂଳତକ ପକାଇ ସାଧୁଛି ଦାଉ । ( ୨୭ )

ଲଂଘି ନପାରି ଏ ଭଙ୍ଗୀକୁ ତୁମର ସଙ୍ଗୀ ଖୋଜେ ମିଛେ ଖାଲି
ଲଙ୍ଘିବା ମାତ୍ରକେ ଲଉଡ଼ି ପ୍ରହାରେ ମୋ' ପିଠି ଯାଉଛି ଫୁଲି
ମହାପ୍ରଭୁ ହେ !
ଲାଗେନା କି ଦୁଃଖ ମୋର
ଲଭାଇବା ଖାଲି ପରୀକ୍ଷା ତୁମ୍ଭର ନିଜେ ବସି ସବୁ କର । ( ୨୮ )

ବାରବାର ପଦେ କଲେ ମୁଁ ମିନତି ବିରକତ ହେଲ ବୋଲି
ବଇରୀ କଣ୍ଠରେ ଟାଉଲି ଭରାଇ କୁହା କରାଉଛ ବୁଲି
ମହାପ୍ରଭୁ ହେ !
ବାଧୁଛି ପରାଣେ ତାହା
ବାହା କିଳିବାକୁ ରାହା ନମିଳୁଛି ସବୁ ତ ତୁମରି ମାୟା । ( ୨୯ )

ଶତଦଳେ ପୂଜି ସପଥ କରୁଛି ଗୁପତେ ତୁମ୍ଭ ନିକଟେ
ଶମନ ଚିଟାଉ ନ ଆଣୁଣୁ ଆଉ ନଥିବି ଅରୀ ଆକଟେ
ମହାପ୍ରଭୁ ହେ !

ସଉକିରେ ଥାଅ ବସି
ସହିବାର ସୀମା ଧରିନେଲି ଆଜି ଦୁନିଆରେ ଜଣେ ଦୋଷୀ । (୩୦)

ଷଷ୍ଠୀଅର୍ଦ୍ଧଦଶ ବରଷ ଭୋଗିଲି ଯେତେଯେତେ ମୁଁ ଯାତନା
ଷଡ଼ଯନ୍ତ ସବୁ ଜାଣିଗଲି ଆଜି ସବୁ ହିଁ ତୁମ ରଚନା
ମହାପ୍ରଭୁ ହେ !
ସାରା ସଂସାରଟା କଳି
ସଜାଇଛ ମିଛେ କିବା ତୁମ ଇଛା ତୁମ୍ଭେ ଜାଣ ବନମାଳୀ । (୩୧)

ସଂକଟ ସଙ୍ଗରେ ସଂଯୋଗ ହୋଇଲେ ସଂଶୟ ନରଖି ତିଳେ
ସଂଗୀତା ସଂହାର କରିଦିଅ ତୁମେ ଜଗତ ନଲୋଡ଼ୁ ବେଳେ
ମହାପ୍ରଭୁ ହେ !
ସଂକୁଚିତ ନୁହଁ ଏଠି
ସଂକୁଚିତ ହେଲେ ଦାବୀ ରହିଅଛି ମୋ' କର୍ମ ନହେଉ ବେଠି । (୩୨)

ହକଦାବୀ ବୋଲି କରିଲେ ଆଗତ ଅମଖ ନମଣି ମୋତେ
ହତପରାଣକୁ ଜୀବନ୍ତ କରାଇ ରଖିନିଅ କୋଳାଗ୍ରତେ
ମହାପ୍ରଭୁ ହେ !
ହନ୍ତା ଧରୁଅଛି ପଛ
ହୋଇଲେ ନିର୍ଦ୍ଦୟ ମରଣ ନିଶ୍ଚୟ ଏକଥା ମୋ' ମନେ ଶୋଚେ । (୩୩)

କ୍ଷମାର ସାଗର ତୁମେ ଚକ୍ରଧର ବକ୍ରନେତ୍ରେ ଦେଲେ ଚାହିଁ
କ୍ଷୀତି ତଳେ ଜଣେ ପତାକା ମୁଁ ଧରି ଯିବି କେତେ ଖ୍ୟାତି ଗାଇ
ମହାପ୍ରଭୁ ହେ !
କ୍ଷୋଭ ନ କରାନ୍ତୁ ଚିତ୍ତ
କ୍ଷିରାବ୍ଧୀ ତନୟା ବନ୍ଧୁବୋଲି ଭାବି ଭାରତୀ ଶରଣାଗତ । (୩୪)

(୨୦।୦୬।୪୭)

●●●

# ଭାରତୀ ପୂଜା

ମୋର ମରମ ବେଦନା ପାଇଁ (ଜନନୀ)
(ଇହ) ଜଗତେ କେ ଅଛି ହେବ ଦାଇ ॥ ପଦ ॥
ନଜାଣେ ପୂଜି ତମ ଶ୍ରୀଚରଣେ
ମାମା ମନ୍ତର ବିନୁ ନାହିଁ ଅନ୍ୟେ
ସାନ୍ଧୀ ମନ୍ଦାର କଳି ଆଣିଛି ସରାଗେ ତୋଳି
ଅଧିର କରୁ ବାରେ ଘେନିବ କି ? ॥ ୧ ॥
(ତୁମ) ବୀଣାର ଝଙ୍କାରେ ପାଶାଣ ଅଙ୍କୁରେ
ମୋ କଣିକା ଦୁଃଖ ...... ପଲକରେ ହରେ
ପରାଣେ ପରସୀ ଶୀଥିଳ କର
ଉଁଆସ ନିଶିରେଖା ତୁମେ ମୋର
ମୁଁ ତୁମର ନୁହେଁ ବୋଲି ହାରକାଟି ବସିଲେ
ଅରାତି କରେ ସଜା ହେବଟାଇ ॥ ୨॥

●●●

# ବନ୍ଧୁ

(କଲ୍ୟାଲି ମା'-୧୬)

ସାନ୍ଧ୍ୟ ରଜନୀ ଗନ୍ଧା ମନ୍ଦ ବାୟୁ ପର୍‌ସାଏ ମୋ' ମନ୍ଦିରେ
ଶାରଦିଆ ଚାନ୍ଦ ଜୋତ୍ସ୍ନା ରାଣୀ
ହସେ ବାତାୟନ ଦ୍ୱାରେ ॥ ପଦ ॥
ଅତୀତ ଆତପ ସନ୍ତାପି ପାଶେ
ଧିର ଶମୀରେ ବୁଲି କାନନେ
ସଜାଣ କୁସୁମ ଗୋପନେ ଶେଯେ
ସଞ୍ଜ ଚାଁହେ ବାରେ ବାରେ ॥ ୧ ॥
ଝୀଲି ରବେ ନିଶାରାଣୀ
ପୁଲ୍ଲକରେ ସାଥି ହେଲାଣି
ପରବାସୀ ଚାନ୍ଦ ବାରଣ ଦେ'ରେ
(ବନ୍ଧୁ) ଆସିବେ ସରାଗେ ଭରେ ॥ ୨ ॥
(୨୦/୦୯/୪୭)

●●●

# ଗଣେଶ ପୂଜା କୀର୍ତ୍ତନ

ବିନାୟକ ଏ ଅରକ୍ଷ ଆରତ (ତୁମ) ଆଲଟ କର୍ଣ୍ଣରେ ଶୁଣିବକି ?
ସଙ୍କଟ ପୂରିତ ଭବସିନ୍ଧୁ ଜଳୁ କର୍ଣ୍ଣଧାର ହୋଇ ତାରିବ କି ? ॥ ପଦ ॥
ନାହିଁ ତୋ' ପୂଜା ସମ୍ଭାର
(ମୋର) ଅଶ୍ରୁଧାର ମାତ୍ର ସାର
ଖୁଣ୍ଟା ବାସିଫୁଲ ମୁଠା ପୁଷ୍ପାଞ୍ଜଳି ସାଦରରେ ତାହା ଘେନିବ କି ? ॥ ୧ ॥
ଅମୃତ ଲଡୁରେ ତୋଷ ଯେଉଁ ପ୍ରଭୁ - ମୋର ଶୁଖିଲା ତଣ୍ଡୁଳ ସାଜିବ କି
ବହୁ ଦିନୁ ପୋଷା ବାଞ୍ଛିତ କାମନା - କେଉଁ ମୁଖେ ଦାସ ଭାଷିବ କି ?
ତୁମେ ମୋର ମୂଳାଧାର
(କିପାଁ) ବେଳ ଜାଣି ବାଟହାର
କିଏ ବା କରୁଣା ଉଣା ହେଲା ପୂଜି -ମୋ' ବେଳକୁ ସିନ୍ଧୁ ଶୁଖିଲା କି ?। ୨॥
ଖଡ଼ଗ ଧାରରେ ମୋର ଶିର ଛେଦି- ଖରସ୍ରୋତୁ ପାରି କରିବ କି ?
ଡମ୍ବରୁ ନାଦରେ ନାଗରା ଦେଇଣ ନଗରୀରେ ଜଣା କରିବ କି ?
ପୂରିବ ମାନସ ତୋ'ର
(ମୁଁ) ନହୋଇବି ହରବର
ବିଜୟ ପତକା ଉଡ଼ାଇ ଆକାଶେ କାଳେକାଳେ କଥା ରଖିବ କି ?॥ ୩ ॥

(୨୧.୦୬.୪୭)

•••

# ଗଣେଶ ପୂଜା

ଏକ ଦନ୍ତ ମହାକାୟ ପହିଲି ପୂଜା ତୁମର
ସବିନୟେ ବଳେ ଆଜି ଅରଘ ଘେନ ମୋହର
ଗଜାନନ ଲମ୍ବୋଦର
ଘାରେ ବେଦନା ମୋହର
ବରଜିଛି ସର୍ବ ସୁଖ ତୁମ୍ଭ ଲାଗି କର୍ଣ୍ଣଧାର ॥୧ ॥
ସର୍ବ ସିଦ୍ଧ ଆରାଧନେ
ହୁଏ ବୋଲି ଶୁଣେ କାନେ
ବର୍ଣ୍ଣିବ କି ଗୁଣାବଳୀ ଅଧମ ସନ୍ତାନ ତୋ'ର ॥୨॥
ଆବାୟନେ ଆବିର୍ଭାବ
ସନ୍ତୋଷେ ହୁଅ ହେ ଦେବ
ଶରଣାଗତ ଜନର, ଆଶୀର୍ବାଦ ଢାଳ ଶିର ॥ ୩ ॥

(୨୦/୯/୪୭)

•••

# (ହୋରି)କୀର୍ତ୍ତନ -ଖେମଟା ଥାଡ଼

ରାଧାମୁରାରି ହୋରି ଖେଳେ - ଏ ମଧୁ କାଳେ
ବିଧୁଦୋଳା ଗଗନେ ମଧୁବୋଳା ପବନେ
ମାନିନୀ ରାଇ ଚିତ୍ତ ଚଳେ, ଏ ମଧୁ କାଳେ ॥ ପଦ ॥

ଚାମର ଢାଳି ଚତୁରୀ ଲଳିତା ଗୋରୀ
ରାଧିକା ମୋହନ ମନ ଉଠେ ଶିହରି
କଞ୍ଜ ନୟନା ଘେରି - ମାରନ୍ତି ପିଚକାରୀ
କିଏ ବଜାଏ ଭେରୀ କିଏ ବଜାଇ ମୋହୁରୀ
ବୃନ୍ଦାବନ କୁଞ୍ଜବନ ଗହଳେ ॥୧॥

ରଙ୍ଗ ଅଧର ଚାହିଁଲେ ମଧୁର ହାସ
ସମ୍ଭାଳି ନପାରେ ରାଇ ବସନ ବେଶ
ଚୂଡ଼ାରେ କୃଷ୍ଣଚୂଡ଼ା କେତକୀର ପାଖୁଡ଼ା
କୁଞ୍ଚିତ ପୀତଧଡ଼ା ରାଧା ପଣତ ଭିଡ଼ା
କି ଦେବି ପଟାନ୍ତର ଏ ବେଳେ- (୨)

ବକୁଳ ଫୁଲ ସୁବାସେ ଚହଟେ ଧରା
ଚୁତଡ଼ାଳେ କଳାପିକ ଦିଏ ନାଗରା
କେକୀ କୁହାଟ ନାଟ କରିବ ଦାଣ୍ଡବାଟ
କଦମ୍ବ ତରୁପୀଠ ଦେଖ ଯମୁନାଘାଟ
ବୃନ୍ଦାବନ ହାଟବାଟ ଉଛୁଳେ - ଏ ମଧୁକାଳେ ॥ ୩ ॥

ମୁଖ ଲେଉଟାଇ ଗଲେ ବାହୁଡ଼ି
ବଳିଆର ଭୁଜେ ଧରିଲୁ ଭିଡ଼ି
ନାଲିଆନ କଲୁ ମୋର ଅଧର
କର କଞ୍ଜେ ଉରେ ରଖିଲୁ ଧାର, ହେ ନାଗର ॥ ୪ ॥

ସମୀର ତରଙ୍ଗେ କଳା କୋକିଳ
ନାଗରା ବଜାଇ ଦେବ ଗୋପର
କିପରି ତୋଳିବି ମଥା ମୋହର
ବୃନ୍ଦାବନେ କଲୁ ଏ ହରବର, ହେ ନାଗର ।।୫ ।।

ଶ୍ରୀମତୀ ଶ୍ରୀପତି ରଚିଲେ କେଳି
ବୃନ୍ଦାବନ ବନ ଗଲା ଉଚ୍ଛୁଳି
ସେ ପଦ ପଙ୍କଜ ରେଣୁ ମାତର
ଲଭିବାକୁ ନବ ପାତୁଛି ଶିରହେ ନାଗର ।। ୬ ।।

●●●

## ହୋରି

### (ତୋରେ ଶରଣ ଗଲିରେ - ବୃତ୍ତେ)

### ଆଠତାଳି

ତୋତେ ଦୂରୁ ଜୁହାରେ ହେ ନାଗର
ଦିନେ ଦିନେ ତୁମ୍ଭ ଏକି ବ୍ୟଭାର ହେ ନାଗର ।। ପଦ ।।

ପିଚକାରୀ ମାରି ନେଲୁ ମହତ -
କି ବୋଲିବେ ଜନେ ନିଜେ କହ ତ
ଦୋସରା ବସନ ନାହିଁ ମୋହର
କିପରି ବାହୁଡ଼ି ଯିବ ମୁଁ ପୁର, ହେ ନାଗର ।। ୧ ।।

ନାରୀ ସଉକାନି ଯେବେ ତୁମ୍ଭର
କଟାଳ ଜାଇଣ ସେ ବ୍ରଜେଶ୍ୱର
ସୁଖେ କରି ଦେବେ ସେ ବିଭାଘର
(ଏତ) ପର ପରମାଦ ଭରା ଜୁଆର, ହେ ନାଗର ।। ୨ ।।

ମୁଖରା ହୋଇ ମୁଁ ଭାଷିଲେ ଗୀର
ମୁଠା ମୁଠା ଫିଙ୍ଗୁ ମୁଖେ ଅବିର
ଧସାଇ ପଶି ମୁଁ ଧରିଲେ କର
ଚନ୍ଦନ ବୋଲିଲୁ ମୋର ଚିକୁର, ହେ ନାଗର ।। ୩ ।।

●●●

# ହୋରିଗୀତ

ବୃନ୍ଦାବନେ ବନେ ମାରେ କେ ପିଚକାରୀ
ଫଗୁଆ ହେଲାକି ସତେ ଜାଣେନାରେ ସହଚରୀ
ନାଟୁଆ ନରବର ହଟ ହଟା ତୁ ନକର
ରଙ୍ଗ ବସନ ହେଲା ଏହାକି ତୁମ ବ୍ୟବହାର,
ଶାଶୁ ନଣନ୍ଦ ମୋର କରିବେ ଦୂରଦୂର
ନଥିବେ କେହି ଜନେ କରିବାକୁ ଗୁହାରୀ ॥ ୧ ॥

ଲଳୀତା – ସମୀର ଗଲା କହି ଜାଣୁନାରେ ପ୍ରିୟ ସହି
କାହା ପର ସେ ବାଇ ହୋଇ ଆସିଛୁ ଧାଇଁ
ମୁଁ କିଂପା ସେହି ଦୋଷେ ହୋଇଲି ଅବଗାହି
ନିଜ ମନ ମଜାଇ ନିଜେ ହୋଇଛୁ ଘାରି ॥ ୨ ॥

ଶ୍ରୀରାଧା– କାଳ ହୋଇଲେ କଳାଭଅଁର ମୋତେ ଘେରି
ପରସେ ପରସିଲା ଏଣେ କେଳା କାଉଁରୀ
ଫଗୁଣ ଫଗୁଗୋଳ ପଶି ମୋ' ନୟନର
ପଲକ ନଡୋଳି ମୁଁ ମଲିରେ ସହଚରୀ ॥ ୩ ॥

ଶ୍ରୀପତି – ଶ୍ରୀମତୀ ମନ ଜାଣି ଭାଷନ୍ତି ବେଣୁପାଣି
ଆସ ରାସ ସଙ୍ଗିନୀ ଅବିର ଦେବା ବୁଣି
ରୂପେଲି ଚାନ୍ଦିନୀକୁ ନେବା ନାଲିରେ କିଣି
ମନରୁ ମାନ ତେଜ ଏବେ ତୁ ବିମ୍ବାଧରୀ ॥ ୪ ॥

## ଉଦଣ୍ଡ

ବୃନ୍ଦାବନ .... ବନେବନେ
ମାରେକେ ପିଚକରୀ
ଏହି ନବ ବୃନ୍ଦାବନେ
ଏହି ନବ ବୃନ୍ଦାବନେ ....
ମାରେ କି ପିଚକରୀ ..
ଏହି ନବ ବୃନ୍ଦାବନେ



# ହୋରି

ରାଧା ମୋହନ ହୋରି ଖେଳେ ମାତିରେ
ରାସ ରଙ୍ଗିନୀ ସଙ୍ଗିଏ ସାଥିରେ
ଫୁଲ ଫୁଟା ଫଗୁଣ
ଫୁଲ ଧନୁରେ ଗୁଣ
ଦେଇ ମାରିବ କାହା ଛାତିରେ,
ଚାମର ଢାଳି ଚତୁରୀ ଲଳିତା ଗୋରୀ
ରାଧିକା ମୋହନ ମନ ଦିଏ କତୁରେ
ଚଉପାସରେ ଘେରି ମାରୁଛି ପିଚକାରୀ
ଝୁଲି ଝୁଲାନ୍ତି କଳା ହାତୀରେ ॥୧॥

ମଦନ ମୋହନ ଧନ ଘନକାଳିଆ
ରାଇ ବିନୋଦିନୀ ଧନ ସୁନାଥାଳିଆ
ସୁନ୍ଦରୀ ସୁକୁମାରି କୁସୁମେ ବେଶକରି
ଧରି ସୁବାସ ଝରି ମାରି ମହତ ସାରି
ନେଲା କୁଳ କାମିନୀ ଜାତିରେ ॥ ୨ ॥

କେଉଁ ସଖିଏ ବୋଲଇ ହାତ ଦେଖାଇ
ବରଜ ଧୂଳିଆ ବନ ମାଳିଆ ଏହି
ଧର ଧରିବା ଟାଣି ନୟିବେ ବେଣୁପାଣି
ପ୍ରେମ ପୀଉଷ ଛାଣି ପିଇବାରେ ମିତଣୀ
ଛାତି କରତି ହୁଏ କାମ କାତିରେ ॥ ୩ ॥

●●●

# ହୋରି କୀର୍ତ୍ତନ

## ତାଳ-ଆଠତାଳି-ଛାୟାନଟ

ହୋରି ଖେଳେ ଚିକଣ କଳା ମଦନ ମୋହନ
(ନବ)ବୃନ୍ଦାବନ ରାଜପଥ ଦିଶେ କି ଶୋଭନ - ।। ପଦ ।।
ଗଳେ କଉସ୍ତୁଭ ଦୋଳେ
ବନମାଳା କଟି ଦୋଳେ
ସେବତୀ କୁସୁମ ମାଳେ
ମାଧବୀ ତା' ଶିଖୁ ଢାଳେ
କେକୀ ପୁଚ୍ଛ ଶୋହେ ଭାଲେ
ନୟନେ ନିରେଖି ଦେବା ଝଟକ ବଦନ ।। ୧ ।।

କୋଟି କାମ ଜିଣି ଅଙ୍ଗ
ତ୍ରିଭଙ୍ଗ ନେତ୍ର ସୁରଙ୍ଗ
ପରାଗ ବୋଳା ଶ୍ରୀଅଙ୍ଗ, ନେତ୍ର ସୁରଙ୍ଗ
ବସନ ପୀଚକା ରଙ୍ଗ, ନେତ୍ର ସୁରଙ୍ଗ
ଧନ୍ୟ ହୁଏ ରାଧା ପ୍ରାଣ ମଜାଇ ତା' ମନ ।।୨।।

ମୁରଲୀ ବାହି ସୁସ୍ୱରେ
ଗୋପ ଯୁବତୀ ହକାରେ
ପଞ୍ଚମ ସ୍ୱରରେ ଘରେ, ଯୁବତୀ ହକାରେ
ଯମୁନା କୂଳରେ ବାରେ, ଯୁବତୀ ହକାରେ
ଲତା ଅନ୍ତରାଳେ ଥରେ, ଯୁବତୀ ହକାରେ
କଦମ୍ବ ମୂଳରେ ଥରେ, ଯୁବତୀ ହକାରେ
ଯେତେ ଦେଖୁଥିଲେ ନୂଆ ଦିଶେ ସେ ଆନନ ।। ୩ ।।

ଯେତେଦେଖୁ ଥିଲେ ନୂଆ
ମସ୍ତକେ ମୟୂର ପଙ୍ଖା
ତହିଁ ରାଧା ନାମ ଲେଖା
ଦେଖିଲେ ଆସଇ ଶଙ୍କା - ଯହିଁ  ରାଧା ନାମ ଲେଖା
ତରଳ ସିନ୍ଦୂରେ ଅଙ୍କା-  ଯହିଁ  ରାଧା ନାମ ଲେଖା
ଅପାଙ୍ଗେ ଚାହେ ରାଧିକା ଯହିଁ ନିଜ ନାମ ଲେଖା
ଦେଖି ଯା ବିଶାଖା ବାରେ ଗୋପୀ ପ୍ରାଣଧନ ॥ ୪ ॥

●●●

## ହୋରି ଗୀତ

(ମୋ) ହୃଦୟ ବୃନ୍ଦାବନ ମଣ୍ଡ କୁଞ୍ଜକାନନ
ଘେନି ମୀରା ମିତଣୀ ଆହେ ନନ୍ଦନନ୍ଦନ
ତୁମ ଛନ୍ଦାଚରଣ ବିନୁ ନାହିଁ କାରଣ
ମୁଁ ପରା କିଣା ଦାସୀ ବିକିଅଛି ଜୀବନ;
(ପଡ଼ୀ) ଯେତେ ଆସେ ଦୂଷଣ
କରେ ଅଙ୍ଗ ଭୂଷଣ
ସହିସହି ପାଷାଣ ହୋଇଲି ତୁମେ ଜାଣ
ଶାଣ ଦିଆ କୃପାଣ କରତେ ଅନୁକ୍ଷଣ
ପରସନ ଆଶାରେ ରହି ମୁହିଁ ମଗନ ॥

(୧୧/୧୧/୮୩)

●●●

# ହୋରି

## ଏକତାଲା : କୀର୍ତ୍ତନ ଝୁଲନ୍ତିକୁଞ୍ଜେ ରାଧା ମୋହନ- ବୃତ୍ତେ

ଖେଳନ୍ତି ହୋରି କଳା କହ୍ନାଇ
ଛାଡ଼ି ସହଚରୀ ରାଇ ମନାଇ
ଆସଲୋ ଗୁହାଳୀ ସରବେ ମିଳି
ମୁଖେ ବୋଳି ଦେବା କଜ୍ଜ୍ୱଳ କାଳି
ଦଳି ଫିଙ୍ଗି ଦେବା କୁସୁମ ଦୋଳି
ଗୋରୀ କେଶ ଦେବା ଚନ୍ଦନେ ବୋଳି ଗୋ ... ସହଚରୀ
ଚନ୍ଦ୍ରାବଳୀ ଦେଖି ମାରିବ ତାଳି
ଘେରିଯା ସରବେ କାନନ ଚାରି ଗୋ... ସହଚରୀ
ଏକାକୀ କେମନ୍ତେ ଖେଳିବ ହୋରି ॥ ୧ ॥
କେ ସଖୀ ବୋଲଇ ଶୁଣ ମିତଣୀ
ଯେପରି ଲୁହାକୁ ସେପରି ପାଣି
ଧରା ଦେଲେ କାହିଁ ରଖି ତା ବେଣୀ
ଯୁଗଳ ତନୁକୁ ଭିଡ଼ା ବାନ୍ଧୁଣୀ, ଗୋ .... ସହଚରୀ
ରାଣୀ ପାଶେ ନେଇ ଭେଟିବା ପୁଣି
ଦେଖନ୍ତୁ ପୁଅଙ୍କ ଗୁଣ କରଣି ॥ ୨ ॥
କେ ସଖୀ ବୋଲେ ସେତିକି ନୁହଇ
କୁଟିଳା ପାଶରେ ଭେଟିବା ଯାଇଁ
ଡାକିଆଣି ତାକୁ ଦେଖାଇ ଦେଇ
ତେବେ ପ୍ରତିଶୋଧ ମେଣ୍ଟିବ ଯାଇଁ, ଗୋ ସହଚରୀ
ହୁରିହେବ ଗୋପ ବରଜ ଗୋହି ॥ ୩ ॥
ଅନ୍ତରାଳୁ ଥାଇ ମୁରଲୀପାଣି
ସଖୀଗଣକୁ ଭାଷି ଚାଟୁବାଣୀ
ବୋଲନ୍ତି ଶୁଣ ଗୋ' ବରଜ ବାଳୀ
(ତୁମେ) ବୃଥାରେ କିଂପାଇଁ କରୁଛ କଳି, ଗୋ .... ସହଚରୀ
ମନୁମାନ ତେଜ ନହୁଅ ଗୁଣି ॥ ୪ ॥

●●●

# ବହୁଦିନୁ ପାଇଛି ହେ ନୀଳମଣି- ବୃତ୍ତେ

(ଆଜି)ଗମ୍ଭା ପୂନେଇର ଶେଷ ଦୋଳି
ଖେଳି ଖେଳାଇ ବିଦାୟ ଦେଉ ବାଳୀ
ଭାବି ହେବୁ କାଲି ମୁଖେ ବୋଳି କାଳି
ବଘାରିବେ ଭଗାରୁଣୀ କେତେ ଛଳି
ରହିବଟି ମନେ ସତକୁହ ପ୍ରାଣ ବନ୍ଧୁ
ଅଦ୍ୱିତୀୟ ତୁମେ ବୋଲି
ଆଶ୍ରିତ ବୋଲି ଆମ୍ଭେ
ବାଜିଉଠେ ଦାଣ୍ଡେ ଦାଣ୍ଡେ ବାହୁଡ଼ା ବାଜଣା
ବ୍ୟଥିତ ପରାଣ ଜଳି ଝରେ ଅଗ୍ନିକଣା
(ସତେ) ଜୀବ ଚାଲି ବଂଧୁ
ବ୍ରଜବାଳୀ ଗଲା ମାଳି
ଚାତକର ବାରିଧାରା
ଝରୁଥିବ ନେତ୍ର ବିନ୍ଦୁ
(ଆମ୍ଭେ) ବ୍ରଜପୁର ନାଗରୀ.........
ବରଜି ହାରିବୁ ଶିରୀ
(କାଲି) ବଜାରେ ପଡ଼ିବ ହୁରି
କଳଙ୍କନୀ ବୋଲି
ହେଲେ ହେଉ.........ପ୍ରାଣ ଯାଉ
ନ ଛାଡ଼ିବୁ ଶ୍ୟାମ ପ୍ରେମ ଆଉ
ଅପେକ୍ଷି ରହିଲୁ ଆମ୍ଭେ ପୁନରାଗମନେ ॥
ଅପେକ୍ଷି ରହିଲୁ ଆମ୍ଭେ ପୁନରାଗମନେ
ଅଧୀର ପରାଣ ଧୀର କରି ସଯତନେ
ନଭୁଲିବୁ କେଭେ ବାହୁଡ଼ି ଆସିବା କଥା
ଝୁଲା ଦୋଳି ଖେଳ କଥା
ଅପେକ୍ଷି..... ପୁନରା ଗମନେ ॥
ଛନ୍ଦା ଚରଣ ହେ ଦୁଃଖ ତାରଣ ହେ
ଝୁଲାଇ ଦେଇଛୁ ବିଦାୟ ଦୋଳି
(ଶେଷେ) ନିଅ ଆମ୍ଭ ପୁଷ୍ପାଞ୍ଜଳି
କୃଶକାୟ ହେଲୁ ଦେଖ ତୁମ୍ଭରି ବିହୁନେ ॥



# ଓଡ଼ିଶୀ କୀର୍ତ୍ତନ

ଷଡ଼ଜ କୁଞ୍ଜେ ଷଡ଼ ଭୁଜା ମୋହନ
ଶଙ୍ଖ, ଚକ୍ର, ଗଦା, ପଦ୍ମ, ଚାରି କରେ
କରେ ବେନିକରେ ବଂଶୀ ଚୁମ୍ବନ
ରୁଦ୍ରାକ୍ଷ ମାଳାଟି ଆଜାନୁ ଲମ୍ବିତ
ଚୂଳି ପାଦୁକା ତାଙ୍କ ପୟରେ ଶୋଭିତ
ପୂର୍ଣ୍ଣିମୀ ତିଥିରେ ପୂର୍ଣ୍ଣଚନ୍ଦ୍ର ଉଇଁ
କିରଣେ ପୂରିତ କରେ ବିମାନ ।
ଜଟା କଉପିନୀ ବିଭୂତି ଭୂଷଣ
କିଏ ଦେଲା ପ୍ରଭୁ ଏଡ଼େଇ କଷଣ
ଭାବି ନ ପାରୁଛି ମହିମା ତୁମ୍ଭର
କିଏବା ଭାବିଣ କଲା ସାଧନ ।
ପରହାତେ ସଦା ନିଜ ପରିଜନେ
ଦେବାକୁ ବଳିଛି ତୁମରି ଶାସନେ
ଶ୍ରୀଚରଣ ଠେଲା ଖାଇ ମୁଁ ପଶିବି
ଗେହ୍ଲା ହେବି ଦିନେ ଭାବୁଛି ମନ,
ଗହ୍ଲା ପୂନେଇରେ ମାଇଁ ଡାକ ଦେଲି
ତେଣୁ ଭାବୁଛ କି ମୋତେ ପରାପର ବୋଲି
ଅଖିଳ ନୟନେ ଅପକୃଷ୍ଟ ଦେଖି
ଅରାତି ହସ୍ତରେ ନହରା ମାନ ।।

●●●

## କୁଂଜକାନନ

କୁଞ୍ଜ କାନନୁ ଗୋ......
ମଞ୍ଜୁ ତାନେ କେ କାନେ କହିଲା
ସମୀର ଧୀରେଧୀରେ ଝଙ୍କାରେ ବାରେବାରେ
ଜଞ୍ଜାଳି ପରାଣ ମୋ' ଅଧୀର କଲା ଗୋ...
ସଞ୍ଜୁଆ ଶେଫାଳି ଓଟାରେ ନୁହେଁ ତୋଳି
ଓଢ଼ଣା ଫାଙ୍କେ ଥାଇ 'ନାଟ ଦେଖିଲା ଗୋ...
ସଞ୍ଜିଥିବା ପିନ୍ଧା ପାଟ ଲଗାଏ ଆଜି ଅଝଟ
ଯେତେ ଆକଟି ଧଇଲେ କରୁ ଖସିଲା ଗୋ ।

●●●

## ୩ୟ କୁଞ୍ଜ (କଓ୍ୱାଲି)

ମଦନ ମୋହନ କୁଞ୍ଜେ ଝୁଲେରେ....
ଝୁଲେ .......ଝୁଲେ.....ଝୁଲେ......ରେ.....
ଚାନ୍ଦିନୀ ରାତିରେ ଦ୍ୱାଦଶୀ ତିଥିରେ
ମଦନ ମୋହନ କୁଞ୍ଜେ ଝୁଲେରେ....... ॥
କୁଞ୍ଜ କୁସୁମେ ଭରା
ଗାଏ ସେ କେକୀ ମୁଖରା
ଅଧରେ ମୁରଲୀ ଧରା ମୁରଲୀ ବାଯେ ସୁସ୍ୱରେ
ବାଏ ଏ ଶ୍ରାବଣୀ ବିତି
ଝାଉଁଲା ଚାନ୍ଦିନୀ ରାତି
ନାହିଁ.... କେଇ... ସାଥେ...ସାଥୀ...
(ଏକାକିନୀ) କାମନାସୀ କି ଭାବେ ସେ ଝୁଲେ
(ନିଚେ ଜାଣେ) ରାଧାରାଣୀ ଅଛନ୍ତି କା ତୁଲେ ।
(୨୧/୦୮/୪୭)

●●●

## ।। ଗୀତ ।।

ରସ ରାଜଙ୍କର ପ୍ରେମ ରସବାଣୀ ପରାଣ ସିଂଥିଳ କରିବା
ମାଳତୀ ଫୁଲରେ ମାଳ ଗୁନ୍ଥିକରି କଟି ଦେଶେ ଝରା ବାନ୍ଧିବା
ରଙ୍ଗଣୀ ଫୁଲକୁ ବେଣୀ ଛନ୍ଦେ ଛନ୍ଦି ଗଭାରେ ପ୍ରେମରେ ମଣ୍ଡିବା
ସଜନୀ.... ଚନ୍ଦନେ ଭ୍ରୂଲତା ଆଙ୍କିବା
ମନ୍ଦ ମରୁତ ଆଲଟେ ଫେରାଇ ମକରନ୍ଦ ପାନ କରିବା....
ମଞ୍ଜିର ପୟରେ ବାନ୍ଧିଣ ସତ୍ୱରେ ଲାକ୍ଷା ରସେ ଆମ୍ଭେ ରଞ୍ଜିବା..
ହୁଳହୁଳି ନାଦେ ମଣ୍ଡପ କମ୍ପାଇଁ ପରାଣ ଶିଥିଳ କରିବା....
ସଜନୀ...... (ଶେଷେ) ମନ ଦୁଃଖେ ବାସେ ଫେରିବା....
ନଣନ୍ଦ ଗଞ୍ଜଣା କଳାଜାଇମନ୍ଦା ମଣୋଇ ପରାଏ ଘେନିବା.... ।।

(୨୭/୦୮/୪୭)

•••

## ଝୁଲଣ

ଦେଖ ସଖୀ ଏହି କୁଞ୍ଜ କାନନ
କୁଞ୍ଜେ କୁଞ୍ଜେ ଝୁଲୁଛନ୍ତି ମଦନ ମୋହନ ।
ଚନ୍ଦନ ବିନ୍ଦୁ ଶ୍ରୀମୁଖ କେତେ ଶୋଭାବନ
ବନ୍ଦନା କରି ନହେବ ବତିଲେ ଜୀବନ ।
ପୟର ନୂପୁର ନାଦ କିଣାକିଣା ସ୍ୱନ
ଶୁଣୀଲେ ମୋ' ଦଗ୍ଧ ଚିତ୍ତ ହୁଏ ଛନଛନ
ପୀତ ପଟ ଲୋଟା ପଦେ ପଡ଼ିଲେ ନୟନ
ଘାରି ହୁଏ ଅନୁକ୍ଷଣ ଭଗାରୀ ମଦନ
ବଙ୍କିମା ଅଧରେ ବେଣୁ ବାହି ଘନ ଘନ
ବାରିଯାକ୍ଷୀ ବରାଙ୍ଗନା ହରୁଅଛି ମନ
କନକ ବରନୀ ରାଇ ଜଗତ ମୋହନ
କୃଷ୍ଣ କୋଳେ ବିରଜଇ ଆହାକି ଜତନ
କଳା ଗୋରା ତନୁ ମିଶା-ମିଶିରେ ସନ୍ଧାନ
ଖୋଜୁ ସଦା ଅବିରତ କିଶୋର ଜୀବନ ।

(୧୧/୬/୭୮)

•••

# ଝୁଲଣ

## ୨ୟ କୁଞ୍ଜ (ଖେମଟା)

ଆଜି ତ ଦ୍ୱିତୀୟ କୁଞ୍ଜ ଲୋ ସଜନୀ ସଞ୍ଜ ହେଲା ଯିବୁ ନାହିଁକି ?
କୁଞ୍ଜ ମାଳିଆଙ୍କ ଗୁଞ୍ଜ ମାଳଗୁନ୍ଥା ସରାଗେ ଭେଟିବୁ ନାହିଁକି
ସଜନୀ..... ପାଳିଟି ଆମ୍ଭର
ସଜ ହେଉ ହେଉ...... କରିବେ ବୋଲଣା ଶୁଣିବା କାହିଁକି ?
ମଲ୍ଲି ମାଳଟିକୁ ବାଙ୍କଚୂଳେ ଖଞ୍ଜ କୋଳାଇବା କର୍ଣ୍ଣ ଗୁହାରେ
ଟଗର ଫୁଲକୁ ମଣିବନ୍ଧେ ଛନ୍ଦି- ଝୁଲାଇବା ଝୁଂପା କେରିଏ
ସଜନୀ...... ସତେ ଅସରା ରଜନୀ ହୋଇବ
ସାଇ ପଡ଼ିଶାରେ ହାଇ ମାରି ମିଛେ ଟାଇ କରୁଥାନ୍ତି କେତେ
ସାହାକେ ହୋଇବ ଅନ୍ତର ବ୍ୟଥାରେ ହନ୍ତସନ୍ତ ହୁଏ ଯେତେ ।
ଦ୍ୱିଜେ ଛାଡ଼ି ହାନ୍ତେ ହଳଦୀବସନ୍ତ ଦୂର ପ୍ରାୟ ପତ୍ର ନିଅ
କାନ୍ତେ ଦେଇ ପୁଣି ବୁଝାଇ କହିବୁ ତାଙ୍କ ବିନୁ କୃଶକାୟ
ବାହୁଡ଼ା ପଥକୁ ଅନୁସରି ମୁହିଁ ପତାପରେ ଅଛି ଚାହିଁ
ବାରଣ ହୋଇଣ ପିଣ୍ଡର କରତା ହୋଇ ଯାଅ ଆରେ ତୁହି
ଫିଙ୍ଗି ଦେଉଅଛି ସଞ୍ଚି ଥିବା ତାଙ୍କ ହାତୀ ଦାନ୍ତ ଗୋଟି କାଠି ।
ଫଇସେ ଦେଖିଲେ ଫରକେ ପରାଣ ମରିବିକି ମୁଣ୍ଡ ପିଟି ।
ଭକ୍ଷି କାଳକୂଟ କାଳ ପୂରାଇବି ପତ୍ରରେ ଲେଖନୀ ସାର
ଆବର ବହୁତ ବହୁତ କହିବୁ ଯେତେ ପାରୁ ବାର ବାର ।
କହିବୁ ବୁଝାଇ ଲେଖା ପଢ଼ା ମୋର ଏହିଠାରୁ ହେଲେ ଇତି
କରମ ଆଦରି ଧରମକୁ ଡାକି କାଳ କରିବା ହିଁ ବିତି ।

•••

# ଝୁଲଣ

ଝୁଲନ୍ତି ଷଡ଼ ଭୁଜା ମୋହନ
ମନ ମୋହୁଅଛି ମୁରଲୀ ସ୍ୱନ
ନୀଳ ଗଗନେ କି ଦୀତିୟା ଜହ୍ନ
କପୋଳେ ଶୋଭଇ ଘୋରାଚନ୍ଦନ
ଦେଖିଲେ ନାଚଇ ନୟନ ମନ ।
ଶଙ୍ଖ, ଚକ୍ର, ଗଦା ପଦ୍ମର ଚିହ୍ନ
କରେ ବେନି କରେ ବେଂଶୀ ଚୁମ୍ବନ
କଟୀ ହେଲା ଘନ ସାର ଶୋଭନ
ଅପାଙ୍ଗ ଚାହାଣି କି ଛନ ଛନ ॥
ଚମକ ବିଜୁଳି ନିଶି ଗର୍ଜନ
ବନ ସଙ୍ଗେ ଧାଏଁ ବୁଲା ପବନ
କେକୀ କୁହାଟ କୋଳାହଳ ସ୍ୱନ
ଯେତେ ଦେଖୁ ଥିଲେ ନୂଆ ବଦନ ॥
ମହ୍ଲାର, ପୂରବୀ କେତେ ବିବର୍ଣ୍ଣ
ଆତ୍ମାଭରୀ ଧୀଶା ଭସାଏ ମନ
ଗୁରୁ ଗମ୍ଭୀରର ଭୈରବୀ ତାନ;
ଶୁଣି ଧନ୍ୟ ହେଲା ଆତ୍ମଜୀବନ ॥
ପୀତାମ୍ବରୀ ପିନ୍ଧା ଲୋଟା ଚରଣ
ଦରଶନେ ମନ କରେ ହରଣ
ବରଣ କରିଲୁ ଛନ୍ଦା ଚରଣ
ରଖ ବା ନରଖ ଏ ଦୀନ ହୀନ ॥
ଯୋଗୀ ଜନ ମନ କରେ ଦହନ
ଜପା ମାଳ ଛାଡ଼ି ଜ୍ୟୋତି ଦର୍ଶନ
ନିଜେ ଯୋଗୀବେଶ କରି ଧାରଣ
ଭାରତୀ ଭାବନା ମୋକ୍ଷ କାରଣ ॥

(୯/୧୧/୮୩)

●●●

## କୀର୍ତ୍ତନ

ଆରେ ଆଉ ନ ଯା' ପାଣିକି ?
ଦୂରୁ କୁହାର ସେ ଶଠ ନାଗର
  ନିପଟ କପଟ ବେଣୁପାଣି କି ?
ଯମୁନା ତଟିଆ କଳାପି କୁଟିଆ
  ଆପାଙ୍ଗ ଚାହାଣି ଭଙ୍ଗୀ ଠାଣିକି ?
ପଡ଼ିଲେ ନଜର ଜଡ଼ି ଯିବ ଚିତ୍ତ
  ଏତେ ହଟ କିମ୍ପା ହେବୁ ଜାଣିକି ?
ବାରଣ ବରଣ କଲେ ତୋ' ପଣକୁ,
ତେବେ ସିନା ହେବୁ ଜଣ ପଣକୁ;
ଟାଣ ନରଖିଲେ ଷାଣିତ କୃପାଣେ
  କଟିବ ତୋ' ଦମ୍ଭ ଶୁଣି ଶୁଣି କି ?
ସେ ଦିନ ଯମୁନା କୂଳେ ଯେତେ ରାଣ
ପକାଇ କହିଲୁ ଶୁଣି ଶୁଣିକି;
କଣିକାଏ ମନା ନମାନିଲେ ତୋର
  ଦୂଷଣ ଭୋଗିଲୁ ଗଣି ଗଣିକି ।

(୧୪/୬/୭୯)

●●●

## (ଦଶାର୍ଦ୍ଧ ବରଷ ପରେ- ବୃତ୍ତେ)

ପଞ୍ଚମ କୁଞ୍ଜ ପରେ ପଞ୍ଚମ ବେଣୁ ବାହେ
ପରପଞ୍ଚ କାଇଞ୍ଚ ମାଳିଆ
ଘୁଞ୍ଚି ଗଲେ ଅନ୍ତରାଳେ
  ଭେଦେ କର୍ଣ୍ଣ ଗୁହାରେ
  ଧସାଇ ପଶୁଛି ବାରେ
ଅଙ୍କିତ ମୂରତି ଅପଲକେ ଦେଖ ଗୋ
ଗଳେ ଶୋହେ କଉସ୍ତୁବ ମାଳ
ପଞ୍ଚାନ୍ତି ଲଳିତା ବିଶାଖା ବେନି ଗୋ ॥

●●●

# ଓଡ଼ିଶୀ କୀର୍ତ୍ତନ

ମଦନ ମୋହନ କୁଞ୍ଜେ ଝୁଲେରେ......
ଝୁଲେ ଝୁଲେ ଝୁଲେରେ
ଚାନ୍ଦିନୀ ରାତିରେ ଦ୍ୱାଦଶୀ ତିଥିରେ
ମଦନ ମୋହନ କୁଞ୍ଜେ ଝୁଲେରେ..... ।
କୁଞ୍ଜେ କୁସୁମେ ପରା ଗାଏ ସେ କେକୀ ମୁଖର
ଅଧରେ ମୁରଲୀଧରା ମୁରଲୀ ବାହେ ସୁସ୍ୱରେ
ଯାଏ.....ଶ୍ରାବଣୀ.........ବିତି
ଝାଉଁଳା.......ଚାନ୍ଦିନୀ.......ରାତି
ନାହିଁ.....କେହି...ସାଥେ ସାଥି
(ଏକାକିନୀ) କି ମନାସେ କି ଉଦ୍ୟଶେ ଝୁଲେ
(ନିଜେ ଜାଣେ) ରାଧାରାଣୀ ରଖିଛ କା ତୁଳେ.... ।

ମଞ୍ଜରୀ ପୟରେ ବାନ୍ଧିଣ ସତ୍ୱରେ
ଲକ୍ଷା ରସେ ଆମ୍ଭେ ରଞ୍ଜିବା
ହୁଳହୁଳି ନାଦେ ମଣ୍ଡପ କମ୍ପାଇଁ
ପରାଗ ଶୀଥିଳ କରିବା
ସଜନୀ....(ଶେଷେ) ମନ ଦୁଃଖେ ବାସେ ଫେରିବା
ନଣନ୍ଦ ଗଞ୍ଜଣା କଳାଜାଇ ମନ୍ଦା ମଣୋଇ ପରାଏ ମଣିବା ॥

●●●

# ଝୁଲା ଦୋଳି

## ଆମ ଗୋକୁଳ ଚନ୍ଦ୍ରମା ଆସିବେ(ବୃତ୍ତେ)

ଝୁଲା ଦୋଳିରେ ମଦନ ମୋହନ
ନେଲା ପରାଣ ଯୁବତୀ ରତନ
ରଞ୍ଜା, ରଞ୍ଜା, ସଞ୍ଜ ବେଳେକେ ସଜନୀ
ସଜାଣ କୁଞ୍ଜରେ ବସି
ଗଞ୍ଜଣା ଦେଇଣ ହକାରି ଆଣିଲା
ଶୁଣାଇ ମୋହନ ବଂଶୀ
ସଖିଗୋ.....ଧନ୍ୟ ତା' ପଞ୍ଚମ ତାନ
ଚାରି କୁଞ୍ଜେ ଚାରି ନାଟୁଆ ସଙ୍ଗରେ
ଅଙ୍ଗ ମିଳାଇବା ବାରେ
ଅଧର ଅରପି ଅଧର ଉପରେ
ଦେଖିବା ନୟନ ଧାରେ
ସଖିଗୋ.... ଜୀବନ କରିବା ଧନ୍ୟ
ଧାରା ଶ୍ରାବଣୀର ଟିପିଟିପି ଧାରା
ଅସରା ରଜନୀ ହେଉ
(ଆସ୍ତ) ରାଧା ମାଧବଙ୍କ ଉଛୁଳା ପ୍ରେମରେ
ବ୍ରଜବାଳୀମାନେ ଭାସିଯାଉଁ ଗୋ
(ବ୍ରଜ) ବାଳୀମାନେ ଭାସିଯାଉ ।

•••

## (ବକୁଳ ଶେଯ ପାତି- ବୃତ୍ତେ)

ପହିଲି କୁଞ୍ଜେ ଦେଖ ରାଧା ମାଧବ ଝୁଲେ
କେକୀ କୁହାଟ ଶୁଣି ଦୂରୁ କା ମନ ଭୁଲେ ।

କଦମ୍ବ ମାଳ ଶିଖି ଚୂଳ କଟୀକୁ ଲୋଳି
ଝରାଝରି ପଡୁଛି ଯେହ୍ନେ ଅଶଘ ବାରି ।

ମଣ୍ଡପ କଂପିଯାଏ ଆଲୋଳିକା ବହୁଳେ
ଆଲଟେ ଥରିଉଠେ ଚନ୍ଦ୍ରିକା ପଙ୍କ ଭାଲେ ।

ଶିକୁଳି ଧରି ବାଳୀ ପଞ୍ଚାନ୍ତି ଧୀରେ ଧୀରେ
ଝୁଲା ପବନେ ଝୁଲେ ପଣତ ତା' ଅଧିରେ ।

ପରାଚୀ ଦିଗୁ ଘନ କୋଳୁ ଦାମନୀ ଖେଳି
ଦେଖାଏ ଚନ୍ଦ୍ରମୁଖ ଦୁଃଖ ପାସୋରା ବୋଲି ।

ମାଳତୀ କନିଅର କୁଣିଆ ଶ୍ରୀଅଙ୍ଗର
ହୋଇ ଶୋଭା ବିକାଶେ ଅତୀବ ମନୋହର ।

କଣ୍ଟକ ଶୂନ୍ୟ କିଆ ତୀରକର୍ଣ୍ଣ ଗୁହାରେ
ଭାଙ୍ଗିଛି ସତୀ ଦମ୍ଭ ମାରିଣ ପଞ୍ଚ ଶରେ ।।

●●●

# ଝୁଲଣ

ଝୁଲେ ନନ୍ଦ ନନ୍ଦନ ମଦନ ମୋହନ
ବୃନ୍ଦାବନ କୁଞ୍ଜବନ ଦିଶେ କି ଯତନ
କନକ ବରନୀ ଧନୀ ଅଷ୍ଟ ସଖିର ସଉକାନୀ
ବୃଷଭାନୁ ନନ୍ଦିନୀ ବାସେ ଶୋଭନ
ଲଳିତା ବିଶାଖା ବେନି ପଞ୍ଝାବନ୍ତି ଗଗନ..... ଦେଖ ଆନ ସଖୀ
ମନ ମୋହେ ଇନ୍ଦୁ ରେଖା ତାଣ୍ଡବ ନର୍ତ୍ତନ ।
ଧବଳୀ ଶ୍ୟାମଳୀ ନେଳୀ କୁଞ୍ଜ ଗଳୀ ଝାଉଳି.....ଶୁଣି ସେହି ବଂଶୀସ୍ୱନ
ଗୁଣି ହେଉ ଥାନ୍ତି ସଦା ଜଣାଯାଏ ଆନନ
ଧାରା ଶ୍ରାବଣୀ ରଜନୀ ବିଦୁ୍ୟଲତା ଗଗନ...ହରେ ସଖୀ ମୋର ମନ
ବାଦଲ ମାଦଲ ବାଜା ଗୁରୁ ଗରଜନ
ମାଳତୀ କଦମ୍ବ ଗନ୍ଧ ଝୁଲା ସମୀରଣ...ଭୁଲେ କର ତୁ ମନ
ନେଲା ବ୍ରଜ କାମନୀ ଜାତୀ କୁଳ ମାନ ?
କେକୀ କୁହାଟ ହାଟ ନାଗରା କଂପନ...ଜାଣିଲେ ଗୋପଜନ
କେଉଁ ପରି ମଥା ଟେକି କାଟିବୁ ଏ ଦିନ
କିବର୍ଣ୍ଣିବ ଏହି ଦୀନ ସେ ଗୁଣର କୀର୍ତ୍ତନ......ଏତିକି ମାଗୁଣି ମମ
କଳ୍ପନା କାନନେ ଚିନ୍ତି ଲଗା ବେଳେ ଧ୍ୟାନ ।

(୧୯୬୮)



## ।। ଗୀତ ।।

ପକ୍ଷୀ ଚୂଳକୁ କଲି ଆଦର ଗୋ
ସ୍ୱନ ଶୁଣିଲି ବେଣୁ ନାଦର
ଯମୁନା ଯିବାକୁ ହେଲି ଛନଛନ
ଏଡ଼ି ଦେଲି ଗୁରୁଜନଙ୍କ ବଚନ
କାଳ ଗଣ୍ଠିଧନ ମୋହନ ବଚନ
ବାଜେ ବାଜଣା ଅପବାଦର ।
ଯେ ଯାହା ବୋଲନ୍ତୁ ପଛେ ନିନ୍ଦାବାଣୀ
ଶ୍ୟାମ ପ୍ରେମ ମୋତେ କଲା ପାଗଳିନୀ
ହେଲେ ହେବି ପଛେ କୁଳ କଳଙ୍କିନୀ
ଭାର ବହିବି ପରମାଦର
ଯାଉ ଏ ଜୀବନ ତା'ର ସଂଗ ଲାଗି
ହେଉ ଦିନ ଶେଷ ପ୍ରୀତି ଭିକ୍ଷା ମାଗି
ଦରଶନ ଲାଗି ନିଶୀ ସାରା ଜାଗି
ରଖିଥିବି ଧ୍ୟାନ ତା' ପୟର । (୧୯୭୮)

## ।। ଭଜନ ।।

ସବୁରି ଆଖିରେ ସୁନ୍ଦର ତୁମେ
ସୁନ୍ଦର ଚିର ସୁନ୍ଦର
ସଖା ସହୋଦର ଆହେ ବଂଶୀଧର
ବନ୍ଧୁ ପରା ସବୁ ହୃଦୟର ।
ଅନ୍ତର ତମ ତୁମେ ଅନୁପମ
ପ୍ରଭୁ ପଣେ ପ୍ରଭୁ ଏକା ତୁମେ ସମ
ମୋହନ ମୁରତୀ ଆହେ ଶ୍ରୀପତି
ମୋହି ପାର ସିନା ମନ ମୋର
ବାନ୍ଧି ଅଛ ତୁମେ ଭକତିର ଡୋର
କାନ୍ଦିଲେ ଆଖିର ଲୁହ ହୁଅ ମୋର
ହସ ହସ ହୋଇ ଗୀତେ ସୁର ଦେଇ
ନାଚି ନାଚି ଆସ ଗିରିଧର ।
ମୀରା ମନ କଥା ଏକା ଜାଣ ତୁମେ
ଆନକେ ନ ଜାଣେ ଏ ତିନି ଭୁବନେ
କିଣା ବିକା ପ୍ରାଣ ହୋଇଛି ଧରମେ
କିଣି କାଳ ଦୁଃଖ ହର ମୋର ।



## ବିଦାୟ (ଦଶହରା)

(ମାଗୋ)ତେଜି ଯାଅ ଆଜି ଅଗଣା
ସପ୍ତମୀ, ଅଷ୍ଟମୀ, ନବମୀ, ଦଶମୀ
ଆଜି ତ ମକର ଶ୍ରବଣା । (ପଦ)
ଆଉ କେତେ ଦିନେ ଆସିବ ଭୁବନେ
ସୁଧା ମୁଖେ ବାଣୀ ଭଣନା
କି ଅଛି କି ଦେଇ ପୂଜି ବି ଚରଣ
ସବୁତ ତୁମରି ପୁରୁଣା ।
ଅଭାଗା ସନ୍ତାନ କେତେ ହୀନିମାନ
ଭୋଗିଲା ଏ ସାରା ଜୀବନ
ଲଭିଥିଲା ବୋଲି ବାଞ୍ଛିତ କାମନା
(ଆଜି) ଧରିଛି ବିଜୟ ବାନା ।
ଦେଉଛୁ ବିଦାୟ ନ କରିବ ମନା
ଅଶ୍ରୁ ନୀର ଧାର ନମୁନା
ସୁନାର ସଂସାର ଯଦି କର ଚୂନା
ରଖିବ କେ ଅଛି ତୋ' ବିନା ।
ଭାରତୀର ଗୁରୁତର ଦୋଷ ଯଦି
ରଥାଙ୍ଗେ ଶିର ଛେଦନା
ଏତିକି ମାଗୁଣି ତୋ'ର ଦରବାରେ
ଏ ମାଗୁଣି କେବେ ଭୁଲନା ॥

(୧୯୭୮)

•••

# ଦୁର୍ଗା ଜଣାଣ

ଜୟ ଦୁର୍ଗେ ଦୁର୍ଗତୀ ନାଶିନୀ ଗୋ
ହର ମୋ' ଦୁଃଖ ବରଦାୟିନୀ ଗୋ... ॥
ସୁରଙ୍କ ବେଦନା ହାରି ମହିଷାସୁରକୁ ମାରି
ନାମ ଧରି ମହିଷମର୍ଦ୍ଦିନୀ ଗୋ..... ॥
ଚଣ୍ଡ ମୁଣ୍ଡ ନାଶିନୀ ଖଣ୍ଡ ମୋ' ଦୁଃଖ ବେନି
କର ଯୋଡ଼ି କରୁଛି ଦାୟିନୀ ଗୋ.... ॥
ଅଛି ବୋଲି କରଣି ମରଣ ଗଲି ଜାଣି
ବରଣ କରି ପଦ ରେଣୁକୁ ଗୋ... ॥
ଧାରଣା ତୋରଣରେ ରଖ ନ ରଖ ବାରେ
ଏତିକି ପଣ ରଖି ମାଗୁଣି ଗୋ... ।
ବାରଣ କଲେ ମାତ ଭଣିବ ତ୍ରିଜଗତ
ତାରେଣୀ ନାମେ ନିନ୍ଦା ବାଣୀ କି ଗୋ.....
ଚିନ୍ତାରେ ହୋଇ ଭାର ପୟରେ ବାରବାର
ଲୋଟେ ତୁ ଗତିମୁକ୍ତି ଦାୟନୀ ଗୋ....॥
ଜଗଦମ୍ବା ବିମଳା ବିରଜାୟୀ ମଙ୍ଗଳା
ବଗଳା କାଳୀ ମାଣ ଚଞ୍ଚଳା ଗୋ..... ॥
ବନ୍ଦେ ବନ୍ଧନେ ପଡ଼ି ବେଦନା ଭାରେ ଜଡ଼ି
ରଡ଼ି କରୁଛି ରଖ ରଖିଣୀ ଗୋ.... ॥
ଆସି ହୋଇଲୋ ବେଳ ବିତିଲା ଯେତେ କାଳ
ତୁମ୍ଭ ନାମକୁ ଗୁଣି ଗୁଣିକି ଗୋ..... ॥
ଏବେଳେ କଲେ ନାଶ କେ ନ ଦବେ ଦୋଷ
ସେ ପାଇଁ ଭାରତୀର ଭାଳେଣି ଗୋ..... ॥
(୧୪/୧୧/୭୭)



## (ତାଳ- ଆଠତାଳି)

ରେ ଗୋରୀ ନ ଯା'ତୁ ସରି.....
ଆସିଛି ଫଗୁଣ ଆଜି ଖେଳିବା ହୋରି
ଗୋଲାପି ଅଧର ଲୋଟା ଟହଟହ ହସ.....
ନିଅମ ରହିଲା ମୋର କର ତୁ ପ୍ରକାଶ
ଅବିରତ ଅବିରରେ ବାଜୁ ଭେରୀ ତୁରୀ ।
ସୁବାସିତ ରଙ୍ଗବାରୀ ପୀଚକାରୀ ଭରି
ମାରି ମହତ ସାରି ଦେବା ବ୍ରଜନାରୀ
ଉତଳା ଚନ୍ଦ୍ର କିରଣ ବିତି ଯିବା କରି ।
କେତକୀ ପାଖୁଡ଼ା ଭିଡ଼ା ତୋଡ଼ା ମଲ୍ଲୀଗଭା
ଦେଖି ବୃନ୍ଦାବନ ଜନେ କି ବର୍ଣ୍ଣିବେ ଅବା
ସର୍ବ ଶୋଭା ଅବିରର ରଜୁ ଯିବ ଭରି ।
ବୃନ୍ଦାବନ କୁଞ୍ଜବନ ଚାଚେରୀ ଆସନେ
ବସି ଯାରେ ଶୁଣି ମନ ଗୁମାନ ମାନେ
ଝୁଲାଇ ଦିଏ ଗଗନ ଶିକୁଳୀ ଧରି ।
ଶ୍ରୀପତୀ ପୀରତି ବାଣୀ ବଜାଇଲେ ଜାଣି
ପିତା ବରଣ ବାରଣ କଲେ ସେହି କ୍ଷଣି
ମାତା ଗଲେ ସାଥୀ ଦୁଇ ଧରି ସହଚରୀ
ଶରଣାଗତ ଭାରତୀ ଯୁଗଳ ମୂରତୀ
ସପନର ଦରଶନେ ହେବ କି ମୁକତି
ବିତିଯାଉ ଭୀତି ପ୍ରାଣ ସେ ପଦ ସୁମରି ।

●●●

# ଓଡ଼ିଶୀ ଆଠତାଳି

ଶ୍ୟାମ ବଂଶୀ ସ୍ୱନ ହୋଇଲା ଭଗାରୀ
ସରମରେ ସହିଗଲି ସରି....
ଯାହା କିଛି ଅଛି ଜଗତେ ଯାତନା
ଶୁଣି ଶୁଣି ନିଜେ ନେଲି ବରି ।
ଶୁଣି ନଶୁଣିଲା ପରି ହେଲେ ଯେତେ
ଶୁଣି ହୁଏ କର୍ଣ୍ଣ ସ୍ୱର ଅବିରତେ
ଧରିବି କିପରି ଦମ୍ଭ ସହଚରୀ
ବଇରି ହୋଇଲେ ବଂଶୀଧାରୀ
ସେଦିନ ଯମୁନା କୂଳେ ଯାହା କରି
ଗଲେ ଜାଣୁ ତୁହି ଆଗୋ ସହଚରୀ
କରେ କରେ ଥାଇ ଧରି ନପାରିଲୁ
ପଲକେ ଯା’ ମୋତେ ନେଲା ଘେରି ।
ଦେଲା ଯେ ସଙ୍କେତ ଅଧରେ ଅଧର
ବଧୀର ହୋଇଲୁ ନଶୁଣି ଯୋ ଗିର
ସେ ସମୟ ଧରି କରୁଥାନ୍ତି ହୁରି
ଆସ ଆସ ବେଗେ ପ୍ରାଣେଶ୍ୱରୀ
ଦୂରରୁ ଜୁହାର ମୂରଲିରେ ଆଜ
ମୋର ନାମ ଧରି ଆଉ ତୁ ନ ବାଜ
ଶୁଣି ତୋ’ର ସ୍ୱନ ହେଲି ମୁଁ ଉଛନ
କିଏ ବା ନାହାନ୍ତି ବ୍ରଜନାରୀ ।
ଯୁଗଳ ମୂରତି ଲଭିଛି ଶ୍ରୀମତୀ
ଦେଖି କେବେ ମୁକ୍ତି ହେବ ଏ ଭାରତୀ
ଗାଇ ଗାଇ ଗୀତି କେତେ ଦିନ ବିତି
ପରେକି ଏ ଛୀବ ଜୀବ ତରି ।।

●●●

# ଭଜନ

ଭୁଲା ମନ ଭୁଲନା ମିଛ ମାୟା ସଂସାରେ
ଭରମି ନଯାଅ କେଭେ ତୁଚ୍ଛା ଛାୟା ନିଶାରେ ।
ବାୟା...... ତୁଚ୍ଛା ଛାୟା ନିଶାରେ ।

ଜନନୀ ଜଠେ ରହି
କରାଳ କଲୁ ତୁହି
ଗରାଳ ହେଉଛି ମିଛେ
ଗୁଇଁନ୍ଦା ଅଛି ପଛେ
ଚେତାଇ ଦିଏ ନିଶି ବାସରେ ।

ଡାକରା ଆସେ ଧାଇଁ
ସଜ ହୋଇ ତୋ' ପାଇଁ
ବାୟା ହେଉ କିପାଇଁ
କାୟା ରହିବ ନାହିଁ
ଜଡ଼ନା ଚିତ୍ତ ଜାୟା ଫାଶରେ ।

କଳ କବଜା ତୋ'ର
ଛାଡ଼ିବ କାଟି ହାର
ବାୟୁ ଉଠି ପ୍ରଖର
ଭାଙ୍ଗିବ ଘର ଦ୍ୱାର
ମଝି ଖୁଣ୍ଟି ଜାଣ ଆଶ୍ରାରେ ।

# ଓଡ଼ିଶୀ

ଏତେ ବେଳକୁ ହେ ମୁଖ ଦିଶିଲାକି ଆଜ
ମୁଁ ତ ଜାଣୁ ନାହିଁ କିଏ ପରାଣେ କହୁଛି
ଯେତେ ଆକଟି ଧଇଲେ (ପୋଡ଼ା) ନୟନ ଧାଇଁଛି ॥

ପଲକ ପାରିଲେ ମୁହିଁ ପୁଲକେ ପରାଣେ ସେହି
ସୋପନ ରାଇଜେ ଦେଖେ ପାଶେ ମୋର ଅଛି ॥

ଜାଗିଉଠି ଉଜାଗରେ ଫେରି ଚାହେଁ ନାହିଁ କରେ
ଅଧୀର ହୃଦୟ କହେ ଭରସା କେ ଅଛି ॥

ଶ୍ରାବଣୀ ଅନ୍ଧାର ରାତି କାନ୍ଦିକାନ୍ଦି ଯାଏ ବିତି
କେତେ ସୁନେଲି ପ୍ରଭାତ ମଣ୍ଡିଲା ପରା ପରାଚି ॥



# ଭଜନ

ପୁରାଣରେ ଥିଲେ ପୂରିବ କାମନା ବିମନ ନୁହନ୍ତୁ ଆଉ
ପୂର ଅଗଣାରୁ ଛାଡ଼ି ମୁଁ ନଯିବି ଭଗାରୀ ମାରିବେ ଦାଉ ।
ପରପଞ୍ଚ ମୋର ପଞ୍ଚେନ୍ଦ୍ରିୟ ଜାଣ ପଚିଶରେ ଦେବ ଘାଣ୍ଟି
ବାଣ୍ଟି ହେବି ପଛେ କି ଥିବ ମୋ' ପାଇଁ କାହାର ଖୋଲିବି ଗଣ୍ଠି ।
ହସ ତୁଲେ କାନ୍ଦ କାନ୍ଦ ତୁଲେ ହସ ଅଛଇ ଜୀବନ ସାରା
ଆଜନ୍ମ ସନ୍ନ୍ୟାସୀ ପାଶେ ଗଲେ ବସି ବତାଇବେ ଖାରା ଖାରା ।
ସାରା ସଂସାରର ଭାରା ଗୁରୁତର ଅଣ୍ଟା ଭିଡ଼ି ଧର କରେ
କଣ୍ଟା ଅଛି ପଥେ ବାଣ୍ଟି ଚାଲ ଚିତ୍ତେ ଦୃଷ୍ଟି ଦେଇ ବାରେ ବାରେ ।
ତେଣ୍ଟା ମୂନ ଫୁଟି ଭେଦ ହେବ ବୁକୁ ହେଉଥିବୁ ହରବର
ଗାର ହେବ ଜାଣ ତୋ'ର ଅପରାଧ ତୋରଣେ ବସିବ ବାର ।
ବାର ଗଣୁଥିଲେ ସାତ ଦିନ ପରେ ହେବ ମୂଳ ବାର ଆସି
ବାର ବାଜି ଗଲେ ସେ ନଆସେ ଆଉ ଏକଇ ବସିବ ହସି ।
ସଂସାର ଜାଲରେ ଅଟେ ଘନ ରନ୍ଧ୍ର ଉଧୁରି ନଯିବେ ମୀନ
କୂଳକୁ ଆସିଲେ ଧରିବ ଧୀବର ଫିଙ୍ଗି ଦେଇ ଏକ ତାନ ।
ନହେବି ଉସ୍ଵଳା ଧରି ଶୁଭବେଳା ସାଦରେ ଯିବି ମୁଁ ପାଶେ
ଲେଖକ ବଚନ କରିଲେ ଲଙ୍ଘନ ଜଳି ଯିବି ଗୁରୁ ତ୍ରାଶେ ॥



୮

# ଛନ୍ଦ

ନିଅତିର ଗତି ସାର
ତୋହ ତାହା ରୀତି ପର
ଆତୁରେ ଡାକିଲେ କିଏରେ ଶୁଣିବ କୁଆର ଉଜାଣି ଧାର ।
ଗାର କାଟିଲେ ସଲିଳେ
ରହି ନପାରେ ନିଶ୍ଚଳେ
କୋଳେ ଧରିଥିବା ଜନକ ଜନନୀ ଲୋଡ଼ିଲେ କିହେବ ବେଳେ ।
ଝୁଲାଇ ଝୁଲାକୁ ଗଲେ
ଡାକିଲେ କୃଷ୍ଣ ନିରୋଳେ
ଧାର ପୋଛି ଦେଇ ନୟନ କୁଞ୍ଜରୁ ଓଟାରି ଧରିବେ କୋଳେ
ଧୀରରେ ଧରିତ୍ରୀ ଜାଣ
ଅଧୀରେ ହେବେ ପାଷାଣ
ରାଣ ପକାଇ ମୁଁ କରୁଛି ଶପଥ ଏକଥା ସତ୍ୟ ପ୍ରାମଣ ।
ସମ୍ଭଳାଇଛନ୍ତି ଚାହିଁ
ସରବ ଜନନୀ ସେହି
ସଇତାନ ଚାପି ମଥାକୁ ଲୋଟାଏ ବେଦନା ଯିବ ଉଭାଇ ।
କେହି ତ ନୁହଁ କାହାର
କାହା ପାଇଁ ଚିନ୍ତା କର
ଯେ ଦିଗେ ଉଇଁଲେ ସେ ଦିଗ ତୋହର ନୁହଁ କେବେ ହରବର ।



# କୀର୍ତ୍ତନ

## (ତାଳ :- ଆଡ଼ ଖେମଟା)

ଶ୍ରୀରାଧା:- ଆମ୍ଭ ଗୋକୁଳ ଚନ୍ଦ୍ରମା ଆସିବେ, ସତେ ଆସିବେ
ଏହି ସଜାଣ କୁଞ୍ଜରେ ବସିବେ, ସତେ ବସିବେ ।
ତୁନି ତୁନି କାନେ କହିଲା ସମୀର
ସଜ ହୁଅ ବ୍ରଜବାଳୀ
ସଙ୍କେତ ଦେଇଣ ପଠାଇଲେ ତାଙ୍କୁ
ଲାଞ୍ଛିତ ପରାଣ ତୋଷିବେ......
ସତେ..... ଆସିବେ......... ॥

ବିଶାଖା:- ବିବୋଧ ହୋଇଣ ଜାଳି ଦୀପାବଳି
କୁଞ୍ଜ ଦ୍ୱାର ଦ୍ୱାରୀ ହୋଇବା
ବିଭୋର ହୋଇ ବିବିଧ ନୃତ୍ୟ କରି
ନାନା ରଙ୍ଗେ ମନ ମୋହିବା
ଦେଖି ହସିବେ.... ॥

ଚିତ୍ରରେଖା:- ମଞ୍ଜୁଳ ମୂରତି ଦେଖି ଆମ୍ଭ ନେତ୍ର
ପବିତ୍ର କରିବା ସହୀ
(ତାଙ୍କୁ) ମଞ୍ଜୁସା ମଧ୍ୟରେ ଲୁଚାଇ ରଖିବା
ମଥୁରାକୁ ଯିବେ କିପରି ?
ଦୂତେ ଫେରିବେ ?
କ୍ରୋଧେ କଂସ ଆଗେ ଯାଇଁ କହିବେ ॥

●●●

# ଭଜନ

ଆହେ କଉସ୍ତୁଭ ମଣିମୟ ହାର
ମୋତେ କରିଛ କରିବ ନିଶ୍ଚେ ପାର
କରପାର ......କରପାର..... କରପାର ।
ତୁମେ ଗଭୀର ଜଳରେ ନକ୍ର
ନାଶି ଅଛ ଦିନେ ପେଶି ଚକ୍ର
ଉଧରିଛ ଶୁଣେ କରି ବର
ବକ୍ର ନୋହିଲା ଡାକଟା ତାର ।
କୁରୁ ସଭାରେ ପାଣ୍ଡବ ଜାୟା
ଶୂନ୍ୟ ନ କରିଛ କେବେ କାୟା
ବାୟା ପରି ହେଲା ଦୁଃଶାସନ
ଛାୟା ରୂପେ କଲ କାରବାର ।
ବନେ ଡାକିଲା କୁରଙ୍ଗୀ ଦିନେ
ଡାକ ଶୁଣି ପେଶି ସୁଦର୍ଶନେ
ବଦଳାଇଲ ସଂକଟ ତାର
ମୋ' ବେଳକୁ ଚକ୍ର ନାହିଁ କର ।

# ଝୁଲଣ ଗୀତ

ଝୁଲରେ ଝୁଲ,
ଝୁଲିବ ତୋ' ସାଥେ ମଧୁ ମାଧବୀ ଫୁଲ
ଗୋଲାପି ଅଧରେ ତୋର ଟହଟହ ହସ
ସଜଳ ନୟନେ ଦେଉ ପରାଣେ ପରାଶ
କେଉଁ ଦିଅଁ କାନନରେ ଫୁଟି ଥିଲୁ ଫୁଲ
ବାବୁ ଝୁଲରେ....... ॥
ଢୁଲୁଢୁଲୁ ନୟନେ ତୋ ପୁଲକେ ପରାଣ
କୁଲୁକୁଲୁ କହୁକଥା କେତେରେ ମୋ' ଧନ
ତାଳି ତାଳି ବନମାଳୀ ହେଉ କେତେ ଗେଲ
ବାବୁ ଝୁଲରେ ଝୁଲ..... ॥



## (କାଶ୍ମୀର ଖେମଟା)

(ମୋର) ବେଦନାର ଅଶ୍ରୁଧାରା
(ବାରେ) ପୋଛି ଦିଅ ପ୍ରିୟ ତୁମେ
ଅନୁସରି ପଥ ରହିଛି ଅନାଇଁ
ଘେନାଇଁ କହି ମରମେ ।
ତୁମ ପଦ ରେଖା ଧୂଳି
ନିରତେ ହୁଏ ମୁଁ ବୋଳି
କଲ କି ମନ୍ତର ପଲକ ମଧ୍ୟରେ
ମଥା ନ ତୋଳଇ ସରମେ ।
ଉଜାଗର ନିଶି ଶଶୀ
ଉଦାସ ହେଲକି ବସି
ଉଣା ସବୁଥିରୁ ବରଜା ଦୁଃଖିନୀ
(ଆଜ) ଗରଜ ତୁଲା ଭରମେ ।

●●●

## (କହରବା)

ସେ ଦିନ ଫଗୁଣ ଝାଉଁଳା ଜହ୍ନେ
କହିଛି ଯେତେ କଥା ନାହିଁକି ମନେ
(ଆଜି) ଦୂର ବିଦେଶୀ ସତେ ହେବ ଉଦାସୀ
ଲିଭାଇ ଅଭୁଲା ଛବି ମନେ ଗୋପନେ ।
ବକୁଳ ଶେଯ ପାତି ଜାଗିଲେ ରାତି
ଅଭଙ୍ଗା ଆଶା ମନେ ବଢ଼ାଏ ଭୀତି
ବେଦନା ଭରା ବୁକେ ଉଛଳା ଗଗନେ
ଝରେ ଲୋତକ ଝରା ମୋ' ନୟନେ ।
ତୋରଣେ ସଜା ସଜ ରଜନୀଗନ୍ଧା
ମଉଳେ ଲାଜେ ଲଭି ପରଶବାଧା
ଝଙ୍କାର ବେଣୁ ସ୍ୱରେ ଉଷାରାଣୀ
ପଲକେ କୁହେ କଥା ସମୀର କାନେ ॥
ଯେବେ ହେବୁଟି ପାର ତରାଇ ନାମ ଧର
ଉଆଁସ ନିଶା ଘୋର କର୍ଣ୍ଣଧାର ସେ ତୋ'ର
ଅଥଳ ନୀରେ ନେବ ସେପାରେ ॥

●●●

(ତାଳ- କହରବା)

ପୂଜିଲି ବୋଲି ମୁଁ ତୋ' ପଦ କୁଞ୍ଜ ଜନନୀ
ବିନିମୟେ ତନୁ ହା ହୁତାସେ ଜାଳି ବିତାଉ ଦିବା ରଜନୀ
ମାରକ ବଇରି ମାରୁ ସାତବାର
ଡରନାହିଁ ମୋହର....
ମା....ଆ......ମା....ଆ.....
ଡାକ ଭରସା କରି ମୁଁ
ବିତାଏ ଏହି ଜୀବନି ।
ନୟନ ନୀରେ ଧୋଇ ପୟର
ଲୋଟାଇ ଦେବି ମୋହରି ଶିର
ଗନ୍ଧ ଝୁଣା ଦୁରୁବା ଦଳେ
ଅରପି ତୁମ ପଦ ଯୁଗଳେ
ଶୁଣିବା ପାଇଁ ତୁମ୍ଭ ସେନେହ ବାଣୀ
ପାତିଛି କାନ ମନ ମନ୍ଦିରେ ଜାଣି
ଗରିବ ବେଦନା ହରିବା ପାଇଁ
କରିଛି କେତେ ମାଗୁଣି ।

●●●

## ଝୁଲଣ

ଝୁଲରେ ଝୁଲ,
ଝୁଲିବ ତୋ' ସାଥେ ମଧୁ ମାଧବୀ ଫୁଲ
ଗୋଲାପି ଅଧରେ ତୋର ଟହଟହ-ହସ
ସଜଳ ନୟନେ ଦେଉ ପରାଣେ ପରାଶ
କେଉଁ ଦିଅଁ କାନନରେ ଫୁଟି ଥିଲୁ ଫୁଲ
ବାବୁ ଝୁଲରେ...... ॥
ଢୁଲୁଢୁଲୁ ନୟନେ ତୋ ପୁଲକେ ପରାଣ
କୁଳୁକୁଳୁ କହୁକଥା କେତେରେ ମୋ' ଧନ
ଚାଳି ଚାଳି ବନମାଳୀ ହେଉ କେତେ ଗେଲ
ବାବୁ ଝୁଲରେ ଝୁଲ..... ॥

●●●

# ଓଡ଼ିଶୀ

## (ପଥଛାଡ଼ି ଦେ ମୁଁ ଯିବି ଫୁଲ ତୋଳି ବୃତ୍ତେ)

ନରମୁଣ୍ଡ ମାଳିନୀ ଆଉଁ ଆଉଁ
ଦଣ୍ଡ ଦେବକି କାଳ ଚାହୁଁ ଚାହୁଁ
ଚରଣ ରେଣୁର କଣିକାଏ ଦାନେ
ସରିବ କି ତୋ'ର ଧନ ବହୁ ।

ଅଗାଧ ସଲିଳେ ପଡ଼ିପଡ଼ି
କଲେ ଯେତେ ତୁମେ ଯାଅ ଛାଡ଼ି
ପେଶିବ କିଏ ବା ତରଣୀ ତରାଇ
ତୋ' ବିନୁ ଭରସା ଅଛି କେହୁ ।

ଲହ ଲହ ଜିହ୍ୱା ଲୋହିତାକ୍ଷୀ
ହେଲି ଲୋକହସା ଯାଅ ଦେଖି
ସାକ୍ଷୀ ଥାଉଁ ତୋ'ର ଧଣ୍ଡା ଉପଚାର
ଭଣ୍ଡା ଭଣ୍ଡି କରି ଭଣ୍ଡି ଦେଉ ।

ଖଣ୍ଡା ଧାରେଣି ଗୋ ଦୁଃଖଧରି
ରହିବି କେମନ୍ତେ ତୋତେ ବରି ।
ଘେରୀଗଲା ଆସି ଘୋର ପାପ ରାଶି
ଘାଉଲା ହୋଇଲି କହୁ କହୁ ।

ଗଣ୍ଡା ଗଣ୍ଡା ମୁଣ୍ଡ ଖଣ୍ଡା ଧାରେ
ଖଣ୍ଡ ଖଣ୍ଡ କଲ ଦଣ୍ଡ କରେ ।
ଛିଣ୍ଡାଇ ଦେଉଛ ମୋର ମାୟା ରଜ୍ଜୁ
କା ପାଶେ ଢାଳିବି ଲୁହ ଲୋହୁ ।

ତ୍ରୀନେତ୍ର ଧାରିଣୀ ହରପ୍ରିୟା
ହର ଏ ଗରିବ ଦୁଃଖ ମାୟା
ସରିବ ଭାରତୀ ଚିନ୍ତା ଭୟଭୀତି
କରମେ ଯା' ଲେଖା ତାହାହେଉ ।

(୧୪/୧୧/୧୯୭୭)

●●●

## ଭଜନ-୧

କିଶୋର ହେ, ସରି ଯିବନି କିଶୋରୀ
ଧରି ରଖିବାକୁ ହେଲୁ ଅପାରଗ ଧାଇଁଛୁ ପାଶ ତୁମ୍ଭରି ।
ଗରଗର ହୋଇ ବାଣୀ ଭଣୁଥାଏ ଧରଣୀରେ ଗଡ଼ି ଗଡ଼ି
ଗରିଆ ଗତି କି ହେଲା ତାହାର ତୁମେ ଜାଣ ବଂଶୀଧାରୀ ।
ଶାଣିତ କୃପାଣ ଲୋଡ଼େ ଅନୁକ୍ଷଣ ପଣ ରଖିବାକୁ ତାରି
ତା' କରେ ଧରାଇ ଦେଲେ ତତ୍‌ପର ଦେବ ଜୀବନ ହରାଇ ।
ତୁମ ଯିବା ଯାଏଁ ଧରି ରଖିବାକୁ ଲାଗିଛନ୍ତି ପରିଚାରୀ
କି ହେଲ କି ଜାଣି ନପାରୁଛୁ କହି କଥନି ହୋଇଛି ଭରି ।
ଗତନିଶି ମଧ୍ୟେ ବେଣୁ ବାହି ରାଧେ ବୋଲି କରୁଥିଲ ହୁରି
ଆସନ୍ତେ ବାହାରି କୁଟିଳା ଆକଟେ ପଡ଼ିହେଲା ଏତେ ସରି ।
ହେଳା କଲେ ଆମ୍ଭ ଭେଳା ବୁଡ଼ିଯିବ ନରହିବ ସହଚରୀ
ସେ ଭୀତି ଭାରତୀ ଭାରାକ୍ରାନ୍ତ ମତି ଚିନ୍ତାରେ ଯାଉଛି ହାରି ।

●●●

## ଭଜନ-୨

ଅନାଦି ଅନନ୍ତ ଜନାର୍ଦ୍ଦନ ହେ...
ଭଜମନ ସନାତନ ଅପାର ଦୁଃଖ ଭଞ୍ଜନ
ଘନ ବରନ ମୋହନ ଦର୍ପୀ ଗରବ ଗଞ୍ଜନ
ପତିତପାବନ ଶ୍ୟାମଘନ ହେ... ।
ଗୋପାଳ ବାଳକ ମନ ଗୋପୀଜନ ପ୍ରାଣ ଧନ
ଯଶୋଦା ନେତ୍ର ଅଞ୍ଜନ ଯୋଗୀ ଜ୍ଞାନ ଧ୍ୟାନ
ବୃନ୍ଦାବନ ଚନ୍ଦ୍ର ଶ୍ରୀ ମୋହନ ହେ.... ।
କେଶୀ କଂସ ନିସୂଦନ ଯାମାଳାର୍ଜ୍ଜୁନଭଞ୍ଜନ
ଇନ୍ଦ୍ର ଗରବ ଗଞ୍ଜନ ଗିରିଧାରୀ ଗୋବର୍ଦ୍ଧନ
ଶ୍ୟାମଘନ ମିନତିକୁ ଘେନ ହେ.... ।

●●●

## ଭଜନ

ବଇଁଶୀକୁ କିଏରେ ଦେଲା
ବାଙ୍କ ଚାହାଣି କିଏ ଶିଖାଇଲା
ବଙ୍କା ମୂରତିକୁ ମାନୁଛି ଭଲା
 ନାଗର ବର ରମଣୀ ରଙ୍କା ।
ରଙ୍ଗ ଧୂଳି ପିଚକାରୀକୁ ମାରି
ରଙ୍ଗାଧର ରଙ୍ଗେ ଖେଳନ୍ତି ହୋରି
ଆଲଟ ଚାମର ସଖିଏ ଧରି
ବିଞ୍ଚଣାରେ ବିଞ୍ଚି ପୋଛନ୍ତି ବାରି
 ସେବନ୍ତି ପଦେ ହୋଇ ସେବିକା ।
ବିମାନ ମଣ୍ଡଣି ଦିଶୁଛି ତୋରା
ସୁନେଲି ଆକାଶେ ରୂପେଲି ତାରା
କଳସ ନିକଟେ ଚଢ଼େଇ ପାରା
ଜରୀ କାମ କମ ମୁକୁତା ଝରା
 ଭାରତୀ କେତେ ସହିବ ଧକା । (୯ / ୩ /୧୯୭୪)

## ଓଡ଼ିଶୀ

### (କି ଦେଖିଲା ଆଜ ନେତ୍ର- ବୃତ୍ତେ)

(ସଙ୍ଗୀତ) ସଂସାରୁ ମୁଁ ଗଲି ସରି.....
ଶୁଣିଲେ ଏବାଣୀ କ୍ରୂର କଂସାସୁର ପେଶି ଚାରନେବ ଧରି
ଗୁପତେ ଗୁପତେ ଗତି କଲେ ପଥେ ଯମୁନାକୁ ନୀର ଆଣି
ବଂଶୀ କରେ ଧରି ଆଗରେ ଆବୋରି କୁଞ୍ଜବନେ ନେଲା ଘେରି
ତା'ପରେ ଯା' ହେଲା କହିବାକୁ ଲାଜ ସହିଲି ପାଷାଣ ପରି
ଦୂଷଣ ହେଉଛି ଏ ବ୍ରଜ ବଜାରେ ନପାରୁଛି ଧୈର୍ଯ୍ୟ ଧରି ।
ଦେଲା ଯେ ସଂକେତ ଅଧରେ ଅଧର ମିଳନର ସୁଖଶିରୀ
କାପାଶେ କହିବି ସଜନୀ ତୋ' ବିନା ଲାଜେ ମୁଁ ଯାଉଛି ହାରି ।
ଉର ଉତ୍ତରୀକୁ ଧରି ନ ଛାଡ଼ିଲେ ଛାଡ଼ି ମୁଁ ଅଇଲି ଚାଲି
ଶିରେ ବାନ୍ଧି କରି ମୋର ନାମଧରୀ ବଂଶୀରେ କରନ୍ତି ହୁରି
ଜୁହାର ଶ୍ୟାମଙ୍କୁ ଦୂରୁ ଭାରତୀର ନେଲି ସେ ବେଦନା ବରି
ଘେରି ଯେତେ ଯାହା ବୋଲନ୍ତୁ କଳଙ୍କ ଦାୟୀ ସେହି ବଂଶୀଧାରୀ ।
(୧୪ / ୧୧/ ୧୯୭୪)

●●●

# ଭଜନ

ଦୟା ମୟ ହେ ଦଇତାରି
ଦରିଆ ମଝିରେ ଭାଷି ଯାଉଅଛି ଦାୟୀ ରକ୍ଷଣ ତୁମରି ।
ଦୋବୋଲା ହୋଇଲି ତୋର ଦରବାରେ ଦିକ୍କୂଳ ବର୍ଜନ କରି
ଦମ୍ଭ କେବା ଦେବ ଦେବା ବ୍ୟକ୍ତି ତୁମ୍ଭ ବିନୁ ଅନ୍ୟ କାରେ ଧରି ।
ଦୋଘା, ପଘା, ଅଗା, ବଗା, ଖଗା ଧରି, ଦଗା ଦେଉଛନ୍ତି ଘେରି
ଦୋଳନ୍ତି ମୋ ଗଳେ ଡାକୁଛି ବିକଳେ ଶୁଣଏ ଦୀନ ଗୁହାରି ।
ଦୀନବନ୍ଧୁ ନାମ ଧରି ଅଛ ତୁମ୍ଭେ ଦୀନକୁ ଉଦ୍ଧାର କରି
ଦିନ ବିତି ଯାଏ ଡାକି ଡାକି ଆଜି ଦାରୁଣ ଦୁଃଖକୁ ବରି ।
ଦାରୁ ଦୂର୍ବାଦଳ ଓଲଟ ପାଲଟ କରୁଛ କେତେ ବେକାରୀ
ଦ୍ୱାର ଦ୍ୱାର ବୁଲି କେତେ ମାଗୁଥାନ୍ତି ମୋ ବେଳକୁ ଗଲା ସରି ।
ଦେବା ନେବା ପଣ ଜଣାଗଲା ଜାଣ ଦୂରୁ ଜୁହାର ମୋହରି
ଦେବ ଯଦି ଦିଅ ନହୋଇ ନିର୍ଦ୍ଦୟ କିଶୋର କରେ ଗୁହାରୀ ।

# ଝୁଲଣ

ରାଧା ମାଧବ ହେ, ବାଧା ନ ଦିଅ ରାଧା ପ୍ରାଣେ ଏଣିକି
ବହୁ ଦିନ ଆଶା ଭରସା ପାଇଛୁ ଭୁଲାମନେ ନ ଭୁଲିବ କି ?
ଦେଖୁଅଛୁ ଆମ୍ଭେ ମଧୁର ମିଳନ ଯୁଗଳ ମୂରତୀ ଭଙ୍ଗୀ
କି ଶୁଭ ଲଗନେ ପାଇଥିଲା ନିଶି ଧନ୍ୟ ହେଲୁ ଆମ୍ଭେ ଦେଖି
ଝୁଲାଇ ଦେଉଛୁ ବିଦାୟ ଦୋଳିକୁ ଝୁଲା ଶିକୁଳିକୁ ତୋଳି
ଫୁଲାଣିଆ ମନ ଭୁଲାଇ ନଦିଅ ଆମ୍ଭର ଏତିକି ଅଳି
ବେଣୁ ଛୁଇଁ ତୁମେ ନିଅମ କରନି ବାହୁଡ଼ି ଆସିବ କି
ଦିନ ଗଣୁଥିବୁ ହୀନମାନୀ ଆମ୍ଭେ ସେ କଥା ମନୁ ଯିବ କି ।
ରାଣ ପକାଇଣ ପଣ କରୁଅଛୁ ତୋରଣେ ଏ ଶିର ରଖି
କରୁଣ କ୍ରନ୍ଦନ ଶୁଣୁଥିବ କର୍ଣ୍ଣ, ଜୀବ ଯିବ ଡାକି ଡାକି ।
ବନ୍ଧା ହେଲୁ ଆମ୍ଭେ ଛନ୍ଦା ଚରଣରେ ଧନ୍ଦା ସରବ ବରଜି
କନ୍ଦାଇବ ଯଦି ଭାରତୀ ପରାଣ ଦିନ ଜୀବ କାନ୍ଦି କାନ୍ଦି ॥

(୨୭/ ୮/ ୮୫)

●●●

## ଓଡ଼ିଶୀ

ତୋହରି ନା.......ବାଜିଲାଣି ବାଜିବ
ବାଜିଲେ ବଂଶୀ ସ୍ୱନ ହେଉ କିମ୍ୱା ଛନଛନ.. ||
ଦାଣ୍ଡେ ଗଲେ ତୁ ପରା- ଅପବାଦ ନାଗରା- ତୋର
କିମନ୍ତ ଧୂଳିବୋଲେ କଳା ଶୂନ୍ୟ
ନୀପ ମୂଳେ ନଟବର କାନ୍ତି ଦେଖି ତରତର
କୁମ୍ଭ ଉରେ ନ ରଖୁଛୁ ତୋ' ବସନା
ତୁ ପରା କହ୍ନାଇଁ ମାଇଁ
ଏ ବାଜା କାନେ କିପାଇଁ
ବ୍ରଜପୁର ନିନ୍ଦା ବାଣୀ ତୁ ରଟନା
ତା'ର ନାମ ହୃଦେ ସ୍ଥାନ ନ ଦିଅ ରମାରତନ
ଲମ୍ପଟ ଆସିଲେ ବର ତାଙ୍କୁ ଦ୍ୱାର ମନା ||

•••

## ତାଳ:- କହରବା- ଭାଟିଆଲି

କୋଇଲି ପଞ୍ଚମ ତାନେ ଗାଆ
ମୋହୁଲ କାନନୁ ମଧୁ ଖାଆ
ଗୋପନେ ଆସି ମନ୍ଦ ବାଣସି ଅପଟି ଫୁଲାଇ ଯାଆ |
ଫଗୁଆ ବାଦଲ ଦକ୍ଷିଣା ସମୀରେ ଭଷାଇ ନେଉଛିଲା
ମଦିର ଖେଳରେ ମଧୁକରଟା ତୁ ମଧୁକୋଷ ଛାଡ଼ି ଯା ||୧||

ପରାଚୀ ଗଗନୁ ପ୍ରଭାତୀ ତାରାଟା ମଥା ପରେ ହେଲା ଫିକା
ପାରିଆ ଭାଇରେ ତରାଇକି ଡାକି ପଇଲି ଭରାରେ ଯା ||୨||

ଫୁଲରାଣୀ ଅଙ୍ଗେ ଅଙ୍ଗେ ପ୍ରଜାପତି ଆଲଟ ପକାଉ ଥା
ଫୋଉଜ ଆସିଲେ ଫରଫର ହୋଇ ଅନ୍ତରାଳେ ଲୁଚି ଯା ||୩||

•••

## ❁ ଭଜନ ❁

(ମନ) ମନ୍ଦିର ଚକାଆଖି ଦେଖି
ଅରୁଣ ସ୍ତମ୍ଭ ନିକଟୁ ପକ୍ଷୀରାଜ ରଖି ସାକ୍ଷୀ
(ଯା'ର) ଗଳେ କଉସ୍ତୁବ ମାଳା
ବନମାଳା କଟୀ ଲୋଳା
(ତା'ର) ପାଗୁଣେ ପଣନ୍ତ ଢଙ୍କା ବନ ହଳଦିଆ ମୁଖି ।
ଦକ୍ଷିଣେ ଗୋରା ବଦନ
ତୋରାରେ ଖଟା ନୟନ
(ସେଠି) ପରଛା ପରଚ ହୁଏ ଅପେକ୍ଷାରେ ଥାଇ ଟାକି ।
କୈବଲ୍ୟ ହାଟ ଚହଳ
ବହୁଳେ ପୂରେ ଦେଉଳ
(ମୋର) ଛନଛନ ହୁଏ ମନ ଶାକର ଦ୍ୟନ୍ତି କି ଚାଖି ॥

## -: ଭଜନ :-

(ତା'ର) ଝଟଝଟ ନେତ୍ରେ ଅଟକେ ମୋ' ପରାଣ
କିଏରେ ସେ ବାଟୋଇ
ବେ .... ଦନା.... ଦେଲା ।
ଅଝଟ ଲଗାଇ ହଟ ସାଜି ଘାଟେ
ଭରାଘଟ ମୋର ଚହଲାଇ.... ଦେ...ଲା ॥(ପଦ)
ଖୁଣ୍ଟା ଚୁତ ପରେ ବସି....
କୋଇଲିଟା ମନ କଷି......
ଥଟାରେ ଥଟାରେ ଝିମିଟ ମାତ୍ରକେ
ଅଠା ଲଗା ମନ୍ଦିର ଫଟାଇ ଦେ...ଲା ॥
ଲଟା, ପଟା, ମଧୁଲୀଟ....
କରି ଦେଇ ଛଟପଟ......
ବାଟବଣା କରେ ତଟିନୀ ତଟରେ
ଏତେ ନାଟ କୂଟ କିଏ ସେ ଭେଇ...ଲା ॥

●●●

## ତାଳ:- କାଶ୍ମୀର ଖେମଟା

ଆରେ  ବାଟୋଇ.......

(କିମ୍ବା) ଅବାଟକୁ ବାଟ ସାଜୁ

ଜନନୀ ଜଠେ କେତେ ଆକଟେ

ଚେତାଇ ଥିଲ ଥାଇ ଆକଟେ

(ଆଜି) ପାଟକ ଘରେ ଜୁଟକ ସଜା

ଯୁବତୀ ଫାନ୍ଦେ ମଜୁ ॥

ନାହିଁରେ କେହି ସଂସାରେ ତୋର

ଶୁଣିବ ଦୁଃଖ ହୋଇ ନିଜର

ତୁଚ୍ଛା ମରୀଚିକା ଧାରେ

ରସନା ଚଳା ଅଧିରେ

ପାଇବୁ କାହୁ ପନିର ଢେଉ ମିଛେ ମିଛେ ଦମ୍ଭ ଭାଜୁ ॥

ଉଆଁସ ନିଶି ନିଛାଟେ ଏକା

ନଥିବେ କେହି ହୋଇବୁ ବକା

ଦୀପାଳି ଆଭା ନଥିବ ଧାର

କପାଳେ ମାରିବୁ କର

ଯଦି ହେବୁ ତୁ ପାର

ଅଦେଖା ପ୍ରିୟଙ୍କୁ ଧର

ସେ ହରି ତୋର କର୍ଣ୍ଣଧାର ଆବାହନେ କୁହ ବିରାଜୁ ॥

(ଜାତୀୟ ସଂଗୀତ- ଖେମଟା, ମାତ୍ରା-୬, ତାଳ)

ଚଷା ଯନ୍ତାରେ ମୂଷାଟି ପଶିଲା
ଖୁସା କାଟି ନପାରିବେ ଆଉ
(ଆମ୍ଭ) ବଡ଼ ନେତା କଥାଟା ପାଷାଣ
ନଟଳିଲା ଟାଉଁ ଟାଉଁ ।
ଆମ୍ଭ ହୁକୁମୁରେ ଗୁଳିଟି ଫୁଟିବ
କଟିବ ଅରାତି ଶିର....
(ଆଗୁ) ଗାନ୍ଧୀ ବୁଢ଼ା କଥା ଗନ୍ଧାଉ ଥିଲା କି ?
(ମିଛେ) ଲାଠି ମାଡ଼େ ନେଲ ଦାଉ ।
ବାଘ ପୋଷିବାକୁ ଶାଗ ପରି ମଲୁ
ପେଟେ ଓଦାକନା ଦେଇ....
(ପୁଣି) ଥାଟରେ ପୂରାଇ କଟାଇଲ ମଥା
ମନ ପାଲଟିବ କାଉଁ......
ନେହୁରୁଙ୍କୁ ତୁମେ ନେହୁରା ହୋଇଣ
ଗୁହାରୀ କରୁଥା ଯେତେ....
ତେଣେ ସୁବାସ ସୁବାସେ ଚମକାଇ ଦେବେ
ନ ଚଳିବ ସେଠି ପାଉଁ.....
ଆମ୍ଭ ଭାଇ ଭାଇ ମଧ୍ୟେ ବାଇ କରାଇଛ
ନେବ ବୋଲି ମାରି ପାହି
ପଡ଼ିଶା ପୀଡ଼ାରେ ମତାଇ ଯାଉଛ
ପାଲଟି ଡାମରା କାଉ ।
କହୁଛି ସମୀର ନୋହିବ ସେ କଥା;
ମିଶାଣି ହୋଇବ ଦିନେ ?
(ତୁମ) ବିଭକ୍ତ ଚିହ୍ନକୁ କସଟିରେ କଷି
ଫିଙ୍ଗି ଦେବୁ ଭେଦି ଢେଉ ।

(୧୫/୮/୧୯୪୭)

●●●

(ମାତ୍ରା ଖେମଟା)

ପୂଜା କରିବାକୁ ଆଜି- ଉଜାଗରେ ଅଛି ବସି
ସଜାଏ ଅରଘ ଥାଳୀ ଚେତାଏ ଦିପାଳି ରାଶି.... ।
ଗଲା ପଥ ଅନୁସରି
ନୟନୁ ବୁହାଏ ବାରି
ପଲକ ପାତିଲା ବେଳେ (ଖାଲି) କୁହୁକେ ଯାଉଛି ଭାସି ।
ଚେତାଏ ମନରେ ମୋର
ଝଙ୍କାର ବୀଣାର ତା'ର
ଭଗାରି ଶାୟକ ମାରି କେତେ ଗୀତି ଗଲା ଭାଷି ।
ଆସନ୍ତେକି ଚିରସାଥୀ
ବନ୍ଦାନ୍ତି କରି ଆରତୀ
ପୟରେ ପନିର୍ ଢାଳି ପଣନ୍ତେ ପୋଛନ୍ତା ଦାସୀ ।
ମରମେ ମରମେ ମୋର
ଆଙ୍କି ଯାଏ ବାରଂବାର
ମରମେ ନଯା ଆଉ ସଦା ହୋଇ ପରବାସୀ ।

(୨୬ / ୦୬/ ୪୭)

•••

ତୁମ୍ଭରି ସ୍ୱରେ, ତୁମ୍ଭରି କରେ....
ବାଉ ଏ ମୋହନ ବୀଣା......
ତୁମ୍ଭରି କରେ ମଧୁର ସ୍ୱରେ
ବାଉ ସେ ଗୁପ୍ତ ବୀଜଣା...... ।
ଆସିଲ ନାହିଁ ବନ୍ଧୁ ଅଭାଗୀବତୀ
ତୁମରି ଲାଗି ହିଆ ହୁଏ କରତି,
ମଦନ ସିନ୍ଧୁ.... ମୋ' ପ୍ରାଣ ବନ୍ଧୁ ପ୍ରିୟ
ମୁଁ ତୁମ କିଣା...... ।
ତୁମରି ରୂପ ମୋର ନୟନେ ଖେଳେ,
ସତେକି ବନ୍ଧୁ ରୂପ ଦେଖିବି ଡୋଳେ
ମୋ' ମନ ଯାହା.... ହେବକି ତାହା
କଲେ କରୁଣା.... ।

•••

## ।। ଭଜନ ।।

ମଶାଣିର ବୁକୁ ତଳେ
ମରଣ ଡାକୁଛିରେ....
ଲିଭିଛି ଜୀବ ଦୀପ
ନୟନ ନିଧିଟିରେ
ନୟନର ଧାରେ ଧାରେ
ଅନ୍ତର ଗୁଞ୍ଜରୀ ମରେ
ଫେରିବ ନାଥ ସେ କେଭେ
ଭୁଲିଛି ପଥଟିରେ ।
ନିତିନିତି ଏହିପରି
ଯାଉଛନ୍ତି ଅପଶରି
ଜନମିଲେ ପରିଣାମ
ଏହି ତ ବିଧିଟିରେ ।

•••

## ।। ଭଜନ ।।

(ଏକତାଲା)ବାରମାତ୍ରା

ଲୁଚି ଲୁଚି ଦିନେ ଫୁଟିଲୁରେ ଫୁଲ
ଶୁଣାଇଁ ଦେଲୁ କାନେ ମରମ କଥା....
ପରାଣ ଚେତାଇ ମୋର ତନ୍ଦ୍ରା ନିଦା ଭାଙ୍ଗି
କିମ୍ବା ତୁ ପରବାସୀ ଦେଉଛୁ ବ୍ୟଥା ।
ଅତୀତ ଫଗୁଆ ଝାଉଁଳା ଜହ୍ନେ
ଅଧର ପରଷ ନାହିଁକି ମନେ
(ତାହା) ଗଲାକି ପାଶୋରି
କଳ କଣ୍ଠ ସାକ୍ଷୀ ମୋହରି
ବେଦନା, ଭରା, ପରାଣେ, ନ ଜଳା ଚିତା ।
(୧୦/ ୮/ ୧୯୪୭)

•••

# ରଜ ଗୀତ

ରଜ ରଜନୀରେ ଶେଷ ଯାମିନୀରେ ଫାଳି ହସ ଦେଖି ଚାନ୍ଦେ
କାନ୍ଦେ ବିରହିଣୀ ଦୋଳି ପରେ ବସି ଦୋଳି ଗୀତେ ନାନା ଛନ୍ଦେ ।
ନ ପଡ଼େକି ? ମୁହିଁ ତାଙ୍କ ମନେ କେବେ ସମୀର ଦିଅ ବାରତା
ଉପଚାର ଦେବା ସୂଚାର ନୋହିଲା ଅନ୍ୟାଚାରେ ଜଳେ ଚିତା ।
କଥା ପଦକରୁ କଟିଗଲି ମୁହିଁ ବଚନ ନୋହିଲା ସିଦ୍ଧ
ବ୍ୟଥା ଦେଇ ପ୍ରାଣେ ଶାଣିତ କୃପାଣ ନିକ୍ଷେପିଲେ କରି ଭେଦ ।
ଅର୍ଦ୍ଧାଙ୍ଗିନୀ ବୋଲି ଯିଏଟି କହିବ ଭଗାରୀ ହୋଇଲା ସେଇ
ବଘାରୀ ଦେବଇଁ ଗୋଇ ପୁରାଣ ତା ମହତ ନ ରଖି ମୁହିଁ ।

●●●

## ।। ଗୀତ ।।

ଚାଲରେ ଆଗେ ବଢ଼ି ଚାଲ
ଛାଡ଼ି କର ପଥର ତୁ ନହୁଅ ବେହୋଲ୍
ମୁଣ୍ଡ ଝାଳ ତୁଣ୍ଡରେ ମାରି
ଖାଟୁ ତୁ ମୂଲିଆ
ଅରଜନ ଖାଏ ତା'ର
ସେଠ ଗଉଁତିଆ
ତୋର ନାହିଁ ପିନ୍ଧେ
ସୋସାଲ, ଦୋସାଲ
ଶରଗେ ସହିବେ କାହିଁ ଦେବ ଭଗବାନ
ଚାଷୀ ମୂଲିଆର ଡାକେ ଥରିଛି ଆସନ
ଆସି ତୋ' ବିନା ଫେରି, ଜଳୁଛି ମଶାଲ
ଆଗେ ବଢ଼ିଚାଲ୍ ।

●●●

## ॥ ବସନ୍ତ-୧ ॥

ଫଗୁ ଅବିର ରଂଗରେ ବୋଳି ହୋଇଲେ
ଶ୍ରୀରାଧା ଶ୍ରୀକୃଷ୍ଣ ସ୍ଥାପି ବିମାନ ମଧ୍ୟରେ ।
ପହଣ୍ଡି ହୋରି ଖେଳନ୍ତି ଅତି ପ୍ରେମଭରେ
ସେ ଉପମା ଲେଖିବାକୁ ଲେଖକଟି ଡରେ ।
ପଲ୍ଲବିତ ବୃକ୍ଷ ଲତା ଅତି ମନୋହର
ଯେଣିକି ଚାହିଁଲେ ହୁଏ ନୟନ ଗୋଚର ।
କାମିନୀ, ନିଆଳି, ମଧୁମାଳିତୀ, ଚମ୍ପକ
ଜାଇ, ଯୂଇ, କନିଅର, କେତକୀ, ଅଶୋକ ।
ନାଗେଶ୍ୱର, ଛୁରିଆନା, ଗୋଲାପ, ବକୁଳ
ଫୁଟିବାରୁ ଉପବନ ଦିଶଇ ମଞ୍ଜୁଳ ।
ବରକୋଳି ଫଳ ଭରେ ହୋଇ ଅବନତ
ଭୁଲାଉଛି ନାନା ରଙ୍ଗେ ବାଳକଙ୍କ ଚିତ୍ତ ।
ବସନ୍ତ ପଞ୍ଚମୀ ପୁଣି ଅଟଇଟି ଭଲ
ଅନ୍ୟାନ୍ୟ ପଞ୍ଚମୀ ଜାଣ ନୁହେଁ ଏହା ତୁଲ୍ୟ ।
ବାଣାପାଣୀ ପାଠାଗାରେ ପୂଜି ଅବଧାନେ
ପିଲାଙ୍କୁ ନମ୍ର ଶିଖାନ୍ତି ତାଙ୍କ ସିନ୍ନଧାନେ ।
ପଞ୍ଚମୀ ବାସିରେ ପ୍ରେମ ଭରେ ଛାତ୍ରମାନେ
ଭିକ୍ଷା ମାଗି ଆଣି ଦ୍ୟନ୍ତି ଗୁରୁ ସନ୍ନିଧାନେ ।
ଗୁରୁବର ଦ୍ୟନ୍ତି ଜାଣି ପ୍ରେମ ହୋଇ ଛାତ୍ରେ
ଆନନ୍ଦେ ବୁଲାନ୍ତି ହସ୍ତ ତାହାଙ୍କର ଗାତ୍ରେ ।
ନିର୍ଝରିଣୀ ଜଳ ଦେଖ ମନ ହୁଏ ଲୋଭା
ବଡ଼ଇ ନିର୍ମଳ ଦିଶୁଥାଏ ତା'ର ଆଭା ।
ହୀରା ମୁକୁତାର ରଙ୍ଗ ପରି ତା'ର ରଙ୍ଗ
ଭାବୁକ ଦେଖି ନୟନେ ଦେଖାଏ ତା ସଙ୍ଗ ।
ଜଳକ୍ରୀଡ଼ା କରିବାକୁ ମନ ହୁଏ ଲୋଭ
ଯୁବକେ ଯୁଥ ସଜାଡ଼ି ଖାଡ଼ା ନାବ ମଙ୍ଗ ।

ଲୁଗା ଭିଡ଼ି ପ୍ରେମଭରେ କୁଦନ୍ତି ସଲିଳେ
ସନ୍ତରଣ କରିଫେରି ପଡ଼ି ନଦୀ କୂଳେ ।
ପ୍ରଥମେ ଯେ ତଟ ଧରେ ପାଏ ପାହି ମାରି
ଦେଖ ମୋର ନେଲି ପାହି ଛାଡୁଥାଏ ହୁରି ।
ତାଳିମାରି କହେ ଦେଖ ବୋଝ ଦେଲି ସର୍ବେ
ଅତିପ୍ରେମେ ମତ୍ତ ହୋଇ ଶିର ଲାଗେ ଗର୍ବେ ।
ଗୋପାଳ ବାଳକେ ଗୋରୁ ସନ୍ତରି ସଲିଳେ
ଲାଞ୍ଜଧରି କିପରି ଏ କୂଳେ ସେ କୂଳେ ।

●●●

## ।। ବସନ୍ତ-୨ ।।

### ବସନ୍ତ, ରାଗ-କଲ୍ୟାଣୀ, ତାଳ-ରୂପକ

ଶୀତ ଯାଇ ବସନ୍ତଟି ହେଲା ଉପ୍ତିତ
ଲେଖକ ଲେଖିଲେ ପୁଣି ବିରହ ସଙ୍ଗୀତ ।।
ମଧୁପ ଝଙ୍କାର ନାଦେ ନାନା ଫୁଲେ ବସେ
ନାନା ଫୁଲେ ବସି ମଧୁ ଚୁମ୍ବଇ ହରଷେ ।
ଆଲଟେ ବିଞ୍ଚଇ ପ୍ରଜାପତି ତା'ର ଅଙ୍ଗେ
ଆଲଟଟି ଝୁରେ ଭୀତ କରି ନାନା ରଙ୍ଗେ ।
କୋଇଲି ପଞ୍ଚମ ତାନେ କରଇ ସଙ୍ଗୀତ
ବିରହୀ ନାରୀର ପ୍ରାଣ ହୁଏ ହନ୍ତସନ୍ତ ।
କୁରଙ୍ଗ କୁଳ କାନନୁ କୁହୁ ନାଦ ଶୁଣି
ଆକୁଳ ହୋଇ ଧାବନ୍ତି ନିଜକୁ ନଜାଣି ।
କରି ଯୁଥ ପେନ୍ଥେ ପେନ୍ଥେ ଶୁଣ୍ଢ ଟେକି ଉର୍ଦ୍ଧେ
ଶଙ୍ଖ ଧ୍ୱନି କରୁଥାନ୍ତି ଆନନ୍ଦେ ଗରବେ ।
ପିନ୍ଧି ଶାଢ଼ି ହଳଦିଆ ହଳଦିବସନ୍ତ
କରୁଥାଏ ଚୁତ ଡାଳେ ଆନନ୍ଦରେ ନୃତ୍ୟ ।
ପାରାଟି ପିଟଇ ମୁଣ୍ଡ ଘୁମୁରାଇ ବେକ
ପଡ଼ିଶାଙ୍କ ଆଗେ ପୁଣି ଦେଖାଏ ତା' ଟେକ ।

●●●

# ସରସ୍ୱତୀ ବନ୍ଦନା

ବ୍ରହ୍ମ ବାଦିନୀ ଜନନୀ ଆର୍ତ୍ତ ହୁଏ ହୀନମାନି
ବସନ୍ତ ପଞ୍ଚମୀ ଆଜି ଶେଷ ଦୟିନୀ ।
କେତେ ଅତୀତ ସନ୍ତାନ ରଖି ତାହାଙ୍କ ସମ୍ମାନ
ଅଗ୍ର ତଳେ ଖେଳାଇଲୁ ହୋଇ ପ୍ରସନ୍ନ ।
ମୋ' ବେଳକୁ ଯାଉଛି ଶୁଖି
ଡାକ ନ ଶୁଣିଲେ ନାଶ ଯିବ ସେ ଦୁଃଖୀ
ନୟନ, ଦୀପାଳି, ଜାଳି କେତେ ନିଶି ଭାଳି ଭାଳି,
କାନ୍ଦି ପକାଏ ଆନନ ଶୁଭେ ବୋବାଳି
ବଳି ହୁଏ ଶ୍ରୀଚରଣେ ଲୋତକ ଉଗ୍ର ନୟନେ,
କେତେ ସୁନେଲି ପ୍ରଭାତ ଗୁହେ ମଉନେ ।
ଦୀପିକାରେ ଜଣାଇଁ ଦେବି......
ଦରବାର କାହିଁ ଅବା ବିଗ୍ରହୀ ହେବି
ତଟ ନପାଇ ହତାସେ ଯାଏଁ ଭାସି ଖରସ୍ରୋତେ,
ଭଉଁରୀ ମଧ୍ୟେ ପଡ଼ିଣ ଡାକେ ଆରତେ
ନଶୁଣିଲେ ମୋ' ଗୁହାରୀ ହୁରି ଛାଡ଼ିବି
ସେପାରି ତୋ' ଗେହ୍ଲା ସନ୍ତାନେ ଶୁଣି ନିନ୍ଦା କରିବେ ।
ଅପଯଶ ବାନା ଉଡ଼ିବ
ଆକୁଳରେ କେବା ଡାକିବ
ଉତକ୍ରମ ହୋଇବ ଆସ କାଳ ଯାଉଅଛି ଗ୍ରାସି,
ଉତମାଙ୍ଗ ଘୁମିଯାଏ ମୋ ପାପଗ୍ରାସି
ଶିଶିର କିରଣେ ମିଶି ଯେହ୍ନେ ନିର୍ମଳତା ଦିଶି
ସମ୍ବଳ କରାଅ ଏବେ ତୋ'ର ସନ୍ତାନେ
ମନୋରମା ଭକତି ଭରେ,
ଅଧମ ଅକ୍ଷମ ସୁତ ତୋ ଚରଣରେ ।
(୨୭/୦୧/୪୭, ବାଗ୍‌ଦେବୀ ପୂଜା ଉପଲକ୍ଷେ)

●●●

# ଖେମଟା

(ତୁମେ) ବଡ଼ ଦାରୁଣ ହୋ ! (ଜଗବନ୍ଧୁ ଜଗନ୍ନାଥ)
ଦରିଆ କୂଳରେ ରହି ମରୁଅଛି ଥରି ଥରି ପାଶେ ବଢ଼ାଏ ହାତ ।
ପଶି ଦେଉଛେ ଶ୍ରୀନୀଳକନ୍ଦରେ, ଗେହ୍ଲା ପୁଅଙ୍କୁ କରୁଛ ଆଦର
ପାଟକହୀନ ମୁଁ ନକରେ ପ୍ରବେଶ (ତୁମ୍ଭ) ଦର୍ଶନ ଲାଗି ଫାଟୁଛି ମାଥ ହେ ।
ଅପକୃଷ୍ଟ ବୋଲି କରୁଥାନ୍ତି ଘୃଣା କପଟୀ ପକାନ୍ତି ତୁମ ସାମନା ।
(ମୋର) ଛାଇ ପଡ଼ିଗଲେ (ତାଙ୍କ) ନାହି ଡେଉଁଥାଏ
ମାରୁ ହେଲା ବୋଲି ହୋନ୍ତ ଚିନ୍ତିତ ହେ ।
ଯେବେ ମିଳେ ଅପମାନ (ତୁମ) ଦରଶନ ଲାଗି ମଣେ ଚନ୍ଦନ
ସୁନ୍ଦର ହେଉଛି ବସି ଦେଖୁଅଛି; ବିଚାରରେ ହୁଅ ଅପକ୍ଷପାତ ହେ ।
ଏକ ପିତାଠାରୁ ଅଶେଷ ସନ୍ତାନ ଉଚ୍ଚ ନିଚ୍ଚ ଭାବ ଅଇଲା କାହୁଁ
ମୁଁ ଝାଉଁ ଗଛ ମୂଳେ ଢାଉଁ ହୋଇ ବସି ସାକ୍ଷୀ ରଖୁ ଅଛି ତୁମରି ନେତ ହେ ।
ବହୁ ଦୂରୁ ଆଶା ଆସିଥିଲି ପୋଷି ନିରାସ ସାଗରେ ଯାଉଛି ଭାଷି ।
ଦେଖ ବିମଳ ଦୃଷ୍ଟିରେ ନି ସଙ୍କୋଚରେ ପ୍ରାଣ କରୁଛି ହତ..... ॥

(୨୪/୧୦/୮୬)

# ଅନୁତାପ

ତୁମେ ଥିଲ ପ୍ରିୟ ବସନ୍ତ କୋକିଳ....
ନନ୍ଦନ ବନର ପାରି ଯାତ....
ତୁମେ ଥିଲ ଦିନେ ମନ୍ଦିର ଦେବତା
ହତାଦର କରି ନ ଆସିଲ....... ॥
ତୁମରି କରୁଣା ପାଇଁ ମୋ' ପରାଣ
ନିରତେ ବୀଣାଟି ବାନ୍ଧେ ଅନୁକ୍ଷଣ
ତୁମରି ବାହୁତ ପଥ ଅନୁସରୀ.....
ନୟନୁ ଗଡ଼ାଏ ନୀର ଧାର ।
ତୁମ ଲାଗି ଦିନେ ବାମଦେବ ପୂଜି
ପୁଝାରିଣୀ ବେଶେ ଚିତ୍ତ ଥିଲି ମଜି ।
ମୁଁ କରେ ତୁମକୁ ମୋର ମୋର ବୋଲି
ତୁମେ ତ କରୁଛ ସାତପର ॥ (୧୧/୦୧/୪୭)



## ବସନ୍ତ

### କଲ୍ୟାଣ, ମାତ୍ର-୧୬

ତୋରା ବସନ୍ତରେ ...
ଚୋର ପରି, ପଶି, ଗବାକ୍ଷରେ, ଅପଟି, ଫୁଲାଉ କେତେ ?
ତୁନି ତୁନି କାନେ କହୁ
ତାପିତ ପରାଣ ବହୁ
(ତୋତେ) କହୁଛି ବିନୟ ହୋଇ ନ ଭଷା ମୁକୁଳା ସ୍ରୋତେ ?
ମଧୁଲୀଟ ସାଜି ହଟ
ଲଗାଏ ସାଂଗେ ଅଝଟ
(ମୋର) ରୋଦ୍ଧ କରେ ଗତିପଥ ଦୂରୁ ଜୁହାର ତାହାକୁ
କୋଇଲି ତା' କୁହୁ ନାଦେ
କରତେ ପିଞ୍ଜର ମଧେ
(ନେତ୍ର) ଅଞ୍ଜନରେ ଲେଖି ପତ୍ର ଦିଅନ୍ତି ତାହାର ହସ୍ତେ ।

(୧୧/୦୧/୪୭)

●●●

## ଝୁଲଣ (ଖିଆଲ)

ଶ୍ୟାମସୁନ୍ଦର ଆଜି ଝୁଲେରେ ( ଝୁ...ଲେ...ଝୁ...ଲେ ଝୁଲେରେ)
ଶୁକ୍ଳ ନିଶିଥେ ବନେ ମଞ୍ଜୁ ମଧୁପ ବନେ ଝୁଲେରେ (ଧ୍ରୁବ)
କୁଞ୍ଜ କୁସୁମେ ଭରା
ଗାଏ ସେ ପିକ ମୁଖରା
ଅଧରେ ମୁରଲୀ ଧୀରେ ନାରୀ ଚିତ୍ତ ହରା ସୁରେ (ଝୁଲେରେ)
ଆଜିଏ ବସନ୍ତେ ପାଶେ ନାହିଁ ପ୍ରିୟା
କାନ୍ଦେ ବିରହି ଶ୍ୟାମ ଆକୁଳ ହିଆ
ନୀରଜ ନୟନୁ ବାରି ଝରେରେ । (ଝୁଲେରେ)

(୩୧/୧୨/୪୬)

●●●

## କୀର୍ତ୍ତନ

(ମୋର) ବେଣୁ ବୋଲ ରାଧାରାଣୀ
ଝଙ୍କାର ତାନେ ଭେଦି ତା'ର ତନୁ ହକାରି ଆଣ ମାନିନୀ
ବେଣୁରେ....ମୋର ବେଣୁ......ପ୍ରାଣ ବେଣୁ
ମୋର ବେଣୁ ବୋଲ ରାଧାରାଣୀ ॥୧॥
ଗହନ କାନନ ଶୁଣି ବେଣୁ ସ୍ୱନ
ବସନ୍ତ ପରସେ ହୁଅ ଛନ ଛନ
ଧବଳୀ, ଶ୍ୟାମଳୀ, ନେଳୀ, କୁଂଜଗଳୀ
ଚନ୍ଦ୍ରାଳସେ ହୁଅ ମୋଉନ
ଆଗୋ ଯମୁନା........ ଯମୁନା....ଯମୁନା
ବାରେ ଯମୁନା ବହ ଉଜାଣି ।
ଉଚ୍ଛୁଳାଅ ବେଣୁ ତୋ ସ୍ୱର ଲହରି
ଉତଳା କିଶୋର ପକାଉଛି ରାଣ
ଫୁଟାଅ ଅକୁହା କାହାଣୀ
ବେଣୁରେ.... ମୋର ବେଣୁ ........ ପ୍ରାଣ ବେଣୁ
ମୋର ବେଣୁ ବୋଲ ରାଧାରାଣୀ ॥

## ॥ ଭଜନ ॥

ହେ କେଶବ? ତୁମେ ମୋହର
ଯେତେ କରୁଛ କରୁଥା ପର.....
ଖରସ୍ରୋତ ଧାରେ ଭଉଁରୀ ମଧ୍ୟରେ ପଡ଼ି ହୁଏ ହରବର ।
ସଜଳ ନୟନେ ଅପାଙ୍ଗ କୋଣେ
ଚାହିଁ ବସି ଅଛି ନଗୁଣ କର୍ଣ୍ଣେ
ସଙ୍କଳନ କରି ରଖିଛି ମହୁରା ଭକ୍ଷିବି ଜାଣିଥା ସାର ।
ପାରି ଘାଟେ ବସି ମାରୁଛି ଡାକ
ଶୁଣିବ ନାହିଁକି ଦୁଃଖ ଆରତ
ତରଣୀଟି ବାହି ଆଣରେ ତରାଇ(ମୋର) ତାପିତ ପରାଣ କର ଦୂର ॥
(୦୨/୦୧/୪୭)

•••

# ହୋରି

## ବାଇଦ ବାଇଲାଣି- ବୃତ୍ତେ (ଆଠତାଳି)

**ଶ୍ରୀରାଧା-** ବୃନ୍ଦାବନେ ବନେ ବନେ ମାରେକେ ପିଚକାରୀ
ଫଗୁଆ ହେଲାକି ସତେ ଜାଣେନାରେ ସହଚରୀ ।।ପଦ।।
ନାଟୁଆ ନଟବର ହଟହଟା ତୁ ନକର
ରଙ୍ଗବସନ ହୋଲି ଏକି ତୁମ ବ୍ୟଭାର
ଶାଶୁ ନଣନ୍ଦ ମୋର କହିବେ ଦୂରଦୂର
ନଥିବ କେହି ଜଣେ କରିବାକୁ ଗୁହାରୀ ।

**ଲଳୀତା-** ସମୀର ଗଲା କହି ଜାଣୁନାରେ ପ୍ରିୟସହୀ
କାହା ପରଶେ ବାଇ ହୋଇ ଆସିଛୁ ଧାଇଁ
ମୁଁ କିମ୍ବା ସେହି ଦୋଷେ ହୋଇଲି ଅବଗାହି
ନିଜ ମନ ମଜାଇ ନିଜେ ହେଉଛୁ ଘାରି ।

**ଶ୍ରୀରାଧା-** କାଳ ହୋଇଲେ କଳା ଭଅଁର ମୋତେ ଘେରି
ପରଶେ ପରଶିଲା ଏଣେ କଳା କାଉଁରି
ଫଗୁଣ ଫଗୁ ଗୋଳ ପଶି ମୋ' ନୟନର
ପଲକ ନ ତୋଳି ମୁଁ ମଲିରେ ସହଚରୀ ।

**ଶ୍ରୀପତି-** ଶ୍ରୀମତୀ ମନ ଜାଣି ଭାଷନ୍ତି ବେଣୁପାଣି
ଆସ ରାସରଙ୍ଗିନୀ ଅବିର ଦେବା ବୁଣି
ରୂପେଲି ଚାନ୍ଦିନୀକୁ ନେବା ନାଲିରେ କିଣି
ମନରୁ ମାନ ତେଜ ଏବେ ତୁ ବିମ୍ବାଧାରୀ ।

•••

## କଲ୍ୟାଣୀ, ଏକତାଳି

ଧୀରେ ଧୀରେ ଆରେ ବାଦଲ୍ ଧୀରେ ଧୀରେ
ମେର ବୁଲ୍‌ବୁଲ୍ ସ୍ୱରେହା
ସ୍ୱରେ ଗୁଲନମ୍ ଚାହେ ।
ମେରା ବୁଲ୍‌ବୁଲ୍ ସ୍ୱର ହା ହେ
ବନ୍ଦ କର ପାନ କେ
ନିଧୁମେ ଡୁବି ହୁଏ ହାୟେଁ
ସବ୍‌ତୀ ଆଙ୍କେ...
ଯାତୁ .... ମେରି କଶମ୍, ମେରି କଶମ୍ ହଏ ଯା ।

•••

## ଆଠତାଳି

ଜନନୀ ଗୋ ମୋର ଅଂଜଳି ଚରଣେ ସାଜିବ କି ?
ଖୁଣ୍ଟା ବାସି ଫୁଲ ଗୁନ୍ଥା ଗୋଟି ଗୋଟି ।
ସାଦରରେ ତାହା ଘେନିବ କି ?
ଆବର ଝୁଣା କୋଳି- ପତ୍ର ଆଣିଛି ତୋଳି
ପୂଜି ବି ଦୁର୍ବା ଦଳେ- ଲୁଚିବି ତୋର କୋଳେ ?
(ତୋର) ପଣତ ଅନ୍ତରାଳେ ଢାଙ୍କିବୁ କି ?
ଘେରିଣ ପାପରାଶି ଘାଇଲା କଲା ପଶି
ଘୋର ଦୁର୍ଦ୍ଦସା ଗ୍ରାସି ଘେନେ ପରାଣ ନାଶି
ଘଣ୍ଟ ଘୋଡ଼ାଇ ପାଶେ ରଖିବୁ କି ?
(ମା) ଚଣ୍ଡ ମୁଣ୍ଡ ପାଖଣ୍ଡ କେତେ ଯେ ଭଣ୍ଡ ଥିଲେ
(କିନ୍ତୁ) ଅଖଣ୍ଡ କୀରତି ମହୀରେ ସ୍ଥାପି ଗଲେ
ଦାସକୁ ଠେଲିବୁ କି ?

(୨୦/୧୧/୪୬)

•••

# ବସନ୍ତ ଗୀତ

ବସନ୍ତ ରାଣୀ...... ଚୁତବନୁ ଡାକ ଦେଲା
ଅଳସ ଉଡ଼ମା ଫାଙ୍କେ ଅପାଙ୍ଗେ ଚାହିଁଲି ଜାଣି ।
ରଜନୀଗନ୍ଧା ହସିଲା
ମନ୍ଦାର କଳି ଉଙ୍କିଲା
କେତେ ମୂରତୀ ବିରହୀ ମନେ ଆଙ୍କିଲା
ମନ୍ଦ ସମୀର ବହିଲା
ଦୂର ପ୍ରିୟ ପତ୍ର ଦେଲା
ଆଶାସୁର ଗହନ ବନୁ ଶୁଭିଲା ।
ମନ ମନ୍ଦିରେ ମୋହର
ଜଗାଏ କେ ବାର ବାର
ମଧୁପ ଚାପ ମନ୍ତେ କେତେ କହିଲା ॥

(୨୬/୧୧/୮୬)

•••

(ମାତ୍ରା-୧୬)

ଏହି ମାଳତୀ ଲତା ଦୋହଲେ
କୁଞ୍ଜେ କୁଞ୍ଜେ ଝିଟ କୋଇଲିଟା ବସି
ଅଜଣା ସଙ୍ଗୀତ ଗାଏ ।
ମଧୁଲୀଟରେ କପଟେ ଖେଳୁ
କୁତୁକେ ଆଉ ଜଳାନା ତନୁ
ଝଙ୍କାର ନାଦେ ଉଠେ ଶିହରୀ
ବାଜେ ରାଗିଣୀ ମୋ ହୃଦ ବୀଣାରେ
ସଞ୍ଜେ ସଞ୍ଜେ କେତେ ଇଙ୍ଗିତ କରୁ ତୁ
ମୁକୁଳା ମନ୍ଦିର ଦ୍ୱାରେ ॥

•••

## କୁଂଜଗୀତ

ଏହି ମାଧବୀ ଲତା ଦୋହଲେ
କୁଞ୍ଜେ କୁଞ୍ଜେ କଳା କୋଇଲିଟା ବସି
ଅଜଣା ସଂଗୀତ ବୋଲେ... ॥ (ପଦ)

ମଧୁଲୀଟରେ କପଟେ ଖେଳୁ
କୁତୁକେ ଆଉ ଜଳାନା ତନୁ
ଝଙ୍କାର ନାଦେ ଉଠେ ଶିହରି
ବାଜେ ରାଗିଣୀ ମୋ' ହୃଦ ବୀଣାରେ,
ସଞ୍ଜେ ସଞ୍ଜେ କେତେ ଇଙ୍ଗିତ କରୁ ତୁ
ମୁକୁଳା ମନ୍ଦିର ଦ୍ୱାରେ.... ॥

ଯେବେ ହେବୁ ତୁ ପାର
ତରାଇ ନାମ ଧର
ଉଆଁଶ ନିଶା ଘୋର
କର୍ଣ୍ଣଧାର ସେ ତୋ'ର
ଅଥଳ ନୀରେ ନେବ ସେପାରେ... ॥

•••

(ତାଳ-ଆଠତାଳି)

<u>ଭୈରବୀ ମାର୍ଗରେ ରହିଛି ଅନାଇ</u>

(ତୁମ)ବାହୁଡ଼ା ପଥ ଅନୁ ସରି
ଚାନ୍ଦିନୀ ରାତିଟି ଅବସାନ ହେଲା
ତିମିର ରାଗିଣୀ ହେଲି ମୁଁ
ବେଦନା ଭରା ମୋ' ଅବଶ ପ୍ରାଣଟି
ହାଣି ହୁଏ ଖାଲି ସ୍ମୃତିକୁ ନିରେଖି
ଯେତେ ବୁଝାଇଲେ ଅବୁଝା ମନକୁ
ତିଳେ ତ ବୁଝିଲା ନାହିଁ ॥

ଗନ୍ତାଘର ଧନ ଜାଣି ହରାଇଲି
ସନ୍ତାପିତ ପ୍ରାଣ ଶେଷକୁ ମୁଁ ହେଲି
ପୂର୍ଣ୍ଣବୋଲି ଜାଣିଥିଲେ ମୁହିଁ ତରଳିଥାନ୍ତି..... ॥

•••

## କାଶ୍ମୀର ଖେମଟା

ଯେତେ ନିଶା ସେତେ ନିରାଶେ ପାଇଛି
ପ୍ରିୟ ସଖା ମୋର ରହିଲେ କାହିଁ
ବେଦନା ଭରା ମୋ' ଅନ୍ତ ରାଇଜ
କାଳେ ନିରମମ ନିର୍ଦ୍ଦୟ ବହି ॥
ଜୋଛନା ଚାନ୍ଦିନୀ ଆକାଶର ତଳେ
ନୀରବେ ଏକାକୀ ଲୋତକ ମୁଁ ଢାଳେ
ପ୍ରଭାତୀ ତାରକା ଆଗମନ ପଥ
ନିରାଶେ ରହେ ମୁଁ ଗବାକ୍ଷେ ଚାହିଁ ॥
କାନନେ କାନନେ ଡାକ ଦେଲେ ପକ୍ଷୀ
କେତେ ବାର ପଥ ଅନାଏଁ ଚମକି
ଚାହିଁ ଚାହିଁ ସିନା ହେଲିଣି ଛାନିଆ
ବନ୍ଧୁ ମୋର ଆଉ ଆସିଲେ ନାହିଁ ॥

•••

## ମାଢ଼ ଖେମଟା

ବସନ୍ତ ରାଣୀ... ଚୁତ ବଣୁ ଡାକ ଦେଲା
ଅଳସେ ଓଢ଼ଣା ଫାଙ୍କେ ଅପାଙ୍ଗେ ଚାହିଁଲି ଜାଣି... ॥
ରଜନୀଗନ୍ଧା ହସିଲା
ମନ୍ଦାର କଳୀ ଉଙ୍କିଲା
କେତେ ମୂରତି ବିରହୀ ମନେ ଆଙ୍କିଲା.... ॥
ମନ୍ଦ ସମୀର ବହିଲା
ଦୂର ପ୍ରିୟ ପତ୍ର ଦେଲା
ଆଶା ମୂରଲି ଗହନ ବନୁ ଶୁଭିଲା... ॥
ମନ ମନ୍ଦିରେ ମୋହର
ଜଗାଏ କେ ବାରବାର
ମଧୁପ ଗୁପତ ମନ୍ତ୍ରେ କେତେ କହିଲା.... ॥

•••

## ଭାଟିଆଲି ତାଳ - କହରବା

ଚଲା ବାଦଲରେ.... ସମୀରେ ନିଅ ବାରତା
ବରଷି ତାଙ୍କ ପାଶେ ଦିଅ ବାରତା ଶେଷେ ।
ଅପେକ୍ଷି ରହିଛି ମୁଁ ଯେ ତାଙ୍କ ବାହୁଡ଼ା..... ॥
ଫେରନ୍ତା ବେଳକୁ ତୁହି
ଯିବୁରେ ଉତ୍ତର ଦେଇ
ଅନାଇଁ ରହିଛି ପରା ଚାହିଁ
ନାହିଁଟି ଯେବେ ମୂଳ ଭକ୍ଷିବି ମୁଁ ଗରଳ
ବୁକୁରେ ଲଦିବଇଁ ନିଶ୍ଚେ ପଥର
ଫିଟିଲେ ମୋ' ତୋରଣ
ନଶୁଜି ପାରିବି ଋଣ
ବିନିମୟେ ଦେବି ନିଜ ପ୍ରାଣ
ଆଖି ଭରା ଲୋତକରେ ବସିଛି ଅନେଇଁ ॥

●●●

## କଓ୍ୱାଲି

ସାନ୍ଧ୍ୟା ରଜନୀଗନ୍ଧା ମନ୍ଦ ବାୟୁ
ପରଶାଏ ମୋ ମନ୍ଦିରେ;
ଶାରଦିଆ ଚାନ୍ଦ ଜୋଛନା ରାଶି
ହସେ ବାତାୟନ ଦ୍ୱାରେ... ॥ ପଦ୍ୟ ॥
ଅତୀତ ଆତପ ସନ୍ତାପି ପ୍ରାଣେ
ଧୀର ସମୀରେ ବୁଲେ କାନନେ
ସବାଣ କୁସୁମ ଗୋପନେ ସେଜେ
ସଞ୍ଚି ଚାହେଁ ବାରେ ବାରେ.... ॥୧॥
ଝିଲି ରବେ ନିଶାରାଣୀ
ପୁଲକରେ ସାଥି ହେଲାଣି
ପରବାସୀ ଚାନ୍ଦ ବାରତା ଦେରେ
(ବନ୍ଧୁ) ଆସିବେ ସରାଗ ଭରେ... ॥୨॥

●●●

## କହରବା

(ସଞ୍ଜୁ) ସୁଞ୍ଜୁଆ ବାଆ ବହି ଯାରେ
(ମନ) ରଞ୍ଜାଇ ଦେଇ କହି ଯାରେ
ଜୀବିତ କର ମୋ ମଳିନ କୁସୁମଟି
ମନ୍ଦିରେ ଦୀପାଳି ଜାଳି ଯାରେ..... ॥ ପଦ ॥

ଦିବସେ ମଧୁପ ଗଞ୍ଜାଣା କରତେ
ରସାଳ ଲତାଟି କାଟି ଦେଲା ସତେ ?
ବସନ୍ତ ରାଣୀର ଚମକା ସ୍ୱରଟା
ଛନଛନ ପ୍ରାଣ ଭରି ଦେଲାରେ... ॥୧॥

ତୁନି ତୁନି କାନ୍ଦେ କହେ ମଧୁଲୀଟ
ଫଟା କପାଳ ତୋ ନୋହିବଟି ଟେକ
ପରସ ଯାଉ ମିଛେ ସୁଧା ପାତ୍ର ଧରି
(ଥରେ)ଦୂର ପ୍ରିୟ ପତ୍ର ନେଇ ଦିଅରେ... ॥୨॥

•••

## କହରବା

ଯେତେ ଗୋପନେ କହିଲି କଥା
ଶୁଣିଲ ନାହିଁ ଦେବତା
(କେତେ) ଚଳାଉଛି ମୋର ମଥା
ଜଳି ଉଠୁଛି ବେଦନା ଚିତା... ॥ ପଦ ॥

ଚାରୁ ଚାନ୍ଦିନୀ ନିଶୀ ଦେଖି
(ମିଛେ) ମନ୍ଦିର ମନ୍ଦିରେ ଆଙ୍କି
(ଖାଲି) ଆତ୍ମା ପଥେ ଚାହିଁ ଚାହିଁ
ବୁଡ଼ିଯାଏ ମୋର ଚେତା....... ॥୧॥

ଲତା ଫାଙ୍କେ କିଏ ଦେଲା ଠାରି
(ମୁଁ) ବାତାୟନେ ଥାଏଁ ଅନୁସରି
(ମାମୁଁ) ଉଷଳା ହସକୁ ଚାହିଁ
ଝଲସି ପଡ଼େ ଭ୍ରୂଲତା ॥

•••

## କଓ୍ୱାଲି

(ତା'ର)ଝଟଝଟ ନେତ୍ରେ ଅଟକେ ମୋ ପରାଣ
କିଏରେ ସେ ବାଟୋଇ ବେଦନା ଦେଲା
ଅଝଟ ଲଗାଇ ହଟ ସାଜି ଘଟେ
ଭରା ଘଟ ମୋର ଚହଲାଇ ଦେଲା ॥୦॥
ଖୁଣ୍ଟା ଚୂତ ପରେ ବସି
କୋଇଲିଟା ମନ କଷି
ଥଟାରେ ଥଟାରେ ଝିମିଟି ମାତ୍ରକେ-
ଅଠାଲଗା ମନ୍ଦିର ଫଟାଇ ଦେଲା ॥୧॥
ଲଟା ପଟା ମଧୁଲୀଟ-
କରି ଦେଇ ଛଟ ପଟ
ବାଟବଣା କରେ ତଟିନୀ ତଟରେ
ଏତେ ନାଟ କୂଟ କିଏ ସେ ଭେଇଲା ॥୨॥

## ତାଳ:- କହରବା

ହେବ ଦେଖା କେବେ ବନ୍ଧୁ
କେଉଁ କୁଞ୍ଜେ ତୋ'ର
ହଟା ଲୋଲୁପ ନେତ୍ରଟା
ଲୋଡ଼େ ବାରବାର ॥ ପଦ ॥
ଆଞ୍ଚ ଲଗାଇ ପରାଣେ
କାଇଁଞ୍ଚେ କାଟିବ ଜାଣେ
ବାଞ୍ଛିତ ଗୋପନ କଥା
ନ କହୁଣୁ ଥର ॥୧॥
କୁଞ୍ଚିତ ପରାଣ ମୋର
ଘଞ୍ଚାଳେ କରି ଅଧୀର
ଅଞ୍ଚଳ ଭେଦେ ନୟନୁ
ଝରି ନିର ଧାର ॥୨॥
ଉଆଁଶ ନିଶିର ରେଖା
ତୁମେ ମୋର ଦିଅ ଦେଖା
ମୁଁ ତୁମର ନୁହଁ ବୋଲି
କାଟ କିପାଁ ହାର ॥୩॥



## ତାଳ:- କାଶ୍ମୀର ଖେମଟା

କିଏରେ ବାଟୋଇ ତୁହି
ଅପାଙ୍ଗରେ ଦେଲୁ ଚାହିଁ
ବେଦନ ଭରା ପରାଣେ
ମରମ ବୀଣା କନ୍ଦାଇ ॥ ପଦ ॥

ଚିହ୍ନା ଥିଲା ପରି ମୋର
ନୟନ କରେ ଗୋଚର
ଜାଣୁ ଯେବେ କିଛି କହି
ସଂଶୟ ଦିଅ ତୁଟାଇ ॥୧॥

ଅଧର ଲୋଟା ହସଟି
ଚାହିଁ ବୁକୁ ଯାଏ ଫାଟି
ବାଧୁଛି ପରାଣେ ମୋର
ଇଙ୍ଗିତରେ ଦିଅ କହି ॥୨॥

ସେଦିନ ସେ ରୂପ ଛିଟା
ଫଟା କପାଳେ କୁଳଟା
ଅପବାଦ ଦେଲା ଗୋଟା
ତୁହି କିରେ ମୋର ସେହି ॥୩॥

ଯିବା ପଥ ଅନୁସରି
ନୟନୁ ଝରାଏ ବାରି
କହି ନ ପାରି ଆବୋରି
ପଛେ ମରେ ଝୁରି ଝୁରି ॥୪॥

•••

## ଭୈରବ-ଏକତାଳା

ଖାଲି ନୟନ ମିଳନେ
ବଞ୍ଚେ ପରାଣ କେଶନେ
ବୁକୁ ଫଟା କେତେ କଥା
ସଞ୍ଚିଛି ବେଳୁ ମୋ' ମନେ ॥୧॥
ଅଧୀର ମନ୍ଦିର ଦହେ
ଯେହ୍ନେ ଚାତକିନୀ ପ୍ରାୟେ
ମେଘ କି ପିପାସା ହରେ
ବିନା ବାରି ବରଷଣେ ॥୨॥
ମରୀଚିକା ଜଳ ପାନେ
ଦୂରୁ ନିରେଖି ନୟନେ
(ମିଛେ) ହରାଉଛି ଧୈର୍ଯ୍ୟ ଧନ
ସବିତା କିରଣ ମୁନେ ॥୩॥

•••

## କହରବା:- ଭାଟିଆଲ

ନୀଳ ଯମୁନା.. ସରସୀ ମୁକୁରେ ବନ୍ଧୁ ମୁଖ ଦିସେ
ବୁକୁଫଟା ବେଦନା ମୋ' ମନ୍ଦିର ପରଶେ ॥୦॥
ଖୁଣ୍ଟା ଚୁତ ଡାଳେ ପୀକ- ନିରବେ ଦିଅଇ ଡାକ(ରେ ବନ୍ଧୁ)
ମୋର ଦୁଃଖ ଦେଖି ଶେଫାଳିକା ଟଳେ ନିଶି ଶେଷେ ॥୧॥
ପୁନେଇ ରାତି ଜୋସ୍ନା- କରିଗଲା ମୋତେ ମନ
ଯିବେ ବୋଲି ପ୍ରିୟତମ ଦୂର ପରବାସେ ॥୨॥
ଚକୋର ଚକୋରୀ ମେଳ- ଦେଖି ପରାଣ ଆକୁଳ(ରେ ବନ୍ଧୁ)
ଅଳସେ ଶେଜେ ଲେଉଟି ରହେ ମୁଁ ନିରଶେ ॥୩॥
ବାତାୟନେ ବାରବାର- ବାରଣ କହେ ସମୀର
ବାହୁଡ଼ା ବିଜୟ ବାଜଣା ନାହିଁ ଯେଉଁ ଦେଶେ ॥୪॥

•••

## ତାଳ:- ଦାଦାରା

ମୁଁ ଯାକୁ ଭଲପାଏଁ ସେ ତ ଅଜଣା ମୁଲକେ ଯାଇଛି ଚାଲି
ସଲ ହେବ ଭାବିଥିଲି ମୁହିଁ ଶେଷରେ ଖାଏଁ ମୁଁ ଫୋପଡ଼ା ବାଲି(ପଦ)
ବଲ ବଲ ହୋଇ ଚାହିଁ ଦେଲେ ତଟେ
ଆକଟ କାମରେ ଥିଇରି ଚାଲି
ନାଲି ଧରି ଆଖି ଦୁଇଟା
କଞ୍ଜୁ ପୂରିଉଠେ ବାରି ଉସଲି
ନେଳୀ ବୋଳା ଶିଆଳି ବୁଝୁ ଜୀବନ ସାରାଟି ତା'ର କାଇଲି ॥୧॥
ବାହୁଡ଼େ ଭେଟିଲ ଡାମରା କାଉଟା
ପୁଛ ଟୋଳି ସପେ ବାଉଁଶ ମୂଳେ
ଧାଇଁ ଆସି ଗାଁ କୁତିଟା
ଭୋଓ ଭୋଓ ହୋଇ ପଥ ଓଗାଳେ
ସବୁ ତିଏଁ ମଥା ଉପରେ ନିରବେ ମୁଁ ସହୁଛି ବୋଲି ॥୨॥
କଲବଲ ତୋ'ର ଲଲାଟ ଲେଖନ
ଟାଲମାରି ଯେବେ ବସିବୁ ଏଠି
ଭଲ କରି ଗଣ୍ଠି ପକାଇ ଦେ
କେଭେଏଁ ନ ଯିବ ଜୀବନେ ଫିଟି
କଲେ ତୁ ଉଛୁର ଷାଠିଏ ବରଷେ ବେଠି ଲାଗି ପିଠି ଯିବ ମୋ' ଫୁଲି ॥୩॥
ପରପଞ୍ଚ ପରାଣ ମୋର
ପଞ୍ଚାଇ ଦେଉଛୁ ଅତୀତ କିପାଁ
(ଖାଲି) ସାମନାରେ ଇଙ୍ଗିତରେ ହସେ
ମଶାଣି ହୁଡ଼ାର ଡାଆଣୀ ନିଆଁ
ଦୂରୁ ଜୁହାରରେ ନିଆଁ ଦେବତା ପଥ ଛାଡ଼ି ଦିଅ ତାସେ ମୋ' କେହି ॥୪॥
ଘୁମୁଁ, ଘୁମୁଁ, ଘୁମୁଁ ଘୁମୁରେ ପାରାଟି
ଘୁମି ଯାଇଁ ଥାଉ ନଦିଅ ଧରା
ଦୁନିଆଟା ତୋହରି ପାଇଁରେ
ସେ ପାଇଁ ନକର ବେଦନା ଭରା
ପଥହରା ହୋଇଛି ବୋଲି ଦିନେକେ କହିବ ତୁଟାଇ ଖୋଲି ॥୫॥



## ଦକ୍ଷିଣୀ

ଦୂତି ଗୋ ଶ୍ୟାମ ବନ୍ଧୁଙ୍କୁ ଚାହାନି ବାରେ
ତ୍ରିଭଙ୍ଗୀ ଛନ୍ଦରେ ବେଣୁ ବାହେ ସୁସ୍ୱରେ
କଉସ୍ତୁଭ ଦୋଳା ବକ୍ଷେ ଝଟକେ ବିଦ୍ୟୁ
ଅଟକାଇ ପୋଡ଼ା ନେତ୍ର ଝରାଏ ବିନ୍ଦୁ
କେକୀ ପୁଚ୍ଛ ଡ଼ାକେ ମୋତେ
ନିକୁଞ୍ଜେ ଆସ ତୁରିତେ
ଅଭିସାରେ ଫୁଟେ କଣ୍ଟା ମୋ ପୟରେ ॥୧॥
କଟୀତଟେ ସୋହେ ଦେଖ କଟୀମେଖଳା
ନିକୁଞ୍ଜ ମଞ୍ଜିର ନାଦେ ହୁଏ ଉଚ୍ଛଳା
ସତୀ ଶିରୋମଣି ରାଧା
ଦମ୍ଭେ କିଏ ଦିଏ ବାଧା
ମନ୍ଦ ନଣନ୍ଦସୁମରି ବେଦନା ଘାରେ ॥୨॥
କର୍ଣ୍ଣେ ମକର କୁଣ୍ଡଳ ଦୋହଲେ ଧୀରେ
ଧୀର ସମୀରେ ଅମ୍ବର ଲୋଟେ ଅଧୀରେ
(ମୋର) ପୋଡ଼ା ଲୋଲୁପ ନୟନ-
ଖାଲି ହୁଏ ଥନ ଥନ
ନିନ୍ଦା ଅପବାଦ ଯେତେ ବୋଳାଇ ଶିରେ ॥୩॥

## ଏକତାଲା

ଲୁଚି ଲୁଚି ଦିନେ ଫୁଟିଲୁରେ ଫୁଲ
ଶୁଣାଇଁ ଦେଲୁ କାନେ ମରମ କଥା ।
ପରାଣେ ଚେତାଇ ତନ୍ଦ୍ରା ନିଦ ଭାଙ୍ଗି
କିପାଁ ତୁ ପରବାସୀ ଦେଉଛୁ ବ୍ୟଥା ॥
ଅତୀତ ଫଗୁଆ ଝଉଁଳା ଜହ୍ନେ
ଅଧର ପରସା ନାହିଁକି ମନେ
(ତାହା) ଗଲାକି ପାସୋରି
କଳକଣ୍ଠ ସାଖୀ ମୋହରି
ବେଦନା ଭରା ପରାଣେନ ଜାଳ ଚିତା ॥

•••

## ଓଡ଼ିଶୀ

ତୋର ବସନ୍ତରେ...
ତୋର ପରି ପଶି ଗବାକ୍ଷରେ ଅପଟୀ ଫୁଲାଉ କେତେ ॥୦॥
ତୁନି ତୁନି କାନେ କହୁ
ତାପିତ ପରାଣ ଦହୁ
(ତୋତେ)କହୁଛି ବିନୟ ହୋଇ ନ ଭସା ମୁକୁଳା ସ୍ରୋତେ ॥୧॥
ମଧୁଲୀଟ ସାଜି ହଟ
ଲଗାଏ ସାଥେ ଅଝଟ
(ମୋର)ରୋଧ କରେ ଗତି ପଥ ଦୂରୁ ଜୁହାର ମୁଁ ତୋତେ ॥୨॥
କୋଇଲି ତା କୁହୁ ନାଦେ
କରତେ ପିଞ୍ଜର ମଧେ
(ନେତ୍ର) ଅଞ୍ଜନରେ ଲେଖି ପତ୍ର ଦିଅନ୍ତି ତାହାର ହାତେ ॥୩॥

•••

## ଏକତାଲା

ସେହିପରି ମୁଁ ଗୋ ବାତାୟନ ଦୂରେ
ବିଜନେ ରହିଛି ବସି
କେତେ ପୂନେଇଁର ଉଛୁଳା ହସଟି
ଯାଉଛି ମୋତେ ପରଶି ॥୧॥
କେତେ ମଧୁ ରାତି ଯାଉଛି ମୋ' ବିତି
କେତେ ବା କିଳିବି ବେଦନାର ଛାତି
(ଆଜି) କେତେ ଜନମର ଅକୁହା କାହାଣୀ
ଦେଉଛି ମୋତେ ଗରାସି ॥୨॥
(ତେଣେ) ବସନ୍ତ କୋକିଳ ହୋଇଣ ଆକୁଳ
ଗହନ କାନନୁ ମାରେ କୁହୁ ଶୂଳ
ତିନ୍ତିଲା ଦୁକୂଳ ପୋଛି ଆଖି ଜଳ
ବନ୍ଧୁ ହୋଇଲେ ଉଦାସୀ ॥୩॥

•••

# ମୁଁ ଜାଣେନା କେତେ ...

## କଓ୍ୱାଲି

ସେହି ଝାଉଁଳା ଜହ୍ନେ
(ତାଙ୍କ)ନାହିଁକି ମନେ
ଯେତେ ଗୋପନେ କାନେ ମୁଁ କହିଛି କଥା ॥ପଦ॥
(ଆଜି) ଶୁଣିଣ୍ଟି ନାନ ବଣ କାକଳୀ
ଭିଡ଼ା ଶେଫାଳୀ ପଡୁଛି ଟଳି
(ଖାଲି) ପଲକେ ତନ୍ଦ୍ରା ଆସି ବୁଡ଼ାଏ ଚେତା ॥୧॥
ଗବାକ୍ଷେ ବାନ୍ଧ-ସବିତା ଶିଖା.....
ଗୁପତେ ଆଣି ସାଥେ ମଧୁମକ୍ଷିକା-
ନିରାଶା ବାଣୀ କେତେ ଶୁଣାଇଁ ଦେଇ
ମନ୍ଦିର ମୋର ଦେଲା ଜଳାଇ
ଦୂରୁ ଜୁହାର......... ତା'ର ଝଙ୍କାର
ଆଶା ପଥେ କିଏ ମୋ' ପୋତିଲା କଣ୍ଟା ॥୨॥

## ଓଡ଼ିଶୀ

ମୁଁ ତ ଜାଣୁ ନାହିଁ କିଏ ପରାଣେ କହୁଛି
ଯେତେ ଆରତି ଧଇଲେ (ପୋଡ଼ା) ନୟନ ଧାଉଁଛି... ॥ପଦ॥
ପଲକ ପାରିଲେ ମୁହିଁ
ପୁଲକେ ପରାଣେ ସେହି
ସୋପନ ଛାଇ ଯେ ଦେଖେ ପାଶେ ମୋର ଅଛି..... ॥୧॥
ଜାଗି ଉଠି ଉଜାଗରେ
ଫେରି ଚାହେଁ ନାହିଁ କରେ
ଅଧୀର ହୃଦୟ କୁହେ ଭରସା କି ଅଛି..... ॥୨॥
ଶ୍ରାବଣ ଅନ୍ଧାର ରାତି
କାନ୍ଦି କାନ୍ଦି ଯାଏ ବିତି
କେତେ ସୁନେଲି ପ୍ରଭାତ ମଣ୍ଡିଲା ପରାଚୀ.... ॥୩॥

●●●

## କାଶ୍ମୀର-ଖେମଟା

ସଞ୍ଜ ସମୀର ବହି-
କାମିନୀ ଫୁଲର ଆଭା ପରସାଇ
ମଳିର ମନ୍ଦିର ଦହେ ॥
ଶେଫାଳୀ କୁଞ୍ଜତେ ଚାହିଁ
ବୋଲେ ତାରା ମାଳି କାହିଁ
ରଙ୍ଗୀନ ବାଦଲ ଛନ୍ଦରେ ଆବୋରି
ମିଳନରେ ବାଧା ଦିଏ ॥
ଗୋ......ଧୂଳି.......ଅନ୍ତରାଳେ
ଲୁଚକାଳି ମାମୁଁ ଖେଳେ
ମୁଁ ଗବାକ୍ଷେ ଦେଖେ ନିରୋଳେ
କିଏ ବାଦୁଆ ବାତ କରି ମୋର -
ବନ୍ଧୁ ପଥେ କଣ୍ଟା ଥୁଏ ॥
(ତାଙ୍କୁ) ଦୂରୁ ଜୁହାର ମୋହର
(ଭାଷେ) ହରାନ୍ତୁ ବେଦନା ଭାର
(ମୋର)ଶୁଷ୍କ ପାଦପେ ପନିର ସିଞ୍ଚାଇ
ପଲ୍ଲବିତ କରି ଦିଅ ହେ ॥

## କହରବା

ଯେତେ ବୁଝାଇ କଲି ଯତନ
ଅବୁଝା ହେଲୁ ତୁ ମନ-
କିଏ ବୋହି ନିଏ କାହା ଧନ
(ଖାଲି) କଥା ପଦେ କଟେ ମାନ ॥୦॥
ଯାହା ଲାଗି ମରୁ ଝୁରି ଝୁରି
ସେ ତ ଅଭିମାନୀ ଭରା ଶାରୀ
କେହି କାହାକୁ ନକରେ ପାରି
(ଖାଲି) ଧରାଧରିରେ କପେଁ ଆସନ ॥୧॥
ଯାକୁ ଭାବିଛୁ କରି ନିଜର
ସେ ତ ହୋଇଛି ହୋଇବ ପର
ମିଛେ ଘୁମୁରି କା ପାଇଁ ମରୁ
କିଏ ଶୁଣିବ କାହା ବଚନ ॥୨॥

●●●

## କଓ୍ୱାଲି

ଡହଳ ରାତିରେ ଡାହୁକ କହିଲା
ପହିଲି ରଜଟି କାଲି ଗୋ ।
ସଜ ବଉଳ ତା’ ସରାଗ ପସରା
ଧରି ଶିରେ ଯାଏ ବୁଲି ଗୋ... ॥୧॥
କାମିନୀ କୁସୁମ କାଉଁରୀ ଲଗାଇ
ଦୂର ରାଇଜକୁ ନେଉଛି ଉଷାଇ
ବୁଲା ସମୀର ତା’ ମନ ଭୁଲାଣିଆଁ
ବାଣୀ କହି ଯାଏ ଚାଲି ଗୋ... ॥୨॥
କୁଆଁରୀ କାମିନୀ ସାଙ୍ଗ ସାଥୀ ଘେନି
ପୁଆଇ ଦିଅନ୍ତି ଚାନ୍ଦିନୀ ଯାମିନୀ
ଆକୁଳ ପରାଣେ ଝୁରେ ବିରହିଣୀ
ଯାଏଁ କହି ପଥ ଭୁଲି ଗୋ..... ॥୩॥

## କୀର୍ତ୍ତନ

ବ୍ରଜ ବଧୂ ସୁରତି ବରତି ସତୀ
ସୁରତି ନାଚ ମୋର ପ୍ରାଣେ
ଗୋକୁଳ ରଂଜନେ.... ରାଧା ହୃଦ ଚନ୍ଦନ
ଆରତୀ ପିରତୀ ଜା-ଣେ ॥
ଶ୍ୟାମଳ ନବଘନ.... ନିନ୍ଦିତ ଅପଘନ
ଶୋଭିତ କଉସ୍ତୁଭ ମାଳେ
କଟି ତଟ କିଂକଣୀ ବାଦନ ରିଣିଝିଣି
ସୁନ୍ଦର କେକୀପୁଚ୍ଛ ଭାଲେ
ନବୀନ ନଟବର ଗିରିଧର ନାଗର
ଭାସିବି ସୁଧାରସ ପାନେ..... ॥୧॥
(ବାରେ) ଦେଖ ଗୋ ତୁହି
କଳା ଗୋରା ତନୁ କି ଶୋଭାପାଏ ଦେଖ ଗୋ ତୁହି
ଯୁଗଳ ତନୁରେ ବଂଶୀ ବାହେ ଦେଖ ଗୋ ତୁହି
ପୀତପଟ ଲୋଟା ଚରଣ ଦୁଇ ଦେଖ ଗୋ ତୁହି
ଦୀନ ତାରଣ ପତିତପାବନ
ଏ ଭାରତୀ ଆରାଧି ନ ଜାଣେ..... ॥୨॥



## ।। ଭଜନ ।।

ଜନକ ଜନନୀ ସହୋଦର ମୋ' ଆତ୍ମୀୟ
ଜଡ଼ିତ ସଦା ମୋ' ଦୁଃଖେ ହୋଇଣ ବିସ୍ମୟ
ଯେବା ଯେ ଯେ ଯେତେ ଚିନ୍ତିବେ
ଯିବାବେଳେ ତରୀଭାଷି କେବା ଉଧାରିବେ ।।
ତରଣୀ ତରାଇ ପ୍ରଭୁ ହୋଇ ଏତେ ବେଳେ
ଘୂରି ଆଣି ପ୍ରତି ସ୍ରୋତେ ଲଗା ମୋତେ କୂଳେ
ବେଳବେଳ କର କଥା
ରହିଯାଉ ଜନ ମୁଖେ ହୋଇଥାଉ ଗାଥା ।।
ଗଗନରେ ତପନ ନଳିନୀ ସରୋବରେ
ସେନେହେ ରହିଛି ବୋଲି ଶୁଣିଛି କର୍ଣ୍ଣରେ
ତେଣୁ ଅଝଟିଆ ମନ
ଧାଇଁ ଅଛି ଲଭିବାକୁ ସେ କରୁଣା ମନ ।।
ଆରତ ତ୍ରାଣ ଯା ନାମ ହୋଇଛି ବିଖ୍ୟାତ
ଏ ଆରତ ଅନ୍ତପ୍ରାଣେ ହେବ କି ସୁଖ୍ୟାତ
ମୋକ୍ଷ ଲକ୍ଷ୍ୟ ଅଛି ଆଶ୍ରା
ତୁମ ନାମ ଅଧମର ସଂସାରେ ଭରସା ।।
ଭାରି ହେଲା ଗୁରୁ ଭାର ଯେବେ ମୋର ଦୋଷ
ତୁମ ବିନା ଅଛି କେହୁ କରିବ ନିର୍ଦ୍ଦୋଷ
ବିନିମୟ ହେଲେ ରୋଷ
ବାଳିଶ ମତୀ ତୋ ସୁତ ହୋଇଣ ବିନାଶ ।।
ଘୋର ସଂକଟ ପୂରିତ ଭବସିନ୍ଧୁ ଜଳୁ
ଘାଉଲିଆ କରି ଉଧାରିଛ ଭାଳୁ ଭାଳୁ
ଘେରା ଭାଙ୍ଗିଛ ନକ୍ରର
ଘୂରା ଚକ୍ରେ ଶତଖଣ୍ଡ କରି ତା'ର ଶିର ।।
ଏ ବାଣୀ ଶ୍ରବଣେ ମୋର ପୁଲକି ପରାଣ
ହେଲା ବୋଲି ମୋର ଦାବି ଅଣୁ ମାତ୍ର କଣ

ତେଣୁ କୃପାଣକୁ ଡର
ନ କରି ଦେଖାଏ କଣ୍ଠ କଟୁ ଶତବାର ॥

ଢଳିଯାଉ ମେରୁ ଶୃଙ୍ଗ ଟଳଟଳ ହୋଇ
ଟଳି ନ ଯାଉ ମୋ' ଚିତ୍ତ କାହିଁ ନୋହି ବାଇ
ମୋର ଏତିକି ମିନତି
କଳ୍ପନା କାନନେ ଚିନ୍ତି କାଳଯାଏ ବିତି ॥

ଚାରି ଏକ ସବସ୍ତର ବିତିଗଲା କାଳ
ତେବେ ମୋ' ବେଦନା କେବେ ନ ସାରୁଛି ଖେଳ
ଏବେ ସୀମାନ୍ତ ଆପତ୍ତି
ଲଭିଯାଉ ନବପ୍ରାଣ ନଟବର କାନ୍ତି ॥

●●●

## ଜଣାଣ (ପଢ଼ି)

ହେ......... ଚିନ୍ତାମଣି
ଚିନ୍ତିଲେ ଚିନ୍ତା ମୋର ଗଲାନାହିଁ
ଚିନ୍ତା ଚିତା ଉଗ୍ରୁଳି ଚେତନା ଦିଏ ଜାଳି
ଅଚିନ୍ତା ହୋଇ ବସୁ ନ ଶୁଣି ଏ ଦୀନ ଅଳି
ମୁଁ ପରା କିଣା ଦାସ ଶିଶୁ ସଂସାରୁ ଆସ
କରିଅଛି ଭରସା ଏବେ ଉଡ଼ାଉ ହଂସା
ସହୁଛି ଲୋକହସା ନ ଖୋଲୁ ମୁଖୁ ଭାଷା
ମଲି ଏବେ ମୁଁ ରସା ତଳେ ଲଭି ଦୁର୍ଦ୍ଦଶା ।
ଚେତନା ହେଲା ହତ ଆହେ ଚିର ବାଞ୍ଛିତ
ଲାଞ୍ଛନା ଆସି ସ୍ୱତଃ ଲହରୀ ପରାଏ ତ
ରତ ଥାଉ ତୋ ପାଦେ ଜଳେ ଅଇରି ନାଦେ
ଚେତନା ଲଭି କାନ୍ଦେ ତହୁଁ ହକରା ବାନ୍ଧେ
ପକାଇ ମହା ଦ୍ୱନ୍ଦ୍ୱେ ଓଟାରେ ରାଜଦାଣ୍ଡେ
ଭାରତୀ ଭୟ ଦେଖି ଆରୋହି ନଳ ବଣ୍ଡେ ॥

●●●

# ଜଣାଣ

## ( ଅଖିଳ ବ୍ରହ୍ମାଣ୍ଡ ପତି )

ଆହେ ବିଶ୍ୱ ପିତା ମାତା ପ୍ରଭୁ ଅନ୍ତର୍ଯାମୀ
ବିଶ୍ୱେ ଏହି ଦୀନ ସୁତ ହୋଇଛି ଅକାମି
ବିଷ ଦିଅ ମୁଖ ବାସ
ବିଷୟ ବାସନା ମୋର କରୁ କାଳ ଗ୍ରାସ ।।
ଝଟିକା ଝୁଙ୍କାରେ ମୁହିଁ ଭୂତଳେ ପତିତ
ପତି, ମତି, ଗତି, ପଥ, କଣ୍ଟକେ ସଜ୍ଜିତ
କେବା ଟେକି ନେବ ପାଶ
କାହା ସଙ୍ଗେ ଦ୍ୱନ୍ଦ୍ୱ କଲେ କିଅବା ପୌରୁଷ ।।
ଧରା ଧାମେ ଧାଏଁ ଶଶା ଜଳପାନ ଆଶେ
ଶେଷେ ହେଲା ଅସ୍ତପ୍ରାଣ ନଥିଲା କେ ପାଶେ
ସେହିପରି ମୋର ଦଶା
ତା' ପରି ଏ ପାପୀ ଚନ୍ଦ୍ର ନ ପାଉଛି ବସା ।।
ଭାଷାର ଅତୀତ ଗାଥା ହେଲା ଲୋକହସା
ଭସା ତରୀ ଅରି ଭାରେ ଧରିଗଲା ରସା
ସତେ ହୋଇବ ଉଦ୍ଧାର
ବୃଥା ସେ କାମନା ମନାସିବା ଭ୍ରମ ମୋର ।।
ଶିଶୁ ସଂସାରୁ ଆଦେଶ ଲୋଡୁ ଲୋଡୁ ଅପଯଶ
ଭୋଗେ ଏ କେଉଁ ସରସ କଲ ବିକାଶ
ଥିଲା ଯଦି ଗୁରୁ ଦୋଷ ଦୋଷୀକୁ ବସାଇ ପାଶ
ରଖି କିପାଂଇ ଭୋଗାଅ ମୁହିଁ ବାଳୀଶ
କରିବି ମୁଁ କାହିଁ ପ୍ରକାଶ
କଷି ମୋ' କଣ୍ଠରେ କଷ ଲଭେ ମୁଁ ଶେଷ ।।
ଦୟାମୟୀ ଦୟା ତୋ'ର କରୁ ତୁ କାହିଁ ବିସ୍ତାର
ମାୟା ଖାଲି ହେଲା ମୋର ପାଇଁକି ସାର
କାୟା ବଢ଼ାଇ ଜଂଜାଳ ତୁଟାଇଲା ମୋର ବଳ
ବାୟା ହେଲା ଉତ୍ତମାଙ୍ଗ ମନ ବିକଳ

ଦିଅ ଶେଷ ବିଦାୟ ମୋତେ
ଉଡୁ ତୋ' ବିଜୟ ବାନା ଯେତେ ଜଗତେ ॥
ଯେତେ ମୁଁ ଭିଡ଼ିଲି ଅଣ୍ଟା ହଟହଟା ଲେଖା ଫଟା
ଲଲାଟେ ବିଷାଦମୟ ଜୀବନ ଗୋଟା
କୃପା କଟାକ୍ଷ ସମ୍ବଳ କରି କରିଥିଲି ବଳ
ନ ନଭିଲି ସେ ଭରସା ହୋଇଲା ବେଳ
ଏତିକି ମା' ଶେଷ ବିନତୀ
ପଦ କୋକନଦ ହେଉ ଭାରତୀ ଉତ୍ତରଗତି ॥

●●●

## ॥ ଭଜନ ॥

ଭୁଲାମନ ଭୁଲନା ମିଛ ମାୟା ସଂସାରେ
ଭରମି ନଯାଅ କେଭେ ଛାୟା ନିଶାରେ ॥
ଜନନୀ ଜଠେ ରହି
କରାର କଲୁ ତୁହି
ଗରାଳ ହେଉ ମିଛେ
ଗୁଇଁନ୍ଦା ଅଛି ପଛେ
ଚେତାଇ ଦିଏ ନିଶି ବାସରେ..... ॥୧॥
ଡାକରା ଆସେ ଧାଇଁ
ସଜ ହୋଇ ତୋ'ପାଇଁ
ବାୟା ହେଉ କିପାଇଁ
କାୟା ରହିବ ନାହିଁ
ଛଡ଼ାନା ଚିତ୍ତ ଛାୟା ପାଂଶରେ..... ॥୨॥
କଳ କବଜା ତୋ'ର
ଛାଡ଼ି କାଟିବ ହାର
ବାୟୁ ଉଠି ପ୍ରଖର
ଭାଙ୍ଗିବ ଘର ଦ୍ୱାର
ମଝି ଖୁଣ୍ଟି ଜାଣ ଆଶ୍ରାରେ..... ॥ ୩ ॥

●●●

## ।। ପ୍ରଭୁ ହେ ।।
## (ଚଉତିଶା)(କ - ଛ ଅପ୍ରାପ୍ତ)

ଜଗତୁ ଜନତା ତୁଣ୍ଡରୁ ଶୁଣି
ଯାଇଁ ଆଶ୍ରା କଲି ତୋ' ନାମ ଗୁଣି
ଜନକୀ ଜନନୀ ମନ୍ତେ
ଯେତେ ଡାକୁଅଛି ଆରତ ସ୍ୱରରେ
କିପାଁ ନଭେଦେ ତୋ ଗାତ୍ରେ ।।୮।।
ଝଟିକା ଝୁଙ୍କାରେ ପଡ଼ିଛି ମୁହିଁ
ଝଟିତି ଉଧାର କରିବୁ ତୁହି
ଝିପିଝିପି ଝୁପାଁ ନୀର
ଝୁଣ୍ଟି ପଡ଼ିବାରୁ ବରଷି ଯାଇଛି
ନିର୍ଦ୍ଦୟ ହୋଇ ମୋ' ପର ।।୯।।
ନଟା ପଟା ଫଟା କପାଳେ କଲୁ
ନାପିତ ହସ୍ତରେ ମୋ' ଚୁଟି ଦେଲୁ
(ତା'ର) ନୋଉରୁଣି ମୁନ ଖେଞ୍ଚା
ନେଉଟାଇ ନେତ୍ର ଏହା ମୁଁ ଦେଖିବି
ଏ ଦୁଃଖରୁ ବାରେ ବଞ୍ଚା ।।୧୦।।
ଟଳଟଳ କରେ ବେଦନା ଚିନ୍ତା
ଟଙ୍କିଳ ଉପରେ ପିଟିବି ମଥା
ଟମକ ବଜାରେ ଦେବି
ଅଟହାସ କରି ବଇରି ଭାଷିବେ
ଟଳ ନରଖରେ ଦାବି ।। ୧୧ ।।
ଠକାଠକି ମାତ୍ର ଆଉ ନକର
ଠଣ ଠଣ ତାନେ ଆସ ସତ୍ୱର
ଠାକୁରାଣୀ ନିତି ଧରି
ଠାଣୁଆ ସୁତକୁ ଠାବ ଦେଇ ଯାଅ
ଠେକ ରଖିଣ ତାହାରି ।।୧୨।।

ଡର ମାଡୁଅଛି ଅରାତି ଡକା
ଡଗରା ଆସିଣ ଲଦିବେ ଧକା
ଡଗଡଗେ ଧରି ନେବ
ଡାକ ମାରୁଥିବ କରୁଣ ସ୍ୱରରେ
ଦାଣ୍ଡରେ ସୁନ୍ଦର ହେବ ॥୧୩ ॥

ଢଳଢଳ ନେତ୍ରୁ ଲୁହ ଢଳିବ
ଢିପ କଣ୍ଠୁ ମୋର ପୂରି ଉଠିବ
ଢାଳେ ମୋ' ଗୁହାରି ଶୁଣ
ଢଳି ଗଲେ ନେତ୍ର ପୁଲକିବ ଗାତ୍ର
ଫଗୁଣ ହୋଇ ଦି'ଗୁଣ ॥୧୪॥

ଅଧୈର୍ଯ୍ୟ ନକରା ପରାଣ ମୋର
ଅଧୋ ଗତିରେ ହେଲା କାରବାର
ଅଧୋଗାମୀ କୂଟେ କଲୁ
ଅଧ୍ୟାୟ ବଢ଼ିବ ଶେଷ ହେଲେ ସବୁ
ଅଧ୍ୟାୟି ନଥିବ ଆଉ ॥୧୫ ॥

ତଟିନୀ ତଟରେ ଲଗା ତୋହର
ତନ୍ତ୍ରୀ ଝଙ୍କାରରେ ପ୍ରବୋଧ କର
ତୂଣ ତରବାରୀ ଧାର
ରଂଜିତ କରାଅ ଅରି କୂଟଚକ୍ର
ତଟସ୍ଥ ହେଉ ସଂସାର ॥୧୬॥

ଥାପିରେ ଧରୁଛି ଚରଣ ତୋ'ର
(ତୁମ୍ଭେ) ଥାପନା ବେଲୁ ପିଣ୍ଡରେ ମୋହର
ଥୋକାଏ ଗୁହାରି ଶୁଣ
ଥୋବରା ପରାଣ ଅଥିର ହୋଇଣ
ଅଥୟେ ଭାଙ୍ଗୁଛି ଟାଣ ॥୧୭ ॥

ଦନ୍ତେ କୁଟା ଧରି ବିନୟେ କହେ
ଦନୁଜ କବଳୁ ଉଧାର ମାଏ
ଦରଦ ପରାଣ ଦହେ
ଦୟା କଲେ ମତେ ମୁହୂର୍ତ୍ତକ ମଧ୍ୟେ
ଦର୍ପି ନରହିବେ ଭୟେ ॥୧୮ ॥

ଧାରୁଆ ହୋଇଣ ଜୀବନେ ଥିବି
ଧମକ ଶୁଣିଲେ ଆଶ୍ରା ଲୋଡ଼ିବି
ଧୀର କର ମୋର ପ୍ରାଣ
ଧାସ ଦେବି ଜାଣ ଡାକ ନ ଶୁଣିଲେ
ଏକଥା ସତ୍ୟ ପ୍ରମାଣ ॥ ୧୯ ॥

ନଭାଙ୍ଗ ପଛକେ ଅରିର ଟାଣ
ନାଆଚାର ହୋଇ ହାରିବି ପ୍ରାଣ
ନାଶ ହେବି ନିଜ କରେ
ନାନା କୁଟୀଳରେ ମଣ୍ଡି କିପାଁ ପ୍ରାଣ
ନେହୁରା ହୋଇବି ପରେ ॥୨୦ ॥

ପଣତ ଉହାଡ଼େ ରଖିବୁ ଯେବେ
ପଣେ ଶତ୍ରୁ ଥାଇଁ କିସ କରିବେ
ପଣା ପରି କରି ମୁହିଁ
ପଲକରେ ପାନ କରିପାରେ ସର୍ବ
ତୋହରି କରୁଣା ପାଇଁ ॥୨୧॥

ଫରଫର ବାନା ଉଡ଼ିବ ତୋର
ଫସକା ହୋଇବ ଅରିର କର
ଫିଟିବ ନାହିଁ ତା ତୃଣ
ଫଟକା ଆବାଜେ ଚମକାଇ ଦେଲେ
ସେ କିପାଁ ହୋଇବ ବାଣ ॥୨୨॥

ବର୍ଣ୍ଣନ କରିଛି ତୋ' ନାମ ମୁହିଁ
ବର୍ଜନ କରିଲେ ମୋ' ସ୍ଥାନ ନାହିଁ
ବର୍ଜ୍ୟ କାଳେକାଳେ ତୁହି
ବେଉଁନ୍ତି ବା କେତେ ଦେଖାଇଛୁ ନେତ୍ରେ
ସାଗର ଶୁଖେ ମୋ ପାଇଁ ॥ ୨୩ ॥

ଭଣ୍ଡା ଭଣ୍ଡି ମାତ ନକର ଆଉ
ଭଗାରୀ ଜାଣିଲେ ମାରିବେ ଦାଉ
ଭାବି ଭାବି ଦିନ ରାତି
ଭାରତୀ ଭାରତୀ ଭଲନାମ ଚିନ୍ତି
କେତେ ଯୁଗ କଲି ବିତି ॥ ୨୪ ॥

ମାଆ ମାଆ ମୁହିଁ ଭୁଲିଣ ଗଲି
ମାଆ କୋମଳକୁ ହରାଇ ଦେଲି
ମାରି ଦିଅ ଛାଟେ କରେ
ମାତୁଆ ସୁତକୁ ଶିକ୍ଷାଦେଇ ବାରେ
ମଇତ୍ର ବସା ଅରିରେ ।।୨୫।।
ଯଶସ୍ୱୀ କରାଅ ଏହି ଜଗତେ
ଯା ଚିତ୍ର ବେଲୁ ମୁଁ ଆଙ୍କିଛି ଚିତ୍ତେ
ଯାକି ଧର ତୋ'ର କରେ
ଯାତ କରାଏ ମୁଁ ତୋ'ର ସନ୍ନିକଟେ
ଭାଷିଣ ପ୍ରେମରେ ନିରେ ।।୨୬।।
ରମଣୀୟ ମୂର୍ତ୍ତି ନିରେଖି ଚାହିଁ
ରବି କରକୁ ଉପମା ଖଟାଇ
ରସିତ ଲଭେ ମରମେ...
ଛାଇବା ମନ୍ତରେ ନେତ୍ରୁ ନୀର ଢ଼ାଳି
ରହସୀ ଉଠାଏ ପ୍ରେମେ ।।୨୭।।
ଲୟ ରଖି ଥାଅ ତୋ'ର ଚରଣେ
ଲଳନ ବଢ଼ାଅ ତୋ' ଗୁଣ ଗାନେ
ଲାଞ୍ଛିତ ପଛକେ ହୁଏ
ଲାଞ୍ଛିତ ରଖିଣ ଯୁଗେ ଯୁଗେ ତୋର
ବାଞ୍ଛିତ ନ ଦେଇ ପୋଏ ।। ୨୮ ।।
ବଦ୍ଧପରିକର କରିଛି ମୁହିଁ
ବଦଳିବା ମୋର ଜାତକେ ନାହିଁ
ବାଳ କାଳୁ ଧରି ତୋତେ
ବ୍ୟଥା ଦେଉ ପ୍ରାଣ ଏ କେଉଁ ଶୁଣାଣି
ବାଟ ହୁଡ଼ା କରି ପଥେ ।।୨୯।।
ଶତ ଦଳେ ପୂଜି ଶପଥ କଲି
ଶଠତା ଦେଖିଲେ ଜାଣ ମୁଁ ମଲି
ଶଙ୍କିତ ନହୋଇ ତିଳେ...
ଶଙ୍ଖୁଆ ଭକ୍ଷିବି ସ୍ଥାବରେ ହକାରି
ନଥିବି ଜନତା ମେଳେ ।।୩୦।।

ଷଡ଼ଯନ୍ତ୍ର ତୁହି କରୁଥା ଥାଇ
ଷଡ଼ରିପୁ ମୋର ନଥିବେ କେହି
ସହସା ଉଡ଼ିବ ପ୍ରାଣ
ସାଗର ସେପାରି ପାର ହୋଇଗଲେ
ଯେତେ ହାଣିବାର ହାଣ ॥ ୩୧ ॥

ସଉଦା ବଜାରୁ ସରିବ ମୋର
ସଉକି ମୋର ନାହିଁ ଦରକାର
ସାରା ସଂସାରେ ପତାକା
ସଡ଼କ ଘାଟରେ ଛାଟି ଉଡୁଥାଉ
କିପାଁଇ କରିବି ଶଙ୍କା ॥ ୩୨ ॥

ହଇରାଣ କିପାଁ ହୋଇବି ମୁହିଁ
ହାଇ ମାରୁଥିବେ ଭଗାରୀ ଚେଇଁ
ହାର ମାନିଲି ତା' ତୁଲେ
ହବାର ଯା ହେଲା ନୋହିବା ନୋହିଲା
ହଟ ହଟା ଲେଖା ଭାଲେ ॥ ୩୩ ॥

କ୍ଷମା ଦେବୁ ମୋର ଭ୍ରମରେ ମାତ
କ୍ଷୋରରେ ଚଞ୍ଚଲେ ଘଞ୍ଚାଲେ ଚିତ୍ତ
ଖିଆଲ ନାହିଁ ମୋ' ଭାଷା
କ୍ଷୀତିରେ ଭାରତୀ ଜଣେ ନୁହଁ ଗଣା
ଲେଖକ କୁଞ୍ଚିବେ ନାଶା ॥ ୩୪ ॥

●●●

## ତାଲ- କହରବା:-

## ପହିଲି

ଚଷା ଭାଇରେ..... ଲଙ୍ଗଳମୁଠି ଧର

ଭଲକରି.... ଆଛାକରି.... ଟାଣ କରି

ଈଷାଣ କୋଣୁ କଳା ବଉଦରେ.....

ଈଷାଣ କୋଣୁ କଳା ବଉଦ ଘୁମୁରେ ବାରବାର

ଭଲକରି....ଆଛାକରି.....ଟାଣ କରି ଲଙ୍ଗଳ ମୁଠି ଧର ॥ପଦ॥

କାଦୁଆ ହଲେ ବାଦୁଆ ମାଛରେ.....

(ତୋର)କଳା ରକତ ନେଉଛି ଶୋଷିରେ-

କଣ୍ଟିକୁ ଛାଡ଼ି ତାକୁ ଚାପଡ଼େ ମାରି ଭୋଳ ମାର ତର୍‌ତର

(ତେଣେ) ଝଟ୍ କରି ଲଙ୍ଗଳ ମୁଠି ଧର... ॥୧॥

ଗୋଟି ଗୋଟି ଗଛ କିଆରି ସାଜିଦେ

ହାତେ ମୁଠୁଣି କେ ତୋର

ଦୂବ ହେବ ଦାରୁ ପକ୍ଷକ ମଧ୍ୟରେ

ତାଟକା ହେବ ସଂସାରେ- ମୂଲିଆ

(ତୋର)ପୁଲକି ଉଠିବ ହିଆ,

ସେହି ମାତ୍ର ସାର ଭୋଗ ଅନ୍ୟତର

ନଥିବ ଧାତା ବିଚାରରେ- ମୂଲିଆ

ସେ ତୋ' କରମ ଲେଖନ ଗାର ॥

ଫେରି ଆସିବ ତୋ ରୁକୁଣା ରଥଟି

ଅଣ୍ଟା ଭିଡ଼ି କାତ ଧର ଆଣ୍ଟେ

ତଣ୍ଟି କାତ ଧର ଆଣ୍ଟେ

ତଣ୍ଟି କଟା ଖଣ୍ଡ ଯେତେ ଘାଣ୍ଟିବେ ହେଲେ

ନମିଶିବେ କେଭେ ତୁମ ମେଣ୍ଟି ॥

ଦେଖିବ ଦୁନିଆ ହରବର ତାଙ୍କ

(ଖାଲି)ଢାଳୁଥିବେ ଅଶ୍ରୁଧାର ॥୨॥

●●●

## ଜନମିଲେ ତୋ' କୋଳରେ- ବୃତ୍ତେ

ଯେତେଯେତେ କହିଲେ ମୋତେ ଜନନୀ ତୋର ଅଗ୍ରତେ
ଗୁହାରି କରେ ସନ୍ତତେ ନଶୁଣୁ କର୍ଣ୍ଣେ
ତୁମ ପାଇଁ ଜଣେ ପଣେ ରଣେ ବଣେ ଅନୁକ୍ଷଣେ
ଜୟମଣେ ଏବେ କୋଣେ ନଚାହିଁ ଏଣେ
ଯାହା ଛନ୍ଦ ଗ୍ରାସେ ମୁଁ ଜାଣେ
ଘୋର ସଂକଟ ବେଦନା ଭୋଗାଏ ପ୍ରାଣେ ॥
ଦୁଷ୍କୃତ କରିଲା ଗ୍ରାସ ଭୋକ ଶୋଷ କରି ଶେଷ
ଚଉକ ତୁମ ଭଡ଼ା ବାସ ହେଉଛି ନାଶ
ବାସ ମୋ' ହେଲା ବିନାଶ କୃଶ ହୋଇ ଅଛ
ଶେଷ ହେଉ ମୋ ଆୟୁଷ ଛାଡ଼ି ନଯିବି
ପାଶ ମୋର ଅଛି ସାହସ
ଭାଷନ୍ତୁ ଭସାନ୍ତୁ ଜନେ ଦେଇଣ ତ୍ରାସ ॥
ଦାସର ଦାସ ବିନାଶ ହେଲେ ଲଭିବ କି ଯଶ
ଘୋଷଣା ହେବ ଦେଶ କିବା ବିଦେଶ
ଫାସ ବେଢ଼ି ଅଙ୍ଗଦେଶ ପକାଇ ତଟିନୀ ପାଶ
ଧସାଇ ଠେଲନ୍ତି ଅରି ଦେଖି ଯା ଆସ
ଏ ସବୁଟି କାହାର ଦୋଷ
ତୁମ ବିନା ଅଛି କାର ଏଡ଼େ ସାହସ ॥

### ତାଳ:-ଆଠତାଳି ଭୈରବ

ଦୁଃଖ ଦେଲ ଯେବେ ପରାଣେ ମୋର
ସୁଖ ଦେବତା ମୋର ସୁଖରେ ଥାଅ
ବେଦନା ଭରା ମୋର ଅଙ୍ଗକୁ ଜାଳି
ଚିତା ଭସ୍ମ ବାରେ ଲଲାଟେ ବୋଳି ॥୧॥
ଅନାଗତ ଅନ୍ଧ ପଟଳି ଭିଡ଼ିଛି
ଛନ୍ଦା ଚରଣରେ ଆଶ୍ରୟ ଲୋଡ଼ିଛି
ଦୁରୁଗମ ପଥ ଚାଲିଚାଲି କ୍ଳାନ୍ତ
ଅବଶ ଲାଗଇ ଧର ବାରେ କର ॥୨॥



# ବାରମାସୀ-ଚଷା

## ବରଜରାଜ ତନୁଜ

ଚଷାପୁଅ ଯଶା ଯେବେ ଫେରିବ ଆସି
ରୁଷି ଶୋଇଲେ ତୋ'ର କେ ଯିବ ବେଉସି
ଲଙ୍ଗଳ ମୁନରେ ମନ ଲଗାଇ ଦେଇ
ବଇଶାଖ ମାସ ଖରା ଯାଅରେ ସହି ॥୦॥
ଜ୍ୟେଷ୍ଠ ମାସେ ବିହନ ବିଞ୍ଚରେ ବାପଧନ
ଆଷାଢ଼େ ଅଷାଢ଼ୁଆ ଗାର ଦିଅ ଯତନ
ପକ୍ଷେ କଟାଇ.....          ଜାଆଁଳ ଦେଇ
ଶ୍ରାବଣରେ ବଛା ପାଇଁ ଯାଅରେ ବସି ॥୧॥
ଭୋଦେଇ ଡହକ ପାଣି ଦିଅ ତୁ ହାଣି
ମୂଳ ଶୁଖା କର ପର କଥା ନଶୁଣି
ଆଶା ଅଶିଣ ପାଣି ରଖ ଆକଟେ ଟାଣି
ତୁଳେ ବାଲୁଙ୍ଗା କାଟି ତିଳେ ନ ରଖ ସେଠି
ମାର ତୁ ଭୋଳ...... ନକାଟି କାଳ
ଚଞ୍ଚଳା ମଗୁଶୁରରେ ପଶିବ ଆସି ॥୨॥
ପୁଷୁମାସେ ଖୁସି ହୋଇ କାଟ ତୁ ଧାନ
କ୍ଷେତେ ବୁଣି କର୍ମେ ଦାଇ କଥାଟି ଘେନ
ମାଘମାସେ ସେ ତୋ' ଖଳା ପୂଜି ପକା ବେଙ୍ଗଳା
ଆସୁଛି ଆଗେ ଦୋଳା ଅବିରେ ହେବୁ ବୋଳା
ଖେଳେ ମାତିବ...... ବେଳ ନଥିବ
ଚଞ୍ଚଳେ ସାଇତି ଦେଇ ଯାଅରେ ବସି ॥୩॥
ଫଗୁଣେ ନିଜ ଛପର ଦିଅ ତୁ ଝାଡ଼ି
ଲିପାପୋଛା କରି ଘର ରଖ ସଜାଡ଼ି
ଚଇତେ ଚଇତାଳି ଗାଇମାରରେ ତାଳି
ସାଇତା ଧନକୁ ତୋ' ସଞ୍ଚ ଆଗକୁ ଭାଳି
ତୋ' ପରିଜନ...... ସୁଖେ କାଟିବେ ଦିନ
ସୁନା ସଂସାର ତୋହର ଉଠିବ ହସି ॥୪॥

●●●

## : ମଥୁରା ଯାତ୍ରା :

ଗଳା ହାର ଛାଡ଼ି ଯିବ କାହିଁ
ଚିତ୍ତ ଚୋରା ଛାଡ଼ି ଯିବ କାହିଁ
ଗଳା ହାର......... ହୃଦ ହାର
ମନ ମନ୍ଦିରେ ବେଦନା ଦେଇ ॥୦॥
ଉଆଁସ ରେଖା (ଗୋପୀ)ପରାଣ ସଖା
ବରଜ ବଜାର ମାଧୁରୀ
ଗଲେ ମଧୁପୁରୀ- ଗଳେ ଦେଇ ଯାଅ ଛୁରି
ସୁଧାରେ ମହୁରା ନ ଯା କେଭେ ଭରି
ଆମ୍ଭ ଗରବ ହାରି ସରବ ଅରି ଅନ୍ତର ଫଟାଇ
ତୁମେ ନଯାଅ ହସାଇ ॥୧॥
ଆରେ କ୍ରୁର ଅକ୍ରୁର (ତୋ'ର) ଧରୁଛୁ ପୟର
କ୍ଷୀର ତୁ ଘେନିଣ ଫେର କଂସପୁର
ତୁଳାଇ କହ ଛାମୁରେ ସମୂହ ମିନତି ରଖିବାରେ
ଆମରି ପାଇଁ ॥୨॥
(ତୁମେ) ନ ଛାଡ଼ିଲେ କାହ୍ନୁ ଯିବ ଜୀବ ତାଙ୍କ ବିନୁ
ରଥ ଚକ୍ରେ କାଟ ଆଗୁ ଆମ୍ଭ ତନୁ ।
ଦେଖୁ ତୋ' ନେତ୍ର ଆମ୍ଭେ ହେଉ ପବିତ୍ର ଦୁନିଆ ବିଚାରେ କହୁ
ମଲୁ ଯା ପାଇଁ ॥୩॥
ହୋଇ ବଂଶଧର ଛାର କଂସ ଡ଼ର-
ପାଇଁ କରୁ ଅଛୁ ଅଧର୍ମ ବିଚାର
କହୁଛୁ ସତ ସାରିବୁ ମହତ ଗୋପାଳ ମାନେ କିସ
କରିବେ ଥାଇଁ ॥୪॥

•••

## ତାଳ-ଖେମଟା, ସ୍ୱର- ଭଟିଆଲି

ଉଉଳା ଚାନ୍ଦ......ଉଠି ଆରେ
ଗହଳ ଲତା ବିତାନେ ଲୁଚି ବାରେ ଚାହାଁରେ ॥
ସଞ୍ଜୁଆ ସମୀର- ହୋଇ ତରତର
ପରଶି ଯାଉଛି ଆସି ବାତାୟନ ଦୁଆରେ ॥
ସେନେହ ଶିଶିର- ପତରେ ପତର
ଢାଳୁଛି ଅମୀୟ ସୁଧା ବାରେ ଚାଖି ଯା'ରେ ॥
ରଜନୀଗନ୍ଧାଟି- ହସି ଯାଏ ଲୋଟି
ଦରହାସ୍ୟ ମଲ୍ଲୀରାଣୀ ତୁଲେ ମିଶି ଯା'ରେ ॥
ଦୂର ପ୍ରିୟ ଭାଷା କହି ହର ତୃଷା
ଆଶାର ଶେଯ ସଜାଣ ମୋର ଦେଖି ଯାରେ ॥

●●●

## ତାଳ :- ଖେମଟା

ପୂଜା କରିବାକୁ ଆଜି ଉଜାଗରେ ଅଛି ବସି
ସଜାଏ ଆରତୀ ଥାଳି ଚେତାଏ ଦୀପାଳି ରାଶି ।
ଗଲାପଥ ଅନୁସରି ନୟନୁ ବୁହାଏ ବାରି
ପଲକ ପାତିଲା ବେଳେ (ଖାଲି) କୁହୁକେ ଯାଉଛି ଭାସି ॥
ଚେତାଏ ମନ୍ଦିରେ ମୋର ଝଙ୍କାର ବୀଣାର ତାର
ଉଗାରି ଶାୟକ ମାରି କେତେ ଗୀତି ଗଲା ଭାଷି ॥
ଆସନ୍ତେ କି ଚିରସାଥି ବନ୍ଦାନ୍ତି କରି ଆରତୀ
ପୟରେ ପନିର ଢାଳି ପଣନ୍ତେ ପୋଛନ୍ତା ଦାସୀ ॥
ମରମେ ମରମେ ମୋର ଆଙ୍କିଯାଏ ବାରବାର
ସରମେ ନଢଳା ଆଉ ସଦା ହୋଇ ପରବାସୀ ॥

●●●

## ତାଳ:- କଓ୍ୱାଲି

ଜନନୀ ପଦ କଞ୍ଜେ ଦୟିନୀ
କରି ଭୋଗେ ମୁଁ ଦିବା ରଜନୀ
ବେଦନା ଭରା ଜଳା ମନ୍ଦିର
ଜଳେ ହୁତାସେ ମନା ନମାନି ॥

ଯାତନା ମନା ନହେଲା ମୋର
ପୂରିଲା ନାହିଁକି ? କାମନା ତୋ'ର
ଶିଶୁ ସଂସାରୁ ଚାଲିଛି ଧାର
ବଜାଇ ବାଜା ତାଥିନି ଥିନି ॥

କହିଲି ସତ ଅସତ ଅସ୍ତ
କରି ଚାଲିଲି ନିଛାଟ ପଥ
ପୋଛିଲି ନେତ୍ର ବିତଝରଣା
ବିଚାରେ ତୁହି ହେଲୁଯା ତୁନି ॥

ଡାକିଲି ଯେତେ ଅନ୍ତର ଖୋଲି
ମରଣ ଧାଏ ପାହାଡ଼ ଠେଲି
ଶରଣ ଯେତେ ଗଲି ପଣତେ
ଟାଣେ ମୋ' କର ବେଗେ ମାଗୁଣି ॥

## ତାଳ ॥ ଏକତାଲା

ଛନ୍ଦା ଚରଣର ତୁଳସୀ ମଞ୍ଜରୀ-
ପୂଝାରି ମୋ' କରେ ଦିଅ ହେ
ଚାତକ ଅଧରେ ପନିର ପରଶି
ପାନକେ ଶାଥିଳ କର ହେ ॥

ମନ୍ଦିର ତୋରଣେ ଲୋଲୁପ କୋଣେ
ଚାହିଁ ବସିଅଛି ମୁଁ ଅନୁକ୍ଷଣେ
ମୂକ ଦେବତାର ମୁଖ ଖୋଲା ବାଣୀ
ଜଣା କରି କାନେ ଶୁଣା ହେ ॥

●●●

## ତାଳ:- କଓ୍ୱାଲି

ମୁକୁଳା ମନ୍ଦିରେ ଉଛୁଳା ସରାଗେ
ପୁଝାରିଣୀ ମୁହିଁ ଆସିଛି ଗୋ ଧାଇଁ
ଶୟନେ ସ୍ୱପନେ ଲୋଡ଼େ ଅଭିରାମେ
ନୟନେ ଗୋଚର ମୋହରି ହେବଇଁ ॥୧॥

ଅଭୀଷ୍ଟ ହେ ତୁମେ ମୋର
କରିଛି ବେଳହୁ ସାର
ସାଜାଡ଼ି ଆଣିଛି ଅଜାଡ଼ିବି ଅର୍ଘ୍ୟ
ମୋ' ମନ ବଜାରେ ତୁମେ ତ ବେପାରୀ ॥

ବେଦନା ଭରା ମୋ' ପ୍ରାଣ.....
ଭେଦ କଲେ ମିଳି ଜାଣ
ବେଉଁତି ବା କେତେ ଦେଖାଇଛ ନେତ୍ରେ
ମୋ' ବେଳକୁ ଶୁଖି ଯିବକି ତୁମରି ॥

ଭଗାରୀ ଦାଣ୍ଡେ ନହସା....
ଭୟ ଲାଗେ ତାଙ୍କ ଭାଷା
ଆଶା ଦୀପ ମୋର ନ ଲିଭାଅ କେଭେ
ଚରଣ ରେଣୁର ଭିକାରୁଣୀ ମୁହିଁ ॥

## ତାଳ:- କଓ୍ୱାଲି

ତୁମେ ଥିଲ ପ୍ରିୟ ବସନ୍ତ କୋକିଳ
ନନ୍ଦନ କାନନ ପାରିଜାତ
ତୁମେ ଥିଲ ଦିନେ ମନ୍ଦିର ଦେବତା
ହତାଦର କରି ନ ଆସିଲ ॥

ତୁମରି କରୁଣା ପାଇଁ ମୋ' ପରାଣ
ନିରବେ ବୀଣାଟି କାନ୍ଦେ ଅନୁକ୍ଷଣ
ତୁମରି ବାହୁଡ଼ା ପଥ ଅନୁସରି
ନୟନୁ ଗଡ଼ାଏ ନୀର ଧାର ॥

ତୁମ ଲାଗି ଦିନେ ବାମଦେବ ପୂଜି
ପୂଝାରିଣୀ ବେଶେ ଚିତ୍ତଥିଲା ମଜି
ମୁଁ କରେ ତୁମକୁ ମୋର ମୋର ବୋଲି
ତୁମେ ତ କରୁଛ ସାତପର ॥

●●●

## ଜଣାଣ

(ବୁଢ଼ୀ ବଢ଼ି ମରୁଡ଼ି ତିନି ଚାଅ କଖାଇ ପଞ୍ଚ କରନ୍ତି ନିତି- ବୃତ୍ତେ)

ଜଗତର କରତା ବୋଲି ଉଡୁଅଛି ମିଛେ ବିଜୟ ବାନା
ଗଲା କହି ଯେତେ ପୁରାଣ ମୋ' କାନେ
ଶୁଣି ଶୁଣି ମୋତେ ଲାଗେ ଛାନିଆଁ ।।ପଦ।।
ତନୁଜାନି କେତେକ ତୋର
ଥୁଆ ତାଙ୍କ ସୁନା ସଂସାର
କେତେ ରେଣୁ ରେଙ୍କା ଗାରଧାର ବଙ୍କା
ଭୋଗୁଥାନ୍ତି ସଙ୍ଖ୍ୟା ଦୁଃଖ ଯାତନା ।।୧।।
କେହୁ ଡାକି ଶୁଖାଏ ତଣ୍ଡି
କେହୁ ଫାଙ୍କି ବୋଲାଏ ଖାଣ୍ଟି
ଗଣ୍ଡିଧନ କେହୁ ଭୋଗୁଥାନ୍ତି କାହା
କାହା ଉଦରରେ ତିନ୍ତିଲା କନା ।।୨।।
(କାର) ସୁନ୍ଦରରେ ଚହଟେ କାନ୍ତି
ଚାହଁକାକୁ ମାଡ଼ଇ ବାନ୍ତି
ଚିନ୍ତାକଲେ ବସି ନିରୋଳା ଚିତ୍ତରେ
ନିଜପାଇଁ ହେଲା ସଂସାର ମନା ।।୩।।
ଡରେ କେହୁ କାହାକୁ ଦେଖି
ବରେ କେହୁ ବୁଲାଏ ଆଖି
କାହା କ୍ଷମତାରେ କେହୁ ଜଳି ପୋଡ଼େ
କିମ୍ବା କରୁଅଛୁ ଅବୁଝା ବଣା ।।୪।।
(କାର) ଚଟାଣରେ ଚାଲଇ ଗାଡ଼ି
(କେହୁ) ଭେଡ଼ା ହୁଡ଼ା ପଡ଼େ ହାବୁଡ଼ି
ଆକାଶେ କେ ଉଡ଼େ ଗରଜି ଘୁମୁରି
ସରଜି କେ ଅଛି ତୁମରି ବିନା ।।୫।।

ଦୋଷୀ କେହୁ ହୁଏ ଖଲାସ
(ତେଣେ) କାରାଗାରେ ନିର୍ଦ୍ଦୋଷୀ ବାସ
ଚାଲିଛି ଦୁନିଆ ମିଛର ଶାସନ
ସତରେ ଚାଲିଲେ କଣ୍ଟା ଭାବନା ।।୬।।

କାଳ ବଳେ ଏ ରୂପେ ମୁହିଁ
ଆରତର ଧାରେ ପଡ଼ଇ
ବାଢ଼ୁଛି ମିନତି ବାରବାର ପଦେ
କରୁଣା କଣିକା ନକର ମନା ।।୭।।

●●●

## ଜଣାଣ

(ତାଳ:- ଏକତାଳା)

ଦୁନିଆରେ ଜଣେ ନାହିଁ କେ ଗରିବ
ମୋ' ତଳ ମଣ୍ଡିବା ପାଇଁ
ବଞ୍ଚିତ କଲ ସବୁଥିରୁ ଯେବେ
ରଖ ପଦ କଂଜେ ନେଇ ।।
ଜଣା ଶୁଣା ବୋଲି ହୁଏ ମୁଁ ସଂସାରେ
ଅପରାଧୀ ନାମ ବହି....
ଅରି ଅହନ୍ତାରେ ଲିଭୁ ମୋ' ଦୀପାଳି
(କିନ୍ତୁ) ମରଣର ହୁଅ ଦାୟୀ ।।
ଯଶ ବାନା ଉଡୁ ସଡ଼କ ଘାଟରେ
ଆରତୀ ପତନ ଧ୍ୱନି....
ସୁନାଖିଲମରା ଦନ୍ତ ଅଟ୍ଟହାସି
(ମୋର) ପରାଣ ନଦିଅ ଦହି ।।
(ଆହେ) ଗରବ ଗଂଜନ ସରବହରା ମୁଁ
ପରଖ ନକର ରହି
ସରପର ବିଷ ଢାଳିଲା ମୋ' ତନୁ
ନ ପାରିବି ଆଉ ସହି ।।

●●●

## ଜଣାଣ

ତାଳ:- କାଶ୍ମୀର ଖେମଟା
(ଚଷା ଜନ୍ତାରେ ମୂଷାଟି ପଡ଼ିଲା):- ବୃତ୍ତେ

ତୁମ ସଂସାରେ ଯେବେ ଜଣେ ମୁଁ
ହରି କର ତରଣୀରେ ପାରି
ଏ ଜଗତ ସାରା ଅପବାଦ ଭରା
ସହୁଛି ମୋ' ଶିର ପାରି
ଅରି ଚାତୁରି..... ଗଲା କତୁରୀ
ବୁକୁ ବେଦନା ହେଉଛି ଘାରି.... ॥୧॥
ବଞ୍ଚିତ କଲ ସବୁଥିରୁ ଯେବେ
ଦିଅ ପାଦ କଂଜେ ରା....ହା
ଲାଞ୍ଛିତ ତବ ଆଜନ୍ମ ସେବକ
ନାହିଁକେ ଜଗତେ ସାହା
କରେ ବିନତି..... ଶୁଣ ମିନତି
ଆହେ ଯୋଗୀ ଜନ ଚିତ୍ତଚୋରି.... ॥୨॥
ଲକ୍ଷେ ଯୋଜନରୁ ଡାକ ଦେଲା କରୀ
ପାରିଛ ଉଧାର କରି
ଭାରି ହେଲା ଯେବେ ମୋର ଗୁରୁ ଭାର
ପକାଅ ବିନାଶ କ......ରି
ଅଛି ହାଜର..... ପକା ବଜର
ନାମ ଜଗତରେ ପଡୁ ହୁରି...... ॥୩॥
କାନନ କୁରୁଙ୍ଗୀ ହୋଇ ଶିଶୁ ସଙ୍ଗୀ
କ୍ରୀଡ଼ା କରନ୍ତେ ପ୍ରାନ୍ତର
ପଡ଼ିଲା ବିପତ୍ତି ଡାକେ ଯଦୁପତି
ପଲକେ କଲ କି ମନ୍ତର
ହେଲା ଅନ୍ତର..... ମୁଁ କି ମାତର
ଆହେ କଉସ୍ତଭମଣି ଧାରୀ..... ॥୪॥

ପାଞ୍ଚାଳୀ ଘଞ୍ଚଳା ସହି ନପାରିଲ
ବଞ୍ଚାଇଲ ବାସ ଦେଇ
        ଅଞ୍ଚଳ ମୋ’ ଭାଗେ ନପଡୁଛି ବୋଲି
        ଫିରାଦ ନକରେ କାହିଁ
ମାଗେ ଏତିକି.....        ନିଅ କତିକି
        ଜୀବ ଯାଉ ତୋ’ ନାମ ସୁମରି..... ॥୫॥

●●●

## ଜଣାଣ

ତାଳ- କହରବା

ବିଶ୍ୱ କଲ୍ୟାଣମୟୀ ବିଶ୍ୱେ ନାହୁଁ କି ତୁହି
        ଦୁଃଖ ଶୁଣିବା ପାଇଁ
        ମୁଁ ଯେ ଆସିଛି ଧାଇଁ
ବେଦନା ଭରା..... କଣ୍ଠ ନାଦେ
        ଆରତ ଅରଘ ଢାଳେ ଅଶ୍ରୁବାରି..... ॥ପଦ॥
ମଶାଣି ବୁକୁ ମରଣ ଡାକ
ଶୁଭୁଛି କାନେ କାନେ ନେବ ପଗଡ଼ି
        ଆଉ କେତେ ଦିନକୁ
        କେତେ ସମୟ ପାଇଁ
                ମୋତେ କାଳୁଛି ତୁହି..... ॥୧॥
ଠିକେ ଜଣାଏ ତ୍ରିତାପ ଭାରି
ଅଧୀର ପରାଣ ଧୀରେ ନିଅ ନିବାରି
        ମୋର ଭୟରୁ ଭକ୍ତି
        ଭକ୍ତି କରାଏ ମୁକ୍ତି
        ଶକ୍ତିରୂପିଣୀ ଶକ୍ତି
                ମୁକ୍ତି ଦିଅ ମୋ’ ପାଇଁ.... ॥୨॥

●●●

# ଜଣାଣ

ଜନମିଲେ ତୋ କୋଳରେ- ବୃନ୍ଦେ

ବ୍ରହ୍ମ ବାଦିନୀ ଜନନୀ ଥାଉଁ ହୁଏ ହୀନିମାନ
ବସନ୍ତ ପଞ୍ଚମୀ ଆଜି ଶେଷ ଦୟିନୀ
କେତେ ଅତୀତ ସନ୍ତାନ ରଖି ତାହାଙ୍କ ସମ୍ମାନ
ଧରା ତଳେ ଖେଳାଇଲୁ ହୋଇ ପ୍ରସନ୍ନ
ମୋ' ବେଳକୁ ଯାଉଛ ଶୁଖି
ଡାକ ନଶୁଣିଲେ ନାଶ ଯିବ ତୋ ଦୁଃଖୀ ।।
ନୟନ ଦୀପାଳୀ ଜାଳି କେତେ ନିଶି ଭାଳି ଭାଳି
କାନ୍ଦି ପକାଏ ଆନନ ଶୁଭେ କାକଳି
ବଳି ହୁଏ ଶ୍ରୀଚରଣେ ଲୋତକ ଭରା ନୟନେ
କେତେ ସୁନେଲି ପ୍ରଭାତ ଗୁହେ ମୋଉନେ
ଦୀପିକାରେ ଜଣାଇ ଦେବି
ଦରବାର କହି ଅବା ଫିରାଦ ହେବି ।।
ତଟ ନପାଇ ହତାସେ ଯାଏ ଭାସି ଖରସ୍ରୋତେ
ଭଉଁରୀ ମଧ୍ୟେ ପଡ଼ିଣ ଡାକେ ଆରତେ
ନଶୁଣିଲେ ମୋ ଗୁହାରି ହୁରି ଛାଡ଼ିବି ସେପାରି
ତୋ' ଗେହ୍ଲା ସନ୍ତାନେ ଶୁଣି ନିନ୍ଦା କରିବେ
ଅପଯଶ ବାନା ଉଡ଼ିବ
ଧରା ତଳେ ଆକୁଳରେ କେବା ଡାକିବ ।

●●●

## ବୀଣାପାଣି ଜଣାଣ

### ତାଳ:- ଖେମଟା- କୀର୍ତ୍ତନ

ନମଃ ତନ୍ତ୍ରୀ ଧାରିଣୀ ମନ୍ତ୍ରଦାୟିନୀ ବିଶ୍ୱଜନନୀ ଗୋ
ଦୀନ ତନୁ ଜାନି ହୋଇ ଅଭିମାନୀ ଲୋଟେ ଏ ଅବନୀ ଗୋ
ନାହିଁ ତପୋବଳ କରିବି ସନ୍ତୋଷ
ତବଗୁଣ ମୋର କରେ ସର୍ବନାଶ
ତାପିତ ପ୍ରସାର ଅପସାରି ବାରେ
ଦିଅ ଦିବ୍ୟ ଜ୍ଞାନ ଗୋ..... ॥୧॥

ନ ଜାଣଇ ପୂଜି ଶ୍ରୀଚରଣେ ତୋ'ର
ନାହିଁ ମୋର ପାଶେ ପୂଜାର ସମ୍ଭାର
ଗମ୍ଭୀର ହୃଦୟେ ମା, ମା, ଡାକି
କଟାଏ ଯାମିନୀ ଗୋ..... ॥୨॥

ବରପୁତ୍ର ନୁହେଁ କରି ବଇଁଦା
(ଖାଲି) ହରବର ପ୍ରାଣ ଲୋଡ଼େ ଭାବି ଭାବି
ଗୋଟା ପୁଷ୍ପାଞ୍ଜଳି ଘେନିବ କି ମୋର
ପତିତପାବନୀ ଗୋ..... ॥୩॥

ନାହିଁକରେ ବଳ ଉଦ୍ଧାରିବି ଜଳ
ବିକଳେ ଡାକଇ ରଖ ଆଦିମୂଳ
ବେଳବୁଡ଼ିଯାଏ ପଶ୍ଚିମ କୋଳରେ
ତରି ଆସ ଧରି ଗୋ.... ॥୪॥

●●●

## ।। ଭଜନ ।।

### ଭଜରେ ଭଜରେ ଭଜ- ବୃତ୍ତେ

ଭଜମନ କଳାକାହ୍ନୁ କଉସ୍ତୁଭଧାରୀଙ୍କୁ
ବ୍ରଜବାଳୀ ଗଳାମାଳୀ ଅଘାବଳା ଅରିଙ୍କୁ ।।
ଶଙ୍ଖ, ଚକ୍ର, ଗଦା, ଧର- ଭବସିନ୍ଧୁ କର୍ଣ୍ଣଧାର
କୁବୁଜା ପ୍ରାଣ ବାନ୍ଧବ ଶିବ ମନୋହାରୀଙ୍କୁ ।।
ଜଗବନ୍ଧୁ ଜଗନ୍ନାଥ କଂସାରି ଦେବକୀ ସୁତ
ଯଶୋଦା ନେତ୍ର ସଂପଦ ଯୋଗୀ ଚିତ୍ତଚାରୀଙ୍କୁ ।।
ମୂରଲୀଧର ସୁନ୍ଦର ଗୋପୀଜନ ଚିତ୍ତ ଚୋର
ରାଧିକା, ପ୍ରେମ ଶେଖର ଦୁଃଖୀ ଦୁଃଖହାରୀଙ୍କୁ ।।
ଗୋବର୍ଦ୍ଧନ ଗିରିଧାରୀ ରାଜିବ ଲୋଚନ ହରି
ବୃନ୍ଦାବନ ବନଚାରୀ ଗତିମୁକ୍ତିକାରୀଙ୍କୁ ।।

### ତାଲ:-କହରବା

ଉଆଁଶ ନିଶୀରେ ନିଶିବଦେ ତୁମେ
ମନ୍ଦିରେ ଦୀପାଳି ଜାଳିବ କି !
ଉଣା ସବୁଥିରୁ ହୋଇଛି ଦାୟିତ
ଇତର ନ ମଣି ତୋଷିବ କି ! ।।୦।।
ନାହିଁ କେ ସାଥେ ନିଛାଟ ପଥେ
ପରି ଗପ ଦେଇ ନ ମାର ମୋତେ
କିଣା ଜନ ଦିଆ ସେନେହ ଅରଘ
ସାଦରରେ ପ୍ରିୟ ଘେନିବ କି ! ।।୧।।
ବନ ପରିଜାତ ଗୁନ୍ଥିଛି ସଜାଡ଼ି
କରେ କର ଛନ୍ଦି ପକାଇବ ଭିଡ଼ି
ହୁରି ଛାଡ଼ିବଇଁ ନିରିମମ ବୋଲି
ଦାଣ୍ଡରେ ସୁନ୍ଦର ହୋଇବ କି ! ।।୨।।

## ଏକତାଲା

### ତାଳ:- ଆଠତାଳି

ଜନନୀ ଗୋ ମୋର ଅଞ୍ଜଳି ଚରଣେ ସାଜିବ କି ?
ଖୁଣ୍ଟା ବାସି ଫୁଲ ଗୁନ୍ଥା ଗୋଟା ଗୋଟା
ଶାଦରେ ମୋ' ସେବା ଘେନିବ କି ?
ଆବର ଝୁଣା କୋଳି
ପତ୍ର ଆଣିଛି ତୋଳି
ପୂଜିବି ଦୁର୍ବାଦଳେ
ଲୁଚିବି ତୋ'ର କୋଳେ
ତୋ'ର ପଣତ ଅନ୍ତରାଳେ ଢାଙ୍କିବୁ କି ?
ଘେରିଏ ପାପ ରାଶି
ଘାଉଲା କଲେ ପଶି
ଘୋର ଦୁର୍ଦ୍ଦଶା ରାଶି
ଘେନେ ପରାଣ ନାଶି
ଘଣ୍ଟ ଘୋଡ଼ାଇ ପାଶେ ରଖିବୁ କି ?
ଚଣ୍ଡ ମୁଣ୍ଡ ପରି
କେତେ ଯେ ଭଣ୍ଡ ଥିଲେ
ଅଖଣ୍ଡ କୀରତି ମହୀରେ ରଖିଗଲେ
ଏ ମଥା ଲୋଟା ଦାସକୁ ତେଜିବୁ କି ?

●●●



ଖାଙ୍କଡ଼େଶ୍ୱର
ମୁଖ୍ୟ ବିଗ୍ରହ



ମହନ୍ତ ସଦାଶିବ ଭାରତୀଙ୍କ
ସମାଧି ଭିତର ପାଖ

ମହନ୍ତ ପରଂପରା:-

୧. ମହନ୍ତ ସଦାଶିବ ଭାରତୀ ଗୋସ୍ୱାମୀ

୨. ମହନ୍ତ ଗରିବ ଭାରତୀ ଗୋସ୍ୱାମୀ

୩. ମହନ୍ତ ଦେଓ ଭାରତୀ ଗୋସ୍ୱାମୀ

୪. ମହନ୍ତ ପୁରୁଷୋତ୍ତମ ଭାରତୀ ଗୋସ୍ୱାମୀ

୫. ମହନ୍ତ ହରିହର ଭାରତୀ ଗୋସ୍ୱାମୀ

୬. ମହନ୍ତ ବୃନ୍ଦାବନ ଭାରତୀ ଗୋସ୍ୱାମୀ

୭. ମହନ୍ତ ଲୋକନାଥ ଭାରତୀ ଗୋସ୍ୱାମୀ

୮. ମହନ୍ତ ପୂର୍ଣ୍ଣଚନ୍ଦ୍ର ଭାରତୀ ଗୋସ୍ୱାମୀ

୯. ମହନ୍ତ ନବକିଶୋର ଭାରତୀ ଗୋସ୍ୱାମୀ

୧୦. ମହନ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ.....



# ସଂପାଦକୀୟ



ବର୍ଷାଣାଂ ଭାରତ ଶ୍ରେଷ୍ଠଃ ଦେଶାନାଂ ଉତ୍କଳସ୍ମୃତଃ

ଉତ୍କଳସ୍ୟ ସମଂ ଧେଶ ଦେଶ ନାସ୍ତି ମହୀତଳେ । (କପିଳ ସଂହିତା)

ମହାନ୍ ଭାରତବର୍ଷ ସମଗ୍ର ପୃଥିବୀରେ ପୁଣ୍ୟଭୂମି ଭାବେ ଆଖ୍ୟାତ । ତନ୍ମଧ୍ୟରେ ଉତ୍କଳ ଦେଶ (ପ୍ରଦେଶ) ଅପୂର୍ବ ତୀର୍ଥସ୍ଥଳୀ ସମନ୍ୱିତ ଅତଏବ ଉତ୍କଳ ସମ ତୀର୍ଥ ଭୂମି ଅନ୍ୟତ୍ର ଦୁର୍ଲଭ । ପୂତ ସଲିଳା ନିମ୍ନଗା, ଯୋଗୀ ଋଷି ସିଦ୍ଧ ତପସ୍ୟା କ୍ଷେତ୍ର ବନ, ଅରଣ୍ୟ, ପର୍ବତରାଜି, ନଦୀ- ସାଗର ସଂଗମ ମୁନିଋଷି ଆଶ୍ରମ ଉତ୍କଳର ଆଧ୍ୟାତ୍ମିକ ପରିମଣ୍ଡଳକୁ ପରିପୁଷ୍ଟ ତଥା ସମୁନ୍ନତ କରିଛି ।

ପ୍ରଚାର- ପ୍ରସାର ବିମୁଖତା ହେତୁ ଏବେ ମଧ୍ୟ କେତେକ ପ୍ରସିଦ୍ଧ କ୍ଷେତ୍ର ଲୋକଲୋଚନ ଅଗୋଚରରେ ରହିଯାଇଛି । ପ୍ରଗତି ଆଳରେ ଅନେକ ଆରଣ୍ୟକ ତୀର୍ଥସ୍ଥଳ ଧ୍ୱଂସ ହୋଇଯାଉଛି । କେତେକ କ୍ଷେତ୍ରରେ ନୂତନ ଦେବାଳୟ ଆକର୍ଷଣୀୟ ଭାବେ ପ୍ରତିଷ୍ଠିତ ହେବାର ଦୃଷ୍ଟାନ୍ତ ମଧ୍ୟ ଊଣା ନୁହେଁ ।

ଜଗତ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ଆକୁମାରୀ ହିମାଚଳ ପରିଭ୍ରମଣ ପୂର୍ବକ ସନାତନ ହିନ୍ଦୁଧର୍ମର ପୁନଃ ସଂସ୍ଥାପନ କରିବା ସହିତ ହିନ୍ଦୁ ମନ୍ଦିର, ଦେବପୀଠ, ତପୋଭୂମି ଆଦିର ପୁନର୍ବିନ୍ୟାସ କରିଥିଲେ । ଚତୁର୍ଦ୍ଦିଗରେ ପ୍ରମୁଖ ଚତୁରାଶ୍ରମ ପ୍ରତିଷ୍ଠା ଦ୍ୱାରା ସତତ ଆଧ୍ୟାତ୍ମିକ ସଂଦେଶ ପ୍ରେରଣର ପଥ ସୁଗମ କରିଥିଲେ । ତାଙ୍କ ବୈଚାରିକ ସିଦ୍ଧାନ୍ତରେ ଦଶନାମୀ ସଂପ୍ରଦାୟ ଗଠନ କରି ସମାଜରେ ସଦାଚାର, ଧର୍ମୀୟ ବାତାବରଣ ତଥା ସୁସ୍ଥ ସମାଜ ଗଠନର ନବପ୍ରୟାସର ଉଦୟ କରିଥିଲେ । ତାଙ୍କ ପନ୍ଥା ଅନୁସରଣକାରୀ ଶିଷ୍ୟମାନଙ୍କୁ ଦଶଗୋଟି ଗୋଷ୍ଠୀ- ତୀର୍ଥ, ଆଶ୍ରମ, ବନ, ଅରଣ୍ୟ, ଗିରି, ପର୍ବତ, ସାଗର, ସରସ୍ୱତୀ, ଭାରତୀ ଓ ପୁରୀ ପ୍ରଭୃତି ବିଭାଜନ ପୂର୍ବକ ସଂଜ୍ଞମ, ତପସ୍ୟା, ସେବା ସାଧନାର ମାର୍ଗ ନିର୍ଣ୍ଣୟ କରାଇଥିଲେ । ଆମ ଆଲୋଚ୍ୟ ଖଣ୍ଡିତର ମଦନମୋହନ 'ମଠ' ଭାରତୀ ସଂପ୍ରଦାୟ ଅନ୍ତର୍ଗତ ।

ଭାରତୀୟ ସଂସ୍କୃତି ତଥା ସଂସ୍କୃତ ଭାଷା, ଦର୍ଶନ, ଧର୍ମଶାସ୍ତ୍ର ପ୍ରମୁଖ ଆଧ୍ୟାତ୍ମିକ ଆଚାର ଅନ୍ୱେଷଣ, ପରିପାଳନର କେନ୍ଦ୍ରଭାବେ ଉକ୍ତ 'ମଠ' ଯୁଗଯୁଗ ଧରି କାର୍ଯ୍ୟ

ସମାହିତ କରି ସମାଜର ଅଶେଷ କଲ୍ୟାଣ କରୁଥିଲେ । ପୁନଃ ସଂପୃକ୍ତ ମଠର ଭୌଗୋଳିକ ଅବସ୍ଥିତି ଖରସ୍ରୋତା ନଦୀର ତୀରରେ ଏବଂ ପୂର୍ବ ଜଗନ୍ନାଥ ସଡ଼କ ସଂଲଗ୍ନ ହୋଇଥିବାରୁ ଶ୍ରୀଜଗନ୍ନାଥଙ୍କ ଦର୍ଶନାର୍ଥୀ ବଂଗ, ବିହାର, ଉତ୍ତରପ୍ରଦେଶ ଇତ୍ୟାଦି ଅଂଚଳର ସାଧୁ, ବୈଷ୍ଣବମାନଙ୍କର ଯାତାୟାତକାଳୀନ ରହଣୀସ୍ଥଳ ଭାବେ ପ୍ରସିଦ୍ଧିଲାଭ କରିଥିଲା ।

ପୂର୍ବବର୍ତ୍ତୀ ମହନ୍ତ ଶ୍ରୀଶ୍ରୀ ନବକିଶୋର ଭାରତୀ ସାହିତ୍ୟ, ସଂସ୍କୃତି ତଥା ଅନୁଷ୍ଠାନପ୍ରେମୀ ଥିବାରୁ ଭଗବତ୍ ଆରାଧନା, ସାଧନା ସହିତ ସମାଜ କଲ୍ୟାଣ ଦିଗରେ ମନପ୍ରାଣ ଢାଳି ଦେଇଥିଲେ । ସଂପ୍ରତି ତାଙ୍କ ପରବର୍ତ୍ତୀ ମହନ୍ତ ଶ୍ରୀ ଶିଶିର କୁମାର ଭାରତୀ ମଠର ଐତହ୍ୟ, ପରଂପରା, ଦେବସେବା, ସମାଜସେବା, ସାହିତ୍ୟ ସେବା ପ୍ରଭୃତି ବହୁମୁଖୀ କାର୍ଯ୍ୟାବଳୀକୁ ସମାବିଷ୍ଟ କରି ପୁସ୍ତକାରରେ ପ୍ରକାଶ କରିବାରେ ପ୍ରୟାସୀ ହୋଇଅଛନ୍ତି । ଏଥିସହିତ ନବକିଶୋର ଭାରତୀଙ୍କ ରଚିତ ଭକ୍ତି ସଂଗୀତ, ଭଜନ, ଜଣାଣ ଇତ୍ୟାଦି ମଧ୍ୟରୁ ଯାହା ଉପଲବ୍ଧ ସେ ସକଳର ପ୍ରକାଶନ କରିବାରେ ଆଗ୍ରହ ପ୍ରକାଶ କରିଥିବାରୁ ସେ ନିଶ୍ଚିତ ଭାବେ ଧନ୍ୟବାଦାର୍ହ ।

ଏ କାର୍ଯ୍ୟ ସମାପନ କରିବା ଦିଗରେ ଯେଉଁ ମହାନୁଭବ ବୃନ୍ଦ ସେମାନଙ୍କ ସୁଚିନ୍ତିତ ମତାମତ ସଂବଳିତ ଲେଖାଟିଏ ଦେଇ ମଠ ସହିତ ସେମାନଙ୍କ ସଂପୃକ୍ତି ପ୍ରକଟ କରିଅଛନ୍ତି, ସେମାନଙ୍କୁ ସାଧୁବାଦ ଅର୍ପଣ କରୁଛୁ ।

୨୦୧୧ରୁ ପ୍ରତି ପୂର୍ଣ୍ଣିମାରେ ଭଗବତ୍ ଗୀତା ପାରାୟଣ ଏବଂ ହବନ ଏଯାବତ୍ ଅବ୍ୟାହତ ହୋଇ ଆସୁଅଛି । ଚଳିତ ଦେବ ଅଭିଷେକ ପୂର୍ଣ୍ଣିମାକୁ ୧୩୦ ପୂର୍ଣ୍ଣ ହେବାକୁ ଯାଉଛି । ଏହି ଅପୂର୍ବ ଅବସରରେ ମଠ ସାମୂହିକ କାର୍ଯ୍ୟାବଳୀ ସଂପର୍କିତ ବିଷୟ ଆଧାରିତ ସଂକଳିତ ପୁସ୍ତକ ପ୍ରକାଶନ ବାସ୍ତବରେ ଆନନ୍ଦଦାୟକ । ଉକ୍ତ ଗ୍ରାମ ତଥା ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କରେ ମଠର ସେବାକାର୍ଯ୍ୟ ସମ୍ବନ୍ଧରେ ପର- ପିଢ଼ି ସଂପୃକ୍ତ ହେବାର ଏହା ଏକ ସାଧୁ ଉଦ୍ୟମ ବୋଲି କୁହାଯିବାରେ ଦ୍ୱିରୁକ୍ତି ନାହିଁ ।

ପରିଶେଷରେ ଶ୍ରୀମଦନମୋହନଙ୍କ କୃପା ଭକ୍ତ, ସେବକ, ଆଶ୍ରିତମାନଙ୍କ ଉପରେ ଝରି ପଡ଼ିବାର କାମନା କରି ବାଣୀକୁ ବିରାମ ଦେଉଛି ।

ବିନୀତ
ସଂପାଦକ



# ଶ୍ରୀ ଶ୍ରୀ ମଦନମୋହନଜୀଉ ମଠ, ଖଣ୍ଡିତର ଐତିହ୍ୟ ଓ ସଂସ୍କୃତି



ମହନ୍ତ ଶ୍ରୀ ଶିଶିର କୁମାର ଭାରତୀ

ଆଦିଗୁରୁ- ଜଗତ୍ ଗୁରୁ ଶଙ୍କରାଚାର୍ଯ୍ୟ ହିନ୍ଦୁ ସନାତନ ଧର୍ମର ପଥ ପ୍ରଦର୍ଶକ ଯେତେବେଳେ ତନ୍ତ୍ରବାଦୀ, କୁସଂସ୍କାର ପ୍ରଭାବରେ ସନାତନ ହିନ୍ଦୁଧର୍ମ ପତନୋନ୍ମୁଖୀ ସେତେବେଳେ ଆଦିଗୁରୁ, ଶଙ୍କରାଚାର୍ଯ୍ୟଙ୍କର ଆବିର୍ଭାବ। ସେ ସ୍ୱୟଂ ଶିବଙ୍କର ଅବତାର ମାତ୍ର ବତିଶ ବର୍ଷ ଜୀବନ ମଧ୍ୟରେ ସମସ୍ତ ଶାସ୍ତ୍ରରେ ନିପୁଣତା ହାସଲ କରି, ହିନ୍ଦୁଧର୍ମକୁ ସୁସଂଜତ ସୁସଂଗଠିତ କରିଛନ୍ତି। ଅଦ୍ୱୈତବାଦର ଅବତାରଣା କରି, ବ୍ରହ୍ମ ସତ୍ୟ, ଜଗତ ମିଥ୍ୟା ପ୍ରମାଣିତ କରି, ଠିକ୍ ଦିଗ୍‌ଦର୍ଶକ ଦେଇଥିଲେ ଆଦି ଗୁରୁ। ଆପାର କାଳ ପାଇଁ ହିନ୍ଦୁଧର୍ମର ସୁରକ୍ଷା ପାଇଁ ସେ ସାରା ଭାରତ ବର୍ଷ ଗସ୍ତକରି ବେଦର ମୂଳ ତତ୍ତ୍ୱକୁ ଜ୍ଞାନୀ ଗୁଣୀମାନଙ୍କୁ ଅବଗତ କରାଇ ସନାତନ ହିନ୍ଦୁଧର୍ମର ଭିତ୍ତିଭୂମି ସ୍ଥାପନ କରିଥିଲେ। ଅନେକ ସଂହିତା, ଭାଷ୍ୟ, ସ୍ତୋତ୍ର ରଚନା କରି ଭକ୍ତିପୂତ ପରିବେଶ ସୃଷ୍ଟି ହେବାର ପଥ ଉନ୍ମୋଚନ କରିଅଛନ୍ତି। ହିନ୍ଦୁଧର୍ମକୁ ସୁଦୃଢ଼ କରି ଏହାର ପ୍ରଚାର ପ୍ରସାର ଓ ସୁରକ୍ଷା ପାଇଁ ଭାରତବର୍ଷରେ ଚାରି ଦିଗରେ ଚାରୋଟି ମଠ ସ୍ଥାପନ କରି ତାଙ୍କର ପ୍ରମୁଖ ଚାରି ଶିଷ୍ୟଙ୍କୁ ମଠାଧୀଶ କରି ଦାୟିତ୍ୱ ପ୍ରଦାନ କରିଥିଲେ। ସେହି ଚାରିଜଣ ପ୍ରଧାନ ଶିଷ୍ୟ ହେଲେ- ୧. ପଦ୍ମପାଦ, ୨. ସୁରେଶ୍ୱର, ୩. ପୃଥ୍ୱୀଧାରା, ୪. ତ୍ରୋଟକ। ଚାରି ପ୍ରଧାନ ଶିଷ୍ୟଙ୍କ ବ୍ୟତୀତ ୧୦ ଦଶଜଣ ଶିଷ୍ୟ ସୃଷ୍ଟି ହେଲେ। ଯେଉଁମାନଙ୍କ ଦଶନାମୀ ସନ୍ନ୍ୟାସୀ ରୂପେ ନାମିତ ହେଲେ। ଏମାନେ ଏହି ଚାରି ମଠରେ ପ୍ରମୁଖ୍ୟ ଶିଷ୍ୟମାନଙ୍କ ସହିତ ବାସ କରି ଧର୍ମର ପ୍ରଚାର ପ୍ରସାର କାର୍ଯ୍ୟରେ ନିୟୋଜିତ ହେଲେ। ସେମାନେ ଦଶନାମୀ ସନ୍ନ୍ୟାସୀ ରୂପେ ପ୍ରଖ୍ୟାତ ହେଲେ। ସେମାନେ ଏଥିରେ ଗିରି, ପର୍ବତ, ସାଗର, ଭାରତୀ, ସରସ୍ୱତୀ, ପୁରୀ, ବନ, ଅରଣ୍ୟ, ତୀର୍ଥ, ଆଶ୍ରମ, ଭାରତର ଉତ୍ତର ଦିଗରେ ହିମାଳୟ ବଦ୍ରିକା ଆଶ୍ରମ ନିକଟରେ ଜ୍ୟୋତି ମଠ ବା ଯୋଷୀ ମଠ ପ୍ରତିଷ୍ଠା କଲେ। ପ୍ରଥମ ମଠାଧୀଶ ହେଲେ ତ୍ରୋଟକାଚାର୍ଯ୍ୟ।

ସେ ମଠରେ ଗିରି, ପର୍ବତ, ସାଗର ବାସ କଲେ । ଦକ୍ଷିଣ ଦିଗରେ କର୍ଣ୍ଣାଟକ ରାଜ୍ୟରେ ଶୃଙ୍ଗେରୀ ମଠ ସ୍ଥାପିତ ହେଲା । ପୃଥ୍ୱୀଧରାଚାର୍ଯ୍ୟ ହେଲେ ପ୍ରଥମ ମଠାଧୀଶ ଓ ତାଙ୍କ ପାଖରେ ରହିଲେ ଭାରତୀ, ସରସ୍ୱତୀ, ପୁରୀ । ଏହା ରାମେଶ୍ୱର ଧାମ । ପୂର୍ବଦିଗରେ ଓଡ଼ିଶା ରାଜ୍ୟରେ ଗୋବର୍ଦ୍ଧନ ମଠ ଓ ପ୍ରଥମ ମଠାଧୀଶ ହେଲେ ପଦ୍ମପାଦାଚାର୍ଯ୍ୟ । ଧାମ ହେଲା ପୁରୁଷୋତ୍ତମ ଧାମ । ଏଠି ବାସକଲେ ସନ୍ନ୍ୟାସୀ, ବନ, ଅରଣ୍ୟ । ପଶ୍ଚିମ ଦିଗ ଗୁଜୁରାଟ ରାଜ୍ୟରେ ଦ୍ୱାରକା ଧାମରେ ପ୍ରତିଷ୍ଠା ହେଲା ଶାରଦା ମଠ । ମଠାଧୀଶ ହେଲେ ସୁରେଶ୍ୱରାଚାର୍ଯ୍ୟ । ଏଠି ଦଶନାମୀ ସନ୍ନ୍ୟାସୀ ତୀର୍ଥ, ଆଶ୍ରମ ବାସ କଲେ । ସମୟକ୍ରମେ ଏହି ଦଶନାମୀ ସନ୍ନ୍ୟାସୀମାନେ ଗୁରୁ ଶିଷ୍ୟ ପରମ୍ପରା ସୃଷ୍ଟି କରିଥିଲେ । ଏମାନଙ୍କ ଶିଷ୍ୟମାନେ ସଂସାର କରି ପରିବାର ବାଦ ସୃଷ୍ଟି କଲେ । ଏମାନେ ବେଦରେ ନିର୍ଦ୍ଦେଶିତ ଦଶକର୍ମରେ ଉପନୟନ ହୋଇ ମଠବିଧି ଅନୁସାରେ ଏକାଦଶକର୍ମରେ ଯଜ୍ଞ ଉପବୀତକୁ ଯଜ୍ଞବେଦୀରେ ଉତ୍ସର୍ଗ କରି ଦଣ୍ଡ କମଣ୍ଡଳୁ ଧାରଣ କରି ସନ୍ନ୍ୟାସୀ ହୁଅନ୍ତି । ତତ୍‌ପରେ ସଂସାର ଧର୍ମରେ ପ୍ରବେଶ କରି ଗୃହୀ ସନ୍ନ୍ୟାସୀ ଗୋସ୍ୱାମୀ ବ୍ରାହ୍ମଣ ରୂପେ ଅଭିହିତ ହୁଅନ୍ତି । ଏଣୁ ଏମାନଙ୍କ ଜାତି ସନ୍ନ୍ୟାସୀ ରୂପେ ଗ୍ରହଣ କରାଯାଇଅଛି । ବହୁ ପୁରାତନ ବନ୍ଦୋବସ୍ତ ରେକର୍ଡ଼ରେ ଜାତି ସନ୍ନ୍ୟାସୀ ରୂପେ ପ୍ରତିପାଦିତ ହୋଇଅଛି । ଯେହେତୁ ଯଜ୍ଞ ଉପବୀତକୁ ଭଷ୍ମ କରିଛନ୍ତି, ଏଣୁ ଏମାନେ ଦେବପୂଜା କରନ୍ତି ନାହିଁ ଏବଂ ଦଶକର୍ମରେ ଉପନୟନ ହେଉଥିବା ବ୍ରାହ୍ମଣଙ୍କଠାରୁ ଏକ ଭିନ୍ନ ଜାତି ରୂପେ ପରିଗଣିତ । ଅବଶ୍ୟ ଏହି ପରମ୍ପରାକୁ ଏବେ ବାରଣ କରାଯାଉଅଛି । କିନ୍ତୁ ମଠାଧୀଶମାନେ ପରମ୍ପରା ଅନୁସାରେ ଏକାଦଶ କର୍ମରେ ଦୀକ୍ଷା ପ୍ରଦାନ କରନ୍ତି । ଯଜ୍ଞ ଉପବିତକୁ ଭଷ୍ମ ନ କରି ଶିବଙ୍କୁ ଆରାଧନା କରି ଆହୁତି ପ୍ରଦାନପୂର୍ବକ ହଂସ ପରମହଂସ ଦୀକ୍ଷା ପ୍ରଦାନ କରାଯାଏ । ଏହି ଦୀକ୍ଷା କରଣ, ଆହୁତି ଓ ଶିବୋପାସନା କର୍ମ ଦଶନାମୀ ମଠର ମହନ୍ତମାନେ କରନ୍ତି ।

ଦଶନାମୀ ସଂପ୍ରଦାୟର ପ୍ରମୁଖ ସାଧୁ ସଦାଶିବ ଭାରତୀ ଗୋସ୍ୱାମୀ ଅନ୍ୟୂନ୍ୟ ଷୋଡ଼ଶ ଶତାବ୍ଦୀର ଶେଷ ଭାଗ କିମ୍ବା ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ଏହି ଖଣ୍ଡତର ପବିତ୍ର ଭୂମିରେ ଯୋଗ ସାଧନା କରିଥିଲେ । ସେ ଜଣେ ତନ୍ତ୍ର ସାଧକ ଥିବାର କଥିତ ଅଛି । ଏହି କ୍ଷେତ୍ରଟି ଯେଉଁଠି ମଠସ୍ଥାପନ ହୋଇଛି ଏକ ଶ୍ମଶାନ ଥିଲା । ସାଧୁ ଏହିଠାରେ ତାଙ୍କର ଦଶନାମୀ ସଂପ୍ରଦାୟର ଭାରତୀ ମଠ ସ୍ଥାପନ କରି ଆଧ୍ୟାତ୍ମିକ କାର୍ଯ୍ୟକ୍ରମର ପ୍ରସାର ପ୍ରଚାର କରିଥିଲେ ଓ ମହନ୍ତ ସଦାଶିବ ଭାରତୀ ଗୋସ୍ୱାମୀ ନାମରେ ବିଖ୍ୟାତ ହେଲେ । କିମ୍ବଦନ୍ତୀ ଅଛି ସେ ପ୍ରତ୍ୟେହ ଛାଲ ଉପରେ ଉପବେଶନ କରି ଖରସ୍ରୋତା ନଦୀ ପାର ହୋଇ ଆରପାରିକୁ ଯାଆନ୍ତି । କାରଣ ନଦୀ ସେପାରି

ସେତେବେଳେ ଜଂଗଲ ଥିଲା । ସାଧୁ ସଦାଶିବ ମହାରାଜ ସେହିଠାରେ ଦିନ ତମାମ ତପସ୍ୟାରତ ହୋଇ ସାୟଂକାଳକୁ ମଠକୁ ପ୍ରତ୍ୟାବର୍ତ୍ତନ ସେହି ଛାଲ ସାହାଯ୍ୟରେ କରୁଥିଲେ । ତାଙ୍କ ତପସ୍ୟା ବଳରେ ଜାଣି ପାରିଲେ ଉକ୍ତ ସ୍ଥାନଟି ଏକ ଶୈବକ୍ଷେତ୍ର । ତା'ପରେ ସେ ଶିବ ଶକ୍ତିଙ୍କୁ ମାଟିତଳୁ ଆବିଷ୍କାର କଲେ । ଏହା ପାତାଳ ଫୁଟ ଶିବଲିଂଗ । ଶିବଙ୍କୁ ଖାଙ୍କଡ଼େଶ୍ୱର ମହାଦେବ ନାମରେ ନାମିତ କରି ଏକ ମନ୍ଦିର ନିର୍ମାଣ କଲେ । ଶିବଙ୍କର ମହିମା ପ୍ରକଟ ହେଲା । ବଦାନ୍ୟ ବ୍ୟକ୍ତି ତଥା ଶ୍ରଦ୍ଧାଳୁ ଭକ୍ତମାନେ ଖାଙ୍କଡ଼େଶ୍ୱରଙ୍କୁ ଜମି ଦାନ କଲେ । କାଳକ୍ରମେ ମହନ୍ତ ସଦାଶିବ ଭାରତୀ ଗୋସ୍ୱାମୀ ଶିବ ମନ୍ଦିରର ଦୈନିକ ପୂଜା ପାଇଁ ବ୍ରାହ୍ମଣ ପୂଜକମାନଙ୍କୁ ନିଯୁକ୍ତି କରି ଦାନସୂତ୍ରରେ ଆସିଥିବା ଭୂସଂପତ୍ତିକୁ ବ୍ରାହ୍ମଣମାନଙ୍କୁ ହସ୍ତାନ୍ତର କଲେ । ଏଯାବତ୍ ମଧ ସେହି ପଣ୍ଡା ବ୍ରାହ୍ମଣ ପରିବାର ପୁରୁଷାନୁକ୍ରମେ ଶ୍ରୀ ଖାଙ୍କଡ଼େଶ୍ୱରଙ୍କୁ ଦୈନିକ ସେବା ପୂଜା କରି ଆସୁଛନ୍ତି ଓ ଉକ୍ତ ଭୂସଂପତ୍ତିକୁ ଉପଭୋଗ କରୁଅଛନ୍ତି । ବର୍ତ୍ତମାନ ଏହି ଶୈବ କ୍ଷେତ୍ରଟି ବିକାଶ ଘଟି ଆକର୍ଷଣୀୟ ହୋଇପାରିଛି ଏବଂ ବହୁ ଶ୍ରଦ୍ଧାଳୁ ଭକ୍ତଙ୍କର ସମାଗମ ହେଉଅଛି ।

ମହନ୍ତ ସଦାଶିବ ଭାରତୀ ଗୋସ୍ୱାମୀଙ୍କର ଆଧ୍ୟାତ୍ମିକତା ଓ ଅଲୌକିକତାରେ ଆକର୍ଷିତ ହୋଇ ତତ୍‌କାଳୀନ ରାଜା, ଜମିଦାରମାନେ ମଠକୁ ଭୂସଂପତ୍ତି ଦାନ କରିଥିଲେ । ମଠର ବିଜେସ୍ଥଳୀ କେନ୍ଦୁଝର ରାଜାଙ୍କର କେଉଟଲାଗୁଆଁ ଗ୍ରାମର । କେନ୍ଦୁଝର ରାଜା ମଠର ବିଜେସ୍ଥଳୀ ପାଇଁ ଏ୩୩୦୦ ଭୂମିଦାନ କରିଥିଲେ । ଅନ୍ୟାନ୍ୟ ଜମିଦାରମାନେ ମଧ ସାଧୁଙ୍କର ମହିମାରେ ଅନୁପ୍ରାଣିତ ହୋଇ ଭୂସଂପତ୍ତି ଦାନ କଲେ । ବର୍ତ୍ତମାନ ରାଜସ୍ୱଗ୍ରାମ- ସାନତ୍ରିଲୋଚନପୁର, ବଡ଼ତ୍ରିଲୋଚନପୁର ଓ ଜଳସରପୁର ସଂପୂର୍ଣ୍ଣ ଭାବେ ମହନ୍ତ ମହାରାଜ ଦାନସ୍ୱରୂପ ପାଇଥିଲେ । ଖାଲି ଏତିକି ନୁହେଁ କୋରେଇ ଥାନାର ମଧ ଅନେକ ସଂପତ୍ତି ଶ୍ରୀଗୋସ୍ୱାମୀଙ୍କୁ ପ୍ରାପ୍ତ ହୋଇଥିଲା । ଯଥା- ସୋଲପଙ୍ଗା ବ୍ରହ୍ମପୁର, ଓଚିନ୍ଦା, ବର୍ତ୍ତମଣା, କୌତୁରୀ, ନୂଆ ପାଟଣା ଇତ୍ୟାଦି ମୌଜାର ସଂପତ୍ତି । ଅନ୍ୟୂନ ଚାଳିଶବାଟି ଭଳି ସଂପତ୍ତି ମହନ୍ତ ଅର୍ଜନ କରି ଏକ ଛୋଟ ଜମିଦାରୀ ସୃଷ୍ଟି କରିଥିଲେ । ବଡ଼ତ୍ରିଲୋଚନପୁର, ସାନତ୍ରିଲୋଚନପୁର, ଜଳସରପୁର ଓ ଶୁଆଶାରୀ (ଆଂଶିକ)ରେ ପ୍ରଜା ବସତି କରି ରାଜସ୍ୱ ଆଦାୟ କରିଥିଲେ । ସମୟକ୍ରମେ ଏହି ଜମିଦାରୀଙ୍କୁ ପରିଚାଳନା କରିବା ପାଇଁ ବାହାଦଲାପୁରରୁ କରଣ କର୍ମଚାରୀଙ୍କୁ ନିଯୁକ୍ତି ଦେଇଥିଲେ । କାଳକ୍ରମେ ଏହି ମଠ ଏକ ସଦାବ୍ରତ ମଠରେ ପରିଣତ ହେଲା । ବହୁ ସାଧୁ ସନ୍ନ୍ୟାସୀ ଖଣ୍ଡିତର ଘାଟ ପାର ହୋଇ ପୁରୀ ଯିବା ବାଟରେ ଏହି ମଠରେ ରହଣି କରୁଥିଲେ । ମଠର ପୂଜା ବିଧି- ସଦାଶିବ

ଗୋସେଇଁ ମଠରେ ପିତଳ ମୂର୍ତ୍ତି କନକଦୁର୍ଗା ସ୍ଥାପନ କରି ପୂଜାବିଧି ଆରମ୍ଭ କଲେ । ଅନ୍ୟ କୌଣସି ଦେବତା ପୂଜା ପ୍ରାୟ ନଥିଲା । ପରବର୍ତ୍ତୀ ସମୟରେ ମୃଣ୍ମୟ ଗଣେଶ ମୂର୍ତ୍ତିର ପୂଜାବିଧି ଆରମ୍ଭ ହେଲା । ଶରତ ଋତୁର ଦୁର୍ଗାପୂଜା, କୁଷ୍ମାଣ୍ଡ ବଳି ଓ ହୋମ, ଅଖଣ୍ଡ ଦ୍ୱୀପ ପ୍ରଜ୍ଜଳନ ପୂର୍ବକ ପଂଚମୀ ତିଥିଠାରୁ ଆରମ୍ଭ ହୋଇ ଦଶମୀ ପର୍ଯ୍ୟନ୍ତ ପାଳନ ହେଲା ଏବଂ ଏଯାବତ୍ ହୋଇଆସୁଅଛି । ମଠର ବିଜେସ୍ଥଳୀ ଖରସ୍ରୋତା ନଦୀକୂଳରେ ସେ ଯଜ୍ଞ କରି ଶିବଲିଂଗ ସ୍ଥାପନ କଲେ । ମୂଳପୀଠ ନଦୀ ଆରପାରିରେ ଥିବା ଖାଙ୍କଡ଼େଶ୍ୱର । ସେହି ଶକ୍ତି ଆଣି ଯଜ୍ଞ କରି ସ୍ଥାପନ କରିଥିବାରୁ ଏହି ଶିବଙ୍କ ନାମ ଯଜ୍ଞଶ୍ୱର ନାମରେ ଖ୍ୟାତ । କାରଣ ସେ ଜାଣି ପାରିଥିଲେ ଆଗାମୀ ଉତ୍ତରାଧିକାରୀମାନେ ନଦୀ ପାରହୋଇ ଶିବଦର୍ଶନ ଓ ପୂଜା କରିବା ସମ୍ଭବପର ହୋଇନପାରେ । ଶିବଙ୍କୁ ଦୈନିକ ପୂଜା କରିବା ପାଇଁ ବ୍ରାହ୍ମଣ ପୂଜକ ନିଯୁକ୍ତି ହେଲେ । ନଦୀର ପ୍ରକୋପରେ ମୂଳରୁ ତିଆରି ହୋଇଥିବା ମନ୍ଦିରଟି ସଂପୂର୍ଣ୍ଣ ଭଗ୍ନ ହୋଇଗଲା । ଏବେ ଏହାକୁ ଏ ଅକିଂଚନ ଉଦ୍ଧାର କରିଅଛି ।

ବଡ଼ତ୍ରିଲୋଚନପୁର, ସାନତ୍ରିଲୋଚନପୁର ଓ ଜଳସରପୁର ସୌଦାଗର ଦାତ୍ତବ୍ୟ ଜମି ଉପରେ ପ୍ରଜାବସତି କରାଇଲେ ଏବଂ ନିଜ ପରିବାରଙ୍କୁ ଆଣି ଜଳସରପୁର ମୌଜାରେ ସ୍ଥାପନ କରି ମଠର ଭବିଷ୍ୟତ ପରିଚାଳନାର ଭାର ନ୍ୟସ୍ତ କଲେ ଏବଂ ନିଜର ଭାତୃ ପୁତ୍ରଙ୍କୁ ଚେଲା ରୂପେ ଗ୍ରହଣ କଲେ । ଏଣୁ ଏହା ବଂଶାନୁ ବା Hereditary ମଠରେ ପରିଗଣିତ ହେଲା । ସେହି ସମୟରୁ ପରିବାରର ଜ୍ୟେଷ୍ଠପୁତ୍ର ପରିବାରରେ ନରହି ମଠର ଚେଲାତ୍ୱ ଗ୍ରହଣ କରି ମଠାଧୀଶ ହେବାର ପରମ୍ପରା ସୃଷ୍ଟି ହୋଇଅଛି ।

## ଏହାର Hierology ନିମ୍ନରେ ପ୍ରଦତ୍ତ ହେଲା-

**ମଠର ସ୍ଥାପୟିତା-**

୧. ମହନ୍ତ ସଦାଶିବ ଭାରତୀ ଗୋସ୍ୱାମୀ

୨. ମହନ୍ତ ଗରିବ ଭାରତୀ ଗୋସ୍ୱାମୀ

୩. ମହନ୍ତ ଦେଓ ଭାରତୀ ଗୋସ୍ୱାମୀ

୪. ମହନ୍ତ ପୁରୁଷୋତ୍ତମ ଭାରତୀ ଗୋସ୍ୱାମୀ

୫. ମହନ୍ତ ହରିହର ଭାରତୀ ଗୋସ୍ୱାମୀ

୬. ମହନ୍ତ ବୃନ୍ଦାବନ ଭାରତୀ ଗୋସ୍ୱାମୀ (୧୮୪୦-୧୯୧୧)

୭. ମହନ୍ତ ଲୋକନାଥ ଭାରତୀ ଗୋସ୍ୱାମୀ (୧୯୧୧-୧୯୧୮)

୮. ମହନ୍ତ ପୂର୍ଣ୍ଣଚନ୍ଦ୍ର ଭାରତୀ ଗୋସ୍ୱାମୀ (୧୯୧୮-୧୯୩୯)

୯. ମହନ୍ତ ନବକିଶୋର ଭାରତୀ ଗୋସ୍ୱାମୀ (୧୯୪୦-୧୯୯୧)

ସଦାଶିବ ଭାରତୀ ଗୋସ୍ୱାମୀ ତାଙ୍କର ମହାପ୍ରୟାଣ ସମୟ ଜାଣିପାରି ନିଜର ଚେଲା ଗରିବ ଭାରତୀଙ୍କ ସହ ଶ୍ରଦ୍ଧାଳୁ ଶିଷ୍ୟମାନେ ଓ ଗ୍ରାମବାସୀଙ୍କୁ ଉପସ୍ଥିତ କରାଇ ଜୀବନ୍ତ ସମଧୀସ୍ଥ ହେବାର କିମ୍ବଦନ୍ତୀ ଅଛି । ଏହି ସମାଧୀ ପୀଠ ଉପରେ ଶିବଲିଂଗ ପ୍ରତିଷ୍ଠା ହୋଇଅଛି ଏବଂ ପାର୍ଶ୍ୱରେ ଚର୍ତୁଭୁଜା ବିଷ୍ଣୁ ପ୍ରସ୍ଥର ମୂର୍ତ୍ତି ସହ ଶାଳଗ୍ରାମ ଗାଦୀ ରହିଅଛି । ସମାଧୀ ପୀଠରେ ଏକ ଦେଉଳ ପରବର୍ତ୍ତୀ ମହନ୍ତ ତିଆରି କରିଥିଲେ । ପ୍ରତିଦିନ ଏହି ଭାରତୀ ବଂଶଜମାନେ ଦେଉଳରେ ପୂଜା କରି ରନ୍ଧା ଅରୁଆ ନୀତିଅନ୍ନ କରିବାର ବିଧି ରହିଅଛି ଏବଂ ଏବେ ବି ତାହା ସୂଚାରୁରୂପେ ସଂପାଦନ ହେଉଅଛି । ସମାଧୀ ମନ୍ଦିରଟି କାଳକ୍ରମେ ଭଗ୍ନ ହେଇଯିବା ପରେ ଏହି ଅଂଚଳ ଏହାର ପୁନଃନିର୍ମାଣ କରିଅଛି । ସମାଧୀମନ୍ଦିର ସଂଲଗ୍ନ ଏକ ଗୃହରେ ପରବର୍ତ୍ତୀ ମହନ୍ତମାନଙ୍କ ସମାଧୀ ପୀଠ ଅଛି । ମହନ୍ତମାନଙ୍କର ପ୍ରୟାଣ ଘଟିଲେ ଏହି ସଦାଶିବ ମନ୍ଦିର ନିକଟରେ ଚିତା ଚୈତନ କରି ଏବଂ ଦେଉଳରେ ଥିବା ଏକ ଶାଳଗ୍ରାମକୁ ହସ୍ତରେ ଧାରଣ କରାଇ ସମାଧୀ ଗୃହରେ ସମାଧୀ ଦିଆଯାଏ । ଏହି ସମାଧୀ ପୀଠଗୁଡ଼ିକ ମଧ୍ୟ ପ୍ରତିଦିନ ପୂଜିତ ହୁଅନ୍ତି ଏବଂ ଏକପାର୍ଶ୍ୱ ଅରୁଆ ନୀତି ଦୈନଦିନ ଲାଗି କରାଯାଏ ।

ସଦାଶିବଙ୍କ ମହାପ୍ରୟାଣ ପରେ ଗରିବ ଭାରତୀ ମହନ୍ତ ହୋଇ ସଂପତ୍ତିର ବିକାଶ କଲେ । ଦଶନାମୀ ସନ୍ନ୍ୟାସୀମାନଙ୍କୁ ମଠନୀତି ଅନୁସାରେ ବ୍ରତ ବେଦୀରେ ଏକାଦଶ କର୍ମ ସମାପନ କରି ଦୀକ୍ଷା କରଣ କି ମଠର ବହୁଶିଷ୍ୟ ସୃଷ୍ଟି କଲେ । କେବଳ ଖଣ୍ଡିତର ଗ୍ରାମ ନୁହେଁ ଓଚିନ୍ଦା, ସୋଲପଟ୍ଟା, ବ୍ରହ୍ମପୁର, ସାରୋ, ସଂପାଗୁ, ଭଣ୍ଡାରୀପୋଖରୀ ଇତ୍ୟାଦି ଗ୍ରାମମାନଙ୍କୁ ଦଶନାମୀ ସଂପ୍ରଦାୟର ବାଳକମାନଙ୍କୁ ଉପନୟନ ପୂର୍ବକ ଦୀକ୍ଷାକରଣ କରି ଏକ ଗୁରୁଶିଷ୍ୟର ପରମ୍ପରା ସୃଷ୍ଟି କଲେ ।

ତାଙ୍କପରେ ତାଙ୍କ ଭ୍ରାତୃପୁତ୍ର ଦେଓ ଭାରତୀ ପରବର୍ତ୍ତୀ ମହନ୍ତ ରୂପେ ଗାଦୀନ୍ୟାସକ ହେଲେ । ଦେଓ ଭାରତୀଙ୍କ ପରେ ପୁରୁଷୋତ୍ତମ ଭାରତୀ ମଠର ମହନ୍ତ ପଦରେ ଅଭିଷିକ୍ତ ହେଲେ । ଏହି ସମୟରେ ଖଣ୍ଡିତର ଘାଟ ବିଖ୍ୟାତ ହେଲା । ଲୋକକଥା ଅନୁସାରେ ଜଣେ ତରେଇ ଖଣ୍ଡେ ଖଣ୍ଡିଆ ଡଂଗାରେ ଲୋକଙ୍କୁ ପାର ଉତାର କରୁଥିଲା । କାଳକ୍ରମେ ଘାଟର ନାମ ଖଣ୍ଡିଆ ତରେଇ ବା ଖଣ୍ଡିତର ନାମରେ ବିଦିତ ହେଲା ଏବଂ ଖଣ୍ଡିତର ଗ୍ରାମ ଆତ୍ମପ୍ରକାଶ କଲା, ଯଦିବା ଖଣ୍ଡିତର ନାମରେ କୌଣସି ରାଜସ୍ୱ ଗ୍ରାମ ଏ ପର୍ଯ୍ୟନ୍ତ ନାହିଁ । ରାଣୀ ଅହଲ୍ୟାବାଇଙ୍କ ଜଗନ୍ନାଥ ସଡ଼କ

ଏହି ବାଟଦେଇ ତିଆରି ହେଲା, ଯାହାର ନାମ Grent trunk Road । ଏହି ବାଟରେ ବଡ଼ବଡ଼ ନୌକା ସାହାଯ୍ୟରେ ବହୁଲୋକ ଓ ଯାତ୍ରୀମାନେ ପାର ଉତାର ହେଲେ । ନଦୀକୂଳରେ ବଜାର ଗଢ଼ି ଉଠିଲା । ପରବର୍ତ୍ତୀ ସମୟରେ ଏହି ସଡ଼କ ଦେଇ ଗାଡ଼ି ମଟର ଇତ୍ୟାଦି ଚାଲିଲା ଓ ଏହି ନୌକାରେ ପାର ଉତାର ହୁଏ । ସେତେବେଳେ ଆମ ଗ୍ରାମରେ ଏହି ଜଗନ୍ନାଥ ସଡ଼କରେ ଏକ ପୋଲ ତିଆରି ହୋଇଥିଲା, ଯାହାକି ଆଜି ପର୍ଯ୍ୟନ୍ତ ଅକ୍ଷୂଣ୍ଣ ଅବସ୍ଥାରେ ଅଛି । ଏହାର ୧୨ଗୋଟି ଫୁକାର ଥିବାରୁ ଏହାର ନାମ ବାର ପୋଲିଆ । ବହୁକାଳରୁ ଏନି ପୋଲଟି ଅକ୍ଷୂଣ୍ଣ ରହିଥିବା ଉଲ୍ଲେଖନୀୟ । ଏହା ରାଣୀ ଅହଲ୍ୟାବଇଙ୍କ କୃତି ।

ସେ ସମୟରେ କେତେ ଜଣ ସାଧୁ ମଦନମୋହନଙ୍କୁ (ବର୍ତ୍ତମାନ ମଠର ମୁଖ୍ୟ ଦେବତା) ଘୋଡ଼ାପୃଷ୍ଠରେ ବସାଇ ପୁରୀ ଅଭିମୁଖେ ଯାତ୍ରା କରୁଥିଲେ । କଥିତ ଅଛି ସାଧୁମାନେ ମଦନମୋହନଙ୍କୁ ସମ୍ଭାଳିବା ଅସମ୍ଭବ ହେବାରୁ ଶ୍ରୀକ୍ଷେତ୍ରରେ ନେଇ ରଖିବାକୁ ସିଦ୍ଧାନ୍ତ କରି ଏହିଯାତ୍ରା ଆରମ୍ଭ କରିଥିଲେ । ଖଣ୍ଡିତର ଘାଟ ପାରି ହେବା ପରେ ଏ କୂଳରେ ରାତ୍ରି ବିଶ୍ରାମ କଲେ । ସେହି ରାତ୍ରିରେ ସାଧୁମାନଙ୍କୁ ସ୍ୱାପ୍ନାଦେଶ ହେଲା ଯେ ସେ ଏହି ଗ୍ରାମରେ ସଦାବ୍ରତ ମଠରେ ରହିବେ । ସକାଳୁ ସାଧୁମାନେ ଉଠି ଦେଖିଲେ ପୁରୀକୁ ମୁହଁ କରିଥିବା ବିଗ୍ରହ ଆପଣଛାଏଁ ଉତ୍ତର ମୁଖା ହୋଇ ଦଣ୍ଡାୟମାନ । ସେହି ରାତ୍ରିରେ ମଧ ମହନ୍ତ ପୁରୁଷୋତ୍ତମ ଭାରତୀ ଗୋସ୍ୱାମୀଙ୍କୁ ଅନୁରୂପ ସ୍ୱପ୍ନାଦେଶ ହୋଇଥିଲା । ତେଣୁ ସାଧୁମାନେ ମଠରେ ମଦନମୋହନଙ୍କୁ ଉତ୍ତରମୁଖା କରି ସ୍ଥାପନ କରି ପୂଜା ବ୍ୟବସ୍ଥାର ଦାୟିତ୍ୱ ମହନ୍ତଙ୍କୁ ଅର୍ପଣ କରି ଚାଲିଗଲେ ।

ଶ୍ରୀମଦନମୋହନ ମୁଗୁନି ପ୍ରସ୍ତର ନିର୍ମିତ ବିଗ୍ରହ । ଷଡ଼ଭୁଜା ବିଷ୍ଣୁ । ଏଭଳି କମନୀୟ ଷଡ଼ଭୁଜାମୂର୍ତ୍ତି ବିରଳ ଏବଂ ଉତ୍ତରକୁ ମୁଖ କରି ବିଷ୍ଣୁପୂଜା ପାଇବା ଏକ ନିଆରା ପରମ୍ପରା । ଶ୍ରୀମଦନ ମୋହନ ତ୍ରିଭଂଗୀମା ଠାଣୀରେ ଦଣ୍ଡାୟମାନ, ଚାରିହସ୍ତରେ ଶଂଖ ଚକ୍ର  ଗଦା ପଦ୍ମ ଓ ଦୁଇ ହାତରେ ବଂଶୀ ବାଦନ କରିବାର ବିଗ୍ରହ ଓ ପାପ ତଳେ ଗୋବତ୍ସା ରହିଅଛନ୍ତି । କିନ୍ତୁ ରାଧା ନାହାନ୍ତି । ଏକାକୀ କୃଷ୍ଣ ବାସୁଦେବ ମୂର୍ତ୍ତି ଓ ବିଷ୍ଣୁ ମନ୍ତ୍ରରେ ପୂଜା ପାଆନ୍ତି । ଏଣୁ ଏହାଙ୍କୁ ନିଅଂଗୀ ଦେବତା ବୋଲି କେହି କେହି କୁହନ୍ତି ।

ସେତେବେଳେ ଖଣ୍ଡିତରରେ ବ୍ରାହ୍ମଣ ପ୍ରଜା ନଥିଲେ । ମହନ୍ତ ପୁରୁଷୋତ୍ତମ ଓଡ଼ିଶା ରାଜାଙ୍କ ପାଖକୁ ଯାଇ କେତେକ ସୁବେଦୀ ବ୍ରାହ୍ମଣଙ୍କୁ ପ୍ରଦାନ କରିବାକୁ ରାଜାଙ୍କ ପାଖରେ ପ୍ରାର୍ଥୀ ହେଲେ । ରାଜା ତାଙ୍କୁ ୬ଟି ଗୋତ୍ରରେ ଛଜଣ ବ୍ରାହ୍ମଣ ଗୋସେଇଁଙ୍କୁ ଦାନ କଲେ, ଯେ କି ଷଡ଼ଗୋତ୍ରୀ ବ୍ରାହ୍ମଣ ନାମରେ ବିଦିତ । ସେମାନେ

ଯାଜ୍ଞିକ ବ୍ରାହ୍ମଣ ଥିଲେ । ବେଦ କର୍ମକାଣ୍ଡରେ ଖୁବ୍ ପାରଦର୍ଶୀ ଥିଲେ । ସେମାନେ ଆସି ଯଜ୍ଞକରି ମଦନମୋହନଙ୍କୁ ଆସ୍ଥାନରେ ସ୍ଥାପନ କରି ପୂଜାବିଧି ଖଞ୍ଜି ଦେଲେ । ଦୈନିକ ଦେଢ଼ସେରେ ବା ୨ କେଜି ଅରୁଆ ଚାଉଳରେ ଦୈନିକ ନୀତି ଦେବାର ବ୍ୟବସ୍ଥା କଲେ । ମହଦନମୋହନଙ୍କ ମନ୍ଦିର ସଲଗ୍ନ ଏକ ଗୃହରେ ୧୦୮ ଶାଳଗ୍ରାମ ସ୍ଥାପନ କରି ଯଜ୍ଞ କରି ଏକ ଶାଳଗ୍ରାମ ଗାଦୀ ତିଆରି କଲେ । ସେହି ଗାଦୀରେ ମହନ୍ତ ପୁରୁଷୋତ୍ତମଙ୍କୁ ଉପବେଶନ କରାଇ ରାଜା ଅଭିଷେକ କଲେ । ଏ ଯାବତ୍ ଏହି ଶାଳ ଗ୍ରାମଗାଦୀ ଦୈନିକ ବ୍ରାହ୍ମଣ ଦ୍ୱାରା ପୂଜିତ ହୁଏ । ମଦନମୋହନ ବର୍ଷରେ ଥରେ ଏହି ଗାଦୀରେ ଆସୀନ ହୁଅନ୍ତି । ନୂତନ ମହନ୍ତ ହେଲେ ଏହି ଗାଦୀରେ ବସି ଅଭିଷିକ୍ତ ହୁଅନ୍ତି । ପ୍ରତିବର୍ଷ ସୁନିଆରେ ଏହି ଗାଦୀରେ ମହନ୍ତଙ୍କୁ ରାଜା ଅଭିଷେକ କରାଯାଏ । ସାଧାରଣ ଯେକୌଣସି ଲୋକ ଏ ଗାଦୀରେ ବସନ୍ତି ନାହିଁ, ଯଦିବା କେହି ନିୟମ ଉଲଘଂନ କରିଛନ୍ତି, ସେମାନେ ଦଣ୍ଡ ପାଇବାର ପ୍ରମାଣ ଅଛି । ଏହାପରେ ମହନ୍ତ ପୁରୁଷୋତ୍ତମ ଏହି ଷଡ଼ଗୋତ୍ରୀ ବ୍ରାହ୍ମଣମାନଙ୍କୁ ଏଠି ବସତି କରାଇ ଶାସନ ପ୍ରତିଷ୍ଠା କଲେ । ସାନତ୍ରିଲୋଚନପୁର ମୌଜା ଖରସ୍ରୋତା ନଦୀକୂଳରେ ମହନ୍ତଙ୍କ ଜମିଦାରୀରେ ଗୋଟିଏ କଣ୍ଟିବଣ ଥିଲା । ଏହି ଜଂଗଲକୁ ସଫା କରି ନିଷ୍କରରେ ବ୍ରାହ୍ମଣ ଶାସନ ବସାଇଲେ ଓ ଏହାର ଡାକନାମ କଣ୍ଟିଆକୂଳ ଶାସନ ନାମରେ ବିଦିତ ହେଲା । ବ୍ରାହ୍ମଣମାନଙ୍କର ମଧ୍ୟ ଏକ ରାଧାକୃଷ୍ଣ ମନ୍ଦିର ପ୍ରତିଷ୍ଠା ହେଲା । ମଠ ସହିତ ଶାସନର ଆଧାତ୍ମିକ ଓ ଭାବଗତ ସଂପର୍କ ରହିଅଛି । ମଠର ବିଭିନ୍ନ ପର୍ବରେ ସେମାନଙ୍କୁ ନିମନ୍ତ୍ରଣ କରାଯାଏ । ମଠ ତରଫରୁ ଶାସନକୁ ଉଚ୍ଚ ସମ୍ମାନ ଦିଆଯାଇଥାଏ । ପ୍ରତିବର୍ଷ ଚନ୍ଦନ ପୂର୍ଣ୍ଣମୀରେ ଶାସନ ଠାକୁର ଘରେ ଉତ୍ସବ ହୁଏ ଏବଂ ସେମାନଙ୍କ ତରଫରୁ ତୁଳସୀ ଚନ୍ଦନ ଦେଇ ମହନ୍ତଙ୍କୁ ନିମନ୍ତ୍ରଣ କରାଯାଏ, ଏବଂ ମହନ୍ତ ଏହି ଚନ୍ଦନ ଉତ୍ସବରେ ଯୋଗ ଦିଅନ୍ତି । ଏଯାବତ୍ ଏହି ପରମ୍ପରା ଅତୁଟ ରହିଅଛି ।

ମଦନମୋହନ ପ୍ରତିଷ୍ଠିତ ହେଲାପରେ ମହନ୍ତ ସେବାୟତମାନଙ୍କୁ ନିଷ୍କର ଓ ଜାୟଗିରି ପ୍ରଦାନ କରି ବସାଇଲେ । ଯଥା, କୁମ୍ଭାର, ମାଳି, ଗୋପାଳ, ରଜକ, ବ୍ରାହ୍ମଣ, ଗୁଡ଼ିଆ, କମାର ଇତ୍ୟାଦି । ଦୈନିକ ନୂତନ ମାଟି ହାଣ୍ଡିରେ ନୀତି ରନ୍ଧା ହୁଏ । ଏବେ ଅବଶ୍ୟ ହେଉ ନାହିଁ, କିନ୍ତୁ ଅନ୍ୟାନ୍ୟ ସେବା ସେବାୟତମାନେ କରିଆସୁଛନ୍ତି । ମହନ୍ତ ସେମାନଙ୍କୁ ଘରବାଡ଼ି ଓ ବୃତ୍ତି ଆଦି ଖଞ୍ଜି ଦେଇଥିଲେ । ଯାନିଯାତ୍ରା- ଏହି ମଠାଧୀଶଙ୍କ ସମୟରେ ନୂତନ ପରମ୍ପରା ସେବାରେ ଓ ଯାନି ଯାତ୍ରାରେ ସୃଷ୍ଟି ହେଲା । ଶ୍ରୀମଦନମୋହନଙ୍କ ଗହ୍ମାପର୍ବ ବା ଝୁଲଣ ଯାତ୍ରା ମୁଖ୍ୟ । ଏହା ୫ଦିନ ଧରି ଚାଲିଥାଏ । ଗ୍ରାମର ଲୋକମାନେ ଓ ଶ୍ରଦ୍ଧାଳୁ ଭକ୍ତମାନେ ଝୁଲଣ ଯାତ୍ରାରେ ଅଂଶ ଗ୍ରହଣ କରନ୍ତି ।

ପ୍ରତିଦିନ ଭକ୍ତି ସଂଗୀତ ପରିବେଷଣ କରାଯାଏ । ପୂର୍ଣ୍ଣମୀରେ ପ୍ରଭୁ ସନ୍ନ୍ୟାସ ବେଶ ଧାରଣ କରନ୍ତି । କ୍ଷିରୀ ପିଠା ଭୋଗ ଦିଆଯାଇ ଯାତ୍ରା ସମାପନ ହୁଏ ।

ପଂଚମ ପିଢ଼ିର ମହନ୍ତ ହେଲେ ହରିହର ଭାରତୀ ଗୋସ୍ୱାମୀ ଏହାଙ୍କ ସମୟରେ ପରମ୍ପରା କ୍ରମେ ଭାତ୍ରୁପୁତ୍ରଙ୍କୁ ଚେଲା ଗ୍ରହଣ କରିବାରେ ପ୍ରତିବନ୍ଧକ ସୃଷ୍ଟି ହେଲା । କାରଣ ତାଙ୍କ ଭାଇଙ୍କର ସନ୍ତାନ ସନ୍ତତି ନଥିଲେ । ତାଙ୍କର ସାନଭାଇ ଅର୍ଜୁନ ଭାରତୀ ପରିଣତ ବୟସରେ ଏକାକୀ ଚାଲିଚାଲି ବଦ୍ରିନାରାୟଣ ପୀଠକୁ ଯାଇଥିଲେ । ସେଠି ୨୧ ଦିନ ଅଧାପଡ଼ିବା ପରେ ହୁକୁମ ହେଲା ଯେ, ସେ ଜଣକୁ ପୋଷ୍ୟପୁତ୍ର ଗ୍ରହଣ କରି ମଠରେ ଚେଲା କଲାପରେ ତାଙ୍କର ସନ୍ତାନ ଜନ୍ମ ହେବ ଓ ବଂଶ ରକ୍ଷା ହେବ । ତାହା ହିଁ ହେଲା । ବୃନ୍ଦାବନରୁ ପୁରୀ ଯାଉଥିବା ବ୍ରାହ୍ମଣ ବ୍ରାହ୍ମଣୀ ଖଣ୍ଡିତର ଘାଟ ପାର ହୋଇ ଆଶ୍ରା ନେଇଥିଲେ । ସେମାନେ କନର୍ଯ୍ୟା ବ୍ରାହ୍ମଣ ଥିଲେ । ବ୍ରାହ୍ମଣୀ ଅନ୍ତସତ୍ୱା ଥିଲେ ଏବଂ ବିଶ୍ରାମ କକ୍ଷରେ ସେ ଦୁଇଟି ପୁତ୍ର ସନ୍ତାନ ପ୍ରସବ କଲେ । ଅର୍ଜୁନ ଭାରତୀ ବଡ଼ ସନ୍ତାନଟିକୁ ପୋଷ୍ୟପୁତ୍ର କରି ବ୍ରାହ୍ମଣ ବ୍ରାହ୍ମଣୀଙ୍କୁ କିଛିଦିନ ଗୃହରେ ରଖି ସେବା କଲେ । ସାନ ସନ୍ତାନଟିକୁ କୁଆଖିଆରେ ଜଣେ ଅପୁତ୍ରିକ ପୋଷ୍ୟରୂପେ ଗ୍ରହଣ କଲେ । ଏବେ ତାଙ୍କର ବଂଶଧର ଅଛନ୍ତି । ଆମ୍ଭ ଗୋସୀବାପାଙ୍କ ଠାରୁ ଶୁଣିଛୁ କୁଆଖିଆ ବଜାରର ୰ପଦ୍ମଲାଭ ସାହୁ ତାଙ୍କର ବଂଶଧର ଥିଲେ । ତାଙ୍କ ପୁତ୍ର ନାରାୟଣ ସାହୁ ବିଦ୍ୟମାନ । ସେ ଜଣେ କଳାକାର, କୁଆଖିଆ ଲକ୍ଷ୍ମୀନାରାୟଣ ଠାକୁରଙ୍କର ପ୍ରଧାନ ସେବକ ବା ପ୍ରତିବର୍ଷ ମୃଣ୍ମୟୀମୂର୍ତ୍ତିରେ ପୂଜା ପାଉଥିବା ଠାକୁରଙ୍କ ପୂଜାରେ ସେ ହିଁ କର୍ତ୍ତା ଏବଂ ଏହି ଲକ୍ଷ୍ମୀନାରାୟଣ ଯାତ୍ରା ପୌଷ ସଂକ୍ରାନ୍ତିରେ ଆରମ୍ଭ ହେଇ ମାସାଧିକ କାଳ ଚାଲୁ ହୁଏ । ଏହି ଅଂଚଳର ଏକ ପ୍ରଖ୍ୟାତ ମେଳା ଯେଉଁଠି ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୁଏ, ବହୁ ଲୋକ ସମାଗମ ହୁଏ । ଶ୍ରୀମାନ ନାରାୟଣ ସାହୁ କ୍ଷେତ୍ରପାଳ ଉଚ୍ଚବିଦ୍ୟାଳୟରେ ଅଧ୍ୟୟନ କରି ମୋର ଛାତ୍ର ଥିଲେ । ବ୍ରାହ୍ମଣ ଦମ୍ପତି ସୁସ୍ଥ ହେବାପରେ ପୁରୀ ଧାମକୁ ଯାତ୍ରା କଲେ । ଯଦିବା କହିଥିଲେ ଫେରିବା ବାଟରେ ଏଠି ରହିବେ, କିନ୍ତୁ ସେମାନେ ଆଉ ଆସିଲେ ନାହିଁ ।

ଅର୍ଜୁନ ଭାରତୀ ପିଲାଟିକୁ ଅତି ଶ୍ରଦ୍ଧାର ସହିତ ଲାଳନ ପାଳନ କଲେ ଏବଂ ବୃନ୍ଦାବନରୁ ଆସିଥିବାରୁ ତାଙ୍କ ନାମ ବୃନ୍ଦାବନ ଭାରତୀ ରଖିଲେ । ଏହାପରେ ଆର୍ଜୁନଙ୍କ ଔରସର ତିନିପୁତ୍ର ଜନ୍ମ ନେଲେ । ଯାହାଙ୍କର ବଂଶଧର ଆମ୍ଭେମାନେ ।

ଶୈଶବ ଅବସ୍ଥାରେ ବୃନ୍ଦାବନଙ୍କୁ ମହନ୍ତ ହରିହର ଚେଲା ଗ୍ରହଣ କରିବା ପରେ ପରେ ଇହଲୀଳା ସମ୍ବରଣ କଲେ । ବ୍ରିଟିଶ ଶାସନର ନିୟମାନୁସାରେ ଅର୍ଜୁନ

ଭାରତୀ ବୃନ୍ଦାବନଙ୍କର ମାର୍ଫତ ହୋଇ ମଠ ସଂସ୍ଥା ଓ ମଠ ଜମିଦାରୀ ପରିଚାଳନା କଲେ ।

**ମା' ଘାଟମଂଗଳାଙ୍କ ଆବିର୍ଭାବ-** ଏହି ସମୟରେ ୧୮୪୦ ମସିହା ପୂର୍ବରୁ ମଂଗଳା ମା'ଙ୍କ ଆବିର୍ଭାବ । ଜଣେ କୈବର୍ତ୍ତ ନୌକା ନେଇ ଯାଉଥିଲେ ଏବଂ ଖଣ୍ଡିତର ଘାଟରେ ରାତ୍ର ଯାପନ କଲେ । ସେହି ଡଂଗାର ମଂଗରେ ମଂଗଳା ବିଗ୍ରହ ରଖି ସେ ପୂଜା କରୁଥିଲେ । ସେହି ରାତ୍ରରେ ସେ କୈବର୍ତ୍ତଙ୍କୁ ସ୍ୱପ୍ନାଦେଶ ଦେଲେ ସେ ଏହି ଘାଟରେ ରହିବେ । ଅନୁରୂପ ସ୍ୱପ୍ନ ମଧ ଅର୍ଜୁନ ଭାରତୀ ସେହି ରାତ୍ରରେ ଦେଖିବାକୁ ପାଇଲେ । ତେଣୁ ପରଦିନ କୈବର୍ତ୍ତର ଡଂଗାରୁ ଠାକୁରାଣୀଙ୍କୁ ଆଣି ମା ଫିସ୍ ଅର୍ଜୁନ ଭାରତୀ ଘାଟ କୂଳଥିବା ବାଉଁଶର ଆବରଣ ଦେଇ ପୂଜା ଆରମ୍ଭ କଲେ । ମା' ଘାଟମଂଗଳାଙ୍କ ବିଚାର ମାତ୍ର ସାଢ଼େଛଅ ଇଂଚ ଉଚ୍ଚତା ଓ ଦ୍ୱିଭୁଜାମୂର୍ତ୍ତି । ଶାନ୍ତିମୂର୍ତ୍ତି ଓ ମୁଗୁନି ପ୍ରସ୍ଥରରେ ନିର୍ମିତ ।

ବୃନ୍ଦାବନ ଭାରତୀ ସାବାଳକ ହେବା ପରେ ମହନ୍ତ ପଦରେ ପରମ୍ପରା ମୁତାବକ ଅଭିଷିକ୍ତ ହେଲେ । ସେ ସବୁଠାରୁ ନାମକରା ଖ୍ୟାତିସଂପନ୍ନ ମହନ୍ତ ହେଲେ । ଚୁନ ଇଟା ବାଲି ଗେଂଗୁଟିରେ ମା'ଙ୍କର ଏକ ସୁନ୍ଦର ମନ୍ଦିର ନିର୍ମାଣ କଲେ । ପୂର୍ବବିଧି ପାଇ ପଣ୍ଡା ବ୍ରାହ୍ମଣ ଚଇନିପୁର (ଯାଜପୁର) ଆଣି ତାଙ୍କୁ ଘରବାଡ଼ି ଜାୟଗିରି ପ୍ରଦାନ କରି ରଖିଲେ । ଏଯାବତ ସେ ମନ୍ଦିର ଥିଲା । ଖାଲୁଆ ହୋଇଯିବା ହେତୁ ଠାକୁରାଣୀ ବର୍ଷା ଜଳ ଓ ବନ୍ୟା ଜଳରେ ମାସ ମାସ ଧରି ବୁଡ଼ି ରହୁଥିଲେ । ଏଣୁ ସେ ମନ୍ଦିରକୁ ଭାଂଗୀ ଏକ ନୂତନ ମନ୍ଦିର ତିଆରି କରାଯାଇଛି । ଏହା ପୂର୍ବ ଅପେକ୍ଷା ବଡ଼, ଓସାର ଓ ଉଚ୍ଚ ହୋଇଅଛି ।

ବୃନ୍ଦାବନ ଭାରତୀ ମଠକୁ ଚୁନ ବାଲି ଇଟା ଗେଂଗୁଟିରେ ତିଆରି କରିଥିଲେ । ଏହା ୭୫ ଫୁଟ ଲମ୍ବ ପ୍ରସ୍ଥ ଅଟେ । ଉତ୍ତର ଦରଜା ମୁଖ୍ୟ । ବର୍ତ୍ତମାନ ମଠର ଯେଉଁ ଅବସ୍ଥିତି ତା ର ମୂଳଦୁଆ ସେ ପକାଇଥିଲେ ଓ ଅଧିକାଂଶ ଚାଳଛପର ଆଉ କିଛି କ୍ଷିଲାଣ ଘର । ତତ୍‌କାଳୀନ ବ୍ରିଟିଶ ସରକାର ତାଙ୍କୁ ୟୁନିୟନ ପ୍ରେସିଡ଼େଣ୍ଟ୍ ରୂପେ ଏ ଅଂଚଳର ପାଇଁ ନିଯୁକ୍ତି ଦେଇଥିଲେ । ସେ ବିଭିନ୍ନ ଗ୍ରାମକୁ ଯାଇ ଦଶନାମୀ ସନ୍ନ୍ୟାସୀ ବାଳକମାନଙ୍କୁ ବ୍ରତ ବେଦୀରେ ଦୀକ୍ଷାକରଣ କରି ବହୁ ଶିଷ୍ୟ ସୃଷ୍ଟି କରିଥିଲେ । ଶ୍ରୀମଦନମୋହନଙ୍କ ସେବା ପୂଜା, ଯାନିଯାତ୍ରା, ଯାକଜମକରେ କରୁଥିଲେ । ଅଭ୍ୟାଗତମାନଙ୍କୁ ପ୍ରସାଦ ସେବା କରାଉଥିଲେ । ଯେହେତୁ ତାଙ୍କର ପିତାମାତା ବୃନ୍ଦାବନର କନର୍ଯ୍ୟା ବ୍ରାହ୍ମଣ, ସେ ବୃନ୍ଦାବନ ଯାଇଥିଲେ । ସେଠାରେ ତାଙ୍କ ପିତୃବଂଶର କୌଣସି ସନ୍ଧାନ ପାଇପାରି ନଥିଲେ । ବୃନ୍ଦାବନରୁ ରାଧାକୃଷ୍ଣ ମୂର୍ତ୍ତି ଆଣି

ମଠରେ ମଦନମୋହନଙ୍କ ପାଖରେ ପ୍ରତିଷ୍ଠା କରି ଏକ ନୂତନ ପରମ୍ପରା ସୃଷ୍ଟି କଲେ । ମା' ଘାଟମଂଗଳାଙ୍କ ପୀଠରେ ଦୋଳପୂର୍ଣ୍ଣମୀରେ ମେଲଣ ଆରମ୍ଭ କଲେ । ମଠର ରାଧାକୃଷ୍ଣ ବିମାନରେ ପଟୁଆରରେ ଯାଇ ଥାନପତି ରୂପେ ବସନ୍ତି ଏବଂ ତାଙ୍କ ସହିତ ବ୍ରାହ୍ମଣ ଶାସନର ରାଧାକୃଷ୍ଣ ବିମାନରେ ବିଜେ ହୁଅନ୍ତି । ଶାସନକୁ ସମ୍ମାନ ଦେବାପାଇଁ ଶାସନ ଠାକୁରଙ୍କୁ ଡାହାଣ ପାଖରେ ବିଜେ କରାଇ ପଟୁଆର କରନ୍ତି । ଏ ପର୍ଯ୍ୟନ୍ତ ମଧ୍ୟ ଏହି ପରମ୍ପରା ରହିଅଛି । ଥାନପତି ଠାକୁର ଅନ୍ୟ ନିମନ୍ତ୍ରିତ ଠାକୁରମାନଙ୍କୁ ବିଦା କରି ଶେଷରେ ମଠକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ଏହି ମହନ୍ତଙ୍କ ସମୟରେ ମଧୁପୁର ରାଜା ରାତିରେ ତାଙ୍କ ପାଇକମାନଙ୍କୁ ପଠାଇ ମଦନମୋହନଙ୍କୁ ଗଡ଼କୁ ଘେନି ଗଲେ । ସୁକାଲୁ ମହନ୍ତ ବହୁ ଖୋଜାଖୋଜି କରି ନପାଇ ନୀରବରେ ଧ୍ୟାନରେ ରହିଲେ । ସେହି ରାତ୍ରରେ ରାଜାଙ୍କୁ ସ୍ୱପ୍ନାଦେଶ ହେଲା ଯେ, "ମୋତେ ନେଇ ସଦାବ୍ରତ ଭାରତୀ ମଠରେ ପୁନଃ ସ୍ଥାପନ କର, ନଚେତ ତୋ' ବଂଶ ଧ୍ୱଂସ କରିଦେବି ।" ସ୍ୱପ୍ନାଦେଶପାଇ ରାଜା ତାଙ୍କ କର୍ମଚାରୀଙ୍କ ଦ୍ୱାରା ଭୋରୁଭୋରୁ ମଦନମୋହନଙ୍କୁ ଆଣି ବିଲରେ ପକାଇ ଦେଇଗଲେ । ମହନ୍ତ ସକାଳୁ ଦେଖନ୍ତି ମଦନମୋହନ ବିଲରେ ଅଛନ୍ତି ଏବଂ ଏକ ତମ୍ବା ସନନ୍ଦ ତାଙ୍କ ପାଖରେ ଅଛି । ସେତେବେଳେ ରାଜା ମହାରାଜାମାନେ ତାମ୍ର ପତ୍ରରେ ଲିଖିତ କରି ସଂପତ୍ତି ହସ୍ତାନ୍ତର କରୁଥିଲେ । ଯାହାକୁ ସନନ୍ଦ ବୋଲି କୁହାଯାଏ । ସେ ସନନ୍ଦ ବହୁ ଦିନରୁ ଥିଲା । ୧୯୭୨ ମସିହା ବନ୍ୟା ବାତ୍ୟାରେ ମଠରେ ପାଣି ପଶି ଅନେକ ପୋଥି ସହିତ ସେ ସନନ୍ଦ କେଉଁଆଡ଼େ ହଜିଗଲା । ସେ ସନନ୍ଦରେ ରାଜା ୧୨ମାଣ ଭୂସଂପତ୍ତି ନୀତି ପାଇଁ ମଦନମୋହନଙ୍କୁ ଦାନ କରିଥିଲେ । ତାହା ବାରମାଣିଆ ନାମରେ ନାମିତ ହେଲା । ଏବେ ମଧ୍ୟ ବାରମାଣିଆ ଚକ ଡାକଅଛି । ଅବଶ୍ୟ ସବୁ ସଂପତ୍ତି ବର୍ତ୍ତମାନ ନାହିଁ, ମହନ୍ତମାନେ ହସ୍ତାନ୍ତର କରିଅଛନ୍ତି । ତତ୍‌ସହିତ ସୁଆସାହି ମୌଜାର ନୂଆ ପାଟଣା ସାହି (ତନ୍ତିସାହି) ତନ୍ତି କାଚରା ପ୍ରଜାମାନଙ୍କୁ ନେଇ ବସତି ଥିଲେ । ମଦନମୋହନଙ୍କ ଯାନିଯାତ୍ରାରେ ସହଯୋଗ କରିବା ପାଇଁ ରାଜା ସେ ତଉଜିକୁ ମଠ ଜମିଦାରୀ ସହିତ ସଂପୃକ୍ତ କଲେ । ମଠର ମୁଖ୍ୟ ପର୍ବ ଝୁଲଣ ଓ ମେଲଣକୁ ନୂଆପାଟଣା ସାହିଙ୍କୁ ନିମନ୍ତ୍ରଣ ଯିବାର ବିଧିବ୍ୟବସ୍ଥା ହେଲା ଏବଂ ଏ ପର୍ଯ୍ୟନ୍ତ ମଧ୍ୟ ଏହି ପ୍ରଥା ଚାଲୁ ରହିଅଛି । ସେମାନଙ୍କର ସହଯୋଗ ମଧ୍ୟ ଅଛି ।

ଏହି ମହନ୍ତଙ୍କ ସମୟରେ ବାଲି ବିରୁଆଁ ଗ୍ରାମର ଭିକାରୀ ପଟୁଆର ଯେକି କେନ୍ଦୁଝର ରାଜାଙ୍କର ପଦସ୍ଥ କର୍ମଚାରୀ (କଲେକ୍ଟର) ଥିଲେ ମଠ ସହିତ ତାଙ୍କର ଭାବଗତ ସଂପର୍କ ଗଢ଼ିଉଠିଥିଲା । ମଦନମୋହନଙ୍କ ମହିମାରେ ବିଶେଷ ଭାବେ

ଆକୃଷ୍ଟ ହୋଇ ମଠକୁ ଜମିଦାନ କରିଥିଲେ ଏବଂ ଶୁଣାଯାଏ ତାଙ୍କର କୃପାରୁ ତାଙ୍କ ପରିବାରରେ ପୁତ୍ରଲାଭ ହେଲା । ସେ ପୁତ୍ରର ନାମ ଶ୍ରୀଜୀଉଙ୍କ ନାମ ଅନୁସାରେ ମଦନମୋହନ ପଟ୍ଟନାୟକ ରଖିଲେ । ଯେକି ପରବର୍ତ୍ତୀ ସମୟରେ ଧର୍ମଶାଳା ନିର୍ବାଚନ ମଣ୍ଡଳରେ ୫ବର୍ଷ ଧରି ବିଧାୟକ ଥିଲେ । ବୃନ୍ଦାବନ ଭାରତୀଙ୍କର ସାନ ଭାଇ ଚିନ୍ତାମଣି ଭାରତୀ ଓ ଅନ୍ୟ ଦୁଇ ଭାଇ ମଠର ଉନ୍ନତି ପାଇଁ ସଂପୂର୍ଣ୍ଣ ନିୟୋଜିତ ହେଲେ । ଚିନ୍ତାମଣି ଭାରତୀଙ୍କର ସହଯୋଗରେ ମଠର ପ୍ରକାଣ୍ଡ ବାଡ଼ିରେ ଆମ୍ବ, କାଜୁ ବାଦାମ ବଗାୟତ କଲେ ଏବଂ ଅନ୍ୟାନ୍ୟ ବୃକ୍ଷ ସୃଷ୍ଟି କରି ମଠର ସୌନ୍ଦର୍ଯ୍ୟ ବୃଦ୍ଧି କରିଥିଲେ ।

ମହନ୍ତ ବୃନ୍ଦାବନ ଭାରତୀ ଚିନ୍ତାମଣିଙ୍କ ପୁତ୍ର ଲୋକନାଥଙ୍କୁ ଚେଲା ଗ୍ରହଣ କଲେ । ତାଙ୍କର ତିରୋଧାନ ପରେ ଲୋକନାଥ ଭାରତୀ ଗୋସ୍ୱାମୀ ୭ମ ମହନ୍ତ ରୂପେ ଅଭିଷିକ୍ତ ହେଲେ । ସେ ଖୁବ୍ କମ୍ ଦିନ ମହନ୍ତ ହୋଇଥିଲେ । ପ୍ରାୟ ୪ବର୍ଷ ମାତ୍ର ସମୟ । ସେ ବହୁତ ସୌଖୀନ ମହନ୍ତ ଥିଲେ । ମଠ ବାଡ଼ିର ଓ ମଠର ସୌନ୍ଦର୍ଯ୍ୟକରଣ କରିବାକୁ ଫୁଲବଗିଚା ସୃଷ୍ଟି କଲେ ଏବଂ ମଠରେ ହରିଣ, ଘୋଡ଼ା ବିଭିନ୍ନ ପଶୁପକ୍ଷୀ ଇତ୍ୟାଦି ପାଳନ କରିଥିଲେ । ମଧୁପୁର ରାଜା ଓ ସୁକିନ୍ଦା ରାଜାଙ୍କ ସହିତ ତାଙ୍କର ବ୍ୟକ୍ତିଗତ ବନ୍ଧୁତା ଥିଲା । ଘଟମଂଗଳା ଠାକୁରାଣୀଙ୍କ ମନ୍ଦିର ଚାରିପାଖରେ ବେଢ଼ା ନିର୍ମାଣ କରିଥିଲେ । ମା' ମଂଗଳାଙ୍କ ପାଖରେ ମାନସିକ ବୋଦାବଳି ପଡୁଥିଲା । ଶନିବାର ଓ ମଂଗଳବାର ଦିନ ବୋଦା ବଳି ପଡ଼େ । ଏଥିପାଇଁ ଟିକର ଗ୍ରାମରୁ ଜାୟଗିରି ଦଇ ଚମାର ନିଯୁକ୍ତ କରିଥିଲେ । ଏବେ ଏହି ବଳି ପ୍ରଥା ଉଠିଯାଇଅଛି ।

ତତ୍‌ପରେ କୃଷ୍ଣଚନ୍ଦ୍ର ଭାରତୀ ଅଷ୍ଟମ ମହନ୍ତ ରୂପେ ଶିରିପା ନେଲେ । ସମୟ ଖ୍ରୀ୧୯୧୮ରୁ ୧୯୩୯ ମସିହା । ତାଙ୍କ ସମୟରେ ମଠର ବହୁ ଅବକ୍ଷୟ ହେଲା । ବହୁ ସଂପତ୍ତି ନିଲାମ ହୋଇଗଲା ଓ ହସ୍ତାନ୍ତର ହୋଇଗଲା । ମଠର ଆର୍ଥିକ ଅବସ୍ଥା ଶୋଚନୀୟ ହୋଇପଡ଼ିଲା । ବଡ଼ ତ୍ରିଲୋଚନପୁର ମୌଜା ୧୭୩୨ ନମ୍ବର ତଉଜି ୮୮ ଏକର ସଂପତ୍ତି ନରସିଂହ ଚଉଧୁରୀ ନିଲାମ କରି ନେଇଗଲେ । ଏପରିକି ମଠର ବିଜେସ୍ଥଳୀକୁ କେନ୍ଦୁଝର ରାଜା ବାଜ୍ୟାପ୍ତି କରିବାକୁ ପଦକ୍ଷେପ ନେଲେ । କାରଣ ରାଜାଙ୍କୁ ମହନ୍ତ ରାଜସ୍ୱ ଦେଲେ ନାହିଁ । ଏକ ଖିଆଲି ଢଂଗରେ ସମୟ ବିତାଇଲେ । କେବଳ ଘାଟମଂଗଳାଙ୍କ ପୀଠରେ ଭକ୍ତମାନଙ୍କ ସହାୟତାରେ ଦୁଇଗୋଟି ସିଂହ ନିର୍ମାଣ କରିଥିଲେ । ଏହା ଅତ୍ୟନ୍ତ ସୁନ୍ଦର ଏବଂ ଏ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ଭାବେ ଦଣ୍ଡାୟମାନ । କୃଷ୍ଣଚନ୍ଦ୍ର ମହନ୍ତଙ୍କର ୧୯୩୯ ମସିହାରେ ଅସ୍ୱାଭାବିକ ମୃତ୍ୟୁ ଘଟିଲା । ୧୯୪୦ ମସିହାରେ ଆମ୍ଭର ଗୁରୁଦେବ ତଥା ଜ୍ୟେଷ୍ଠପିତା ନବକିଶୋର ଭାରତୀ

ଗୋସ୍ୱାମୀ ନବମ ମହନ୍ତ ରୂପେ ଗାଦୀ ଆସୀନ ହେଲେ । ପ୍ରଥମ ଅବସ୍ଥାରୁ ସେ ବହୁ ମାଲିମକଦ୍ଦମାରେ ସମ୍ମୁଖୀନ ହୋଇଥିଲେ । ପୂର୍ବତନ ମହନ୍ତ ଖଂଜଣା ପୈଠ ନକରିବାରୁ ମଠର ବିଜେସ୍ଥଳୀ ନିଲାମ ପର୍ଯ୍ୟାୟକୁ ଆସିଗଲା । ସେ କେନ୍ଦୁଝରର ରାଜାଙ୍କ ସହିତ ମକଦ୍ଦମା କରି ଓଡ଼ିଶା ଉଚ୍ଚନ୍ୟାୟଳୟରୁ ଡିଗ୍ରୀ କରି ମଠକୁ ଓ ମଠବାଡ଼ିକୁ ଉଦ୍ଧାର କରିଥିଲେ । ମଠର ଅର୍ଥନୀତି ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିଲା । ତଥାପି ତାଂକ ସମୟରେ ସେ ମଠର ହୃତଗୌରବ ଫେରାଇ ଆଣିବାକୁ ସକ୍ଷମ ହୋଇଥିଲେ । ସେ ସଂଗୀତ ପ୍ରିୟ ଥିଲେ । ସଂଗୀତ ଓ ନାଟ୍ୟ କଳା ପ୍ରତି ତାଙ୍କର ଯଥେଷ୍ଟ ଦୁର୍ବଳତା ଥିଲା । ତେଣୁ ପ୍ରଥମରୁ ହିଁ ସେ ସେଥିରେ ମନନିବେଶ କରିଥିଲେ । ଓଡ଼ିଶାର ପ୍ରଥମ ସିନେମା ଓ ମଂଚ ଅଭିନୟର ପଥପ୍ରଦର୍ଶକ ଓ ଓସ୍ତାଦ ମୋହନ ଚରଣ ଗୋସ୍ୱାମୀଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ସେ ଏକ ରାସଦଳ ଗଠନ କରିଥିଲେ । କୃଷ୍ଣଲୀଳା ଗୀତା ଅଭିନୟ କରି ସେ ସେତେବେଳେ ଏ ଅଂଚଳରେ ଖୁବ୍ ନାମ କରିଥିଲେ । ବିଶେଷ କରି ମୋହନ ଗୋସ୍ୱାମୀଙ୍କ 'ମାନଭଂଜନ' ନାଟକ ଅଭିନୟ ଖୁବ୍ ଆଦର ଲାଭ କରିଥିଲେ । ଏଥିରେ କଳାକାରମାନେ ସୁନ୍ଦର ଅଭିନୟ କରୁଥିଲେ । ମୁଖ୍ୟତ କୀର୍ତ୍ତନ ବିହାରୀ ସାହୁ, ଅନନ୍ତ କର, ଦୟାନିଧି ପଣ୍ଡା, ଜଗନ୍ନାଥ ଦାସ, ବୈରାଗୀ ନାଥ, ନୃସିଂହ ପତି, ଆନନ୍ଦ କର, ବିନୋଦ ସାହୁ, ଯଦୁ ପତି, ମୂରଲୀ ସାହୁ ବାଲ୍ୟକାଳରୁ ମଠ ରାସଦଳ ସହିତ ସଂପୃକ୍ତ ଥିଲେ । କୀର୍ତ୍ତନ ବିହାରୀ ସାହୁ ଓ ଅନନ୍ତ କର ସଂଗୀତ ପରିବେଷଣ ମନମୁଗ୍ଧକର ଥିଲା ଏବଂ ସେମାନଙ୍କର ଅଭିନୟ ସର୍ବୋତ୍କୃଷ୍ଟ ଥିଲା । ସେମାନେ ଆଉ ଇହଧାମରେ ନାହାନ୍ତି । ସେମାନଙ୍କର ଏହି ଗୀତାଭିନୟନ ଏ ଅଂଚଳରେ ଚହଳ ପକାଇ ଦେଇଥିଲା । ମଠରେ ଶ୍ରୀ ଘାଟମଂଗଳା ପୀଠରେ ପ୍ରତିବର୍ଷ ଏହି ନାଟକ ଓ ସଂଗୀତ କଳା ପ୍ରଦର୍ଶିତ ହେଉଥିଲା । ତା' ଛଡ଼ା କୋଳଥଳ ଗୋପାଳ ଜୀଉଙ୍କ ମନ୍ଦିର ଓ ହରିପୁର ପ୍ରଭୃତି ଗ୍ରାମକୁ ଯାଇ ମଠରେ ଅଭିନୟ କରି ବିଶେଷ ଆଦର ଲାଭ କରିଥିଲେ । କିଛି ବର୍ଷପରେ ଏହି ରାସଦଳ ଭାଂଗିଗଲା ।

ନାଟ୍ୟକାର ଓ କବି କାଳିଚରଣ ପଟ୍ଟନାୟକ ପ୍ରଥମେ ଓଡ଼ିଶାରେ ସାମାଜିକ ନାଟକ ମଂଚ ଅଭିନୟ ପ୍ରଦର୍ଶକ ଥିଲେ । ସେ କଟକରେ 'ଓଡ଼ିଶା ଥିଏଟର' ପ୍ରତିଷ୍ଠା କରି ତାଙ୍କର କଳାକୃତି ପ୍ରସାର କରି ଓଡ଼ିଶାରେ ସୁନାମ ଅର୍ଜନ କରିଥିଲେ । ତାଙ୍କ ସଂସ୍ପର୍ଶରେ ମହନ୍ତ ନବକିଶୋର ଭାରତୀ ଆସିଥିଲେ । ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ସେ ମଠରେ ଏକ ଥିଏଟରପାର୍ଟି ଗଠନ କରିଥିଲେ । ଏଥିରେ ପ୍ରମୁଖ ଭୂମିକାରେ ମୋ' ସ୍ୱର୍ଗୀୟ ପିତା ନିତ୍ୟାନନ୍ଦ ଭାରତୀ ଥିଲେ ଅଗ୍ରଗଣ୍ୟ । ସେ ମୁଖ୍ୟ ଭୂମିକାରେ ଅଭିନୟ କରି ଜନମାନସକୁ ଆକୃଷ୍ଟ କରୁଥିଲେ । ଉକ୍ତ ଥିଏଟର ପାର୍ଟିରେ ପ୍ରମୁଖ

କଳାକାରମାନେ ଥିଲେ, ଯଥା- ବିନୋଦ ସାହୁ, ମହେଶ୍ୱର ପାଣିଗ୍ରାହୀ, ରାମଚନ୍ଦ୍ର ମିଶ୍ର, ଗୋପାଳ ଦାସ (ଭୋଟକା), ଭୀମନାଥ, ଭାସ୍କର ଦାସ, ସହଦେବ ବେହେରା, ଘନ ସାହୁ, ଅନାମ ସାହୁ, ମନୋହର ବାଇ, କାଳନ୍ଦି କର, ନୃସିଂହ ପତି, ଯୋଗୀ ସାହୁ ଇତ୍ୟାଦି । ଏହି ଥିଏଟର ପାର୍ଟିରେ ସଂପୃକ୍ତ ଥାଇ ଯୋଶାଦାର ଭାବେ ନାଟ୍ୟ ପରିବେଷଣ କରୁଥିଲେ । ନାଟକ ଗୁଡ଼ିକ ଥିଲା- ଗୟାସୁର ବଧ, ଜୟଦେବ, ମୂଲିଆ, ଭାତ, କର୍ଣ୍ଣାର୍ଜୁନ, ଜାନକୀ, ବୈରାଗୀର ସଂସାର ଇତ୍ୟାଦି । ମଂଚ ଉପରୁ ମହନ୍ତଙ୍କର ସୁଲଳିତ କଣ୍ଠର ସଂଗୀତ ଦର୍ଶକମାନଙ୍କୁ ଆକର୍ଷଣ କରୁଥିଲା । ମଠରେ ଓ ଘାଟମଂଗଳାଙ୍କ ପୀଠରେ ଷ୍ଟେଜ ତିଆରି ହୋଇ ପର୍ବମାନଙ୍କରେ ନାଟକ ପ୍ରଦର୍ଶିତ ହୁଏ । ଏହି କଳାକାରମାନଙ୍କ ମଧ୍ୟରୁ ଅଳ୍ପ କେତେକଙ୍କୁ ଛାଡ଼ିଦେଲେ ସମସ୍ତେ ଇହଧାମ ତ୍ୟାଗ କଲେଣି । ସମୟର ସ୍ରୋତରେ ସବୁକିଛି ହଜିଯାଉଛି, ହେଲେ ସେ ସ୍ମୃତି ଏବେ ବି ମନରେ ଜାଗ୍ରତ ହେଉଛି । ବିନୋଦ ସାହୁ, ମହେଶ୍ୱର ପାଣିଗ୍ରାହୀ, ନୃସିଂହ ପତି ସେ ସମୟରେ ବେଷ୍ଟ କମିକ୍ ରୋଲ କରୁଥିଲେ । ଏହି କଳାକୁ ବିକାଶ କରିବାରେ ସେମାନେ ନିଃସ୍ୱାର୍ଥପର ଭାବେ ମହନ୍ତଙ୍କ ସହିତ ସହଯୋଗ କରୁଥିଲେ ।

ନବ କିଶୋର ଭାରତୀ ସଂଗୀତରେ ମଜ୍ଜି ରହୁଥିଲେ । ପ୍ରାୟ ଅଧିକାଂଶ ସମୟରେ ବିଶିଷ୍ଟ ସଂଗୀତଜ୍ଞମାନେ ମଠକୁ ଆସି ସଂଗୀତ ଆସର କରୁଥିଲେ । ପର୍ବମାନଙ୍କରେ ସେ ନିୟମିତ ଗୀତ ବୋଲୁଥିଲେ । ସଂଗୀତକଳାରେ କୀର୍ତ୍ତନ ବିହାରୀ ସାହୁ ତାଙ୍କର ପଟ୍ଟଶିଷ୍ୟ ଥିଲେ । ଶେଷଜୀବନ ପର୍ଯ୍ୟନ୍ତ ମଠ ସଂସ୍କୃତି ସହିତ ଶ୍ରୀ ସାହୁ ଜଡ଼ିତ ଥିଲେ ।

**ମଂଗଳା ମେଲଣ-** ସବୁଠାରୁ ବଡ଼ କୃତି ହେଲା ତାଙ୍କର ଖଣ୍ଡିତର ଘାଟମଂଗଳା ମେଲଣ । ସେ ମେଲଣର ପ୍ରତିଷ୍ଠାତା ଥିଲେ । ଏହି ମେଲଣ ଯଦିଓ ବୃନ୍ଦାବନ ମହନ୍ତଙ୍କ ସମୟରେ ଆରମ୍ଭ ହୋଇଥିଲା, କେବଳ ଔପଚାରିକ ମତେ ମଦନମୋହନ (ରାଧାକୃଷ୍ଣ) ଥାନପତି ହୋଇ ଆସନ୍ତି । ଶାସନ ରାଧାକୃଷ୍ଣ ବିମାନରେ ଯାଇ ଘଟମଂଗଳାଙ୍କ ପୀଠରେ ମେଲଣ ପଡ଼ିଆରେ ବସନ୍ତି ପୂର୍ଣ୍ଣମା ଦିନ । ନବକିଶୋର ଭାରତୀ ମଠାଧୀଶ ହେଲାପରେ ପୂର୍ଣ୍ଣମୀ ବାସିଦିନ ବଡ଼ ଆକାରରେ ଆରମ୍ଭ କରିଥିଲେ । ସେ ଗ୍ରାମର ଜମିଦାର ଥିଲେ । ତେଣୁ ଗ୍ରାମର ପ୍ରତ୍ୟେକ ଘର ଉପରେ ଚାନ୍ଦା ଧାର୍ଯ୍ୟ କରିଥିଲେ । ଖଣ୍ଡିତର ଖରସ୍ରୋତା ନଦୀ ଗଣ୍ଡରୁ ମାଛନିଲାମ ଆୟ ଓ ଛନ୍ଦାବନ୍ଧା ଇତ୍ୟାଦି ଆୟର ଉତ୍ସ ସୃଷ୍ଟି କରି ମେଲଣ ଆରମ୍ଭ କଲେ । ଏଥିରେ ଗ୍ରାମବାସୀମାନେ ସଂପୂର୍ଣ୍ଣ ସହଯୋଗ କଲେ । ଗ୍ରାମର ବିଶିଷ୍ଟ ବ୍ୟକ୍ତି ଭୀମ ସାହୁ, ମାର୍କଣ୍ଡ ତିଆଡ଼ି, ଭିକାରୀ ମିଶ୍ର, କୃଷ୍ଣଚନ୍ଦ୍ର ସାହୁ, ମେଘନାଦ କର ଇତ୍ୟାଦିକୁ ନେଇ ଏକ ମେଲଣ

କମିଟି ଗଠନ କରି ମେଲଣ ସୂଚାରୁ ରୂପେ ପରିଚାଳନା କରୁଥିଲେ । ଧର୍ମଶାଳା ମୁନସୀ ମେଲଣର ପରବର୍ତ୍ତୀ ସ୍ଥାନ ଖଣ୍ଡିତର ମେଲଣ ଅଧିକାର କଲା ଧର୍ମଶାଳା ଓ କୋରେଇ ଥାନାରେ । ବିଶେଷକରି କୋରେଇ ଥାନାରୁ ଏହି ମେଲଣ ଦେଖିବାକୁ ବହୁଲୋକ ଆସୁଥିଲେ । ମୁଖ୍ୟତ ହରିପୁର ବୃନ୍ଦାବନଚନ୍ଦ୍ର, ଓ ଢିଅସାହି ଗୋପୀନାଥଜୀଉ ବଡ଼ବିମାନରେ ବିଜେହୋଇ ଆକର୍ଷଣୀୟ ପଟୁଆର କରି ମେଲଣକୁ ଆକର୍ଷଣୀୟ କରୁଥିଲେ ଓ କୋଳଥଳର ଗୋପାଳଜୀଉ ଠାକୁର ମଧ୍ୟ ଖୁବ୍ ପଟୁଆର କରୁଥିଲେ । ଏତଦ୍‌ଭିନ୍ନ ଗୋପାଳପୁର, ଏକତଳା, ବଣ୍ଟରା, ଇଚ୍ଛାପୁର, ଘୋଳପୁର, ନାଉଡ଼ପୁର, କୁରୁପଦା, ବରପଦା, ବାରଦା ଇତ୍ୟାଦି ଗ୍ରାମରୁ ଠାକୁର ବିମାନରେ ଆସୁଥିଲେ । ପ୍ରାପ୍ତ ୩୦/୩୫ ଖଣ୍ଡ ବିମାନ ମେଲଣରେ ଯୋଗ ଦେଉଥିଲେ ଓ ବହୁ ଲୋକ ମଧ୍ୟ ବିମାନ ସଂଗେ ଆସୁଥିଲେ । ଏକ ପ୍ରଖ୍ୟାତ ମେଲଣ ଭାବେ କୋରେଇ ଓ ଧର୍ମଶାଳା ଥାନାରେ ସୃଷ୍ଟି ହେଲା । ୧୯୨୫ ମସିହାରେ ୨୫ ବର୍ଷର ପୂର୍ଣ୍ଣ ପାଇଁ ରୌପ୍ୟ ଜୁବୁଲି ହୋଇଥିଲା । ମହନ୍ତ ବକ୍ତିଗତ ଭାବେ ବହୁ ପଇସା ଖରଚ କରିଥିଲେ । ଗ୍ରାମର ଦୟାନିଧି ପଣ୍ଡା ଗେଟ ଇତ୍ୟାଦି ବହୁ ଡେକୋରେସନ କାର୍ଯ୍ୟ କରିଥିଲେ । କଟକରୁ ଗ୍ୟାସ ଝାଡ଼ ଓ ଡାଇନାମା ଆସି ଆଲୋକ ସଜ୍ଜା ହୋଇଥିଲା । ଏବେ ମଧ୍ୟ ସେହି ମେଲଣ ଚାଲିଛି । ଗ୍ରାମର ମେଲଣ କମିଟି ଏହାର ପରିଚାଳନା କରୁଅଛନ୍ତି ।

**ଖଣ୍ଡିତର ହାଇସ୍କୁଲ-** ସାମାଜିକ କାର୍ଯ୍ୟରେ ମଧ୍ୟ ମହନ୍ତ ମହାରାଜ ସମୟ ଦେଉଥିଲେ । ୧୯୬୫ ମସିହାରେ ଗ୍ରାମର ଶିକ୍ଷାବିଦ୍ ବାଞ୍ଛାନିଧି ପଣ୍ଡା ସହ ମିଶି ଖଣ୍ଡିତରେ ହାଇସ୍କୁଲ ଆରମ୍ଭ କରିଥିଲେ । ସେଥିରେ ସଭାପତି ଓ ବାଞ୍ଛାନିଧି ପଣ୍ଡା ଥିଲେ ସଂପାଦକ ଓ ଗ୍ରାମର ବହୁ ବିଶିଷ୍ଟ ବ୍ୟକ୍ତି ଓ ଶିକ୍ଷା ପ୍ରେମୀ ବ୍ୟକ୍ତି, ଯଥା- ରାମଚନ୍ଦ୍ର ମିଶ୍ର, ପଠାଣୀ ପୃଷ୍ଟି, ବନମାଳୀ ନାୟକ ପ୍ରମୁଖ ବ୍ୟକ୍ତିମାନେ ସଂପୂର୍ଣ୍ଣ ସହଯୋଗ କରିଥିଲେ ।

ଶ୍ରୀଘାଟମଂଗଳା ପୀଠରେ ମହନ୍ତଙ୍କର ଏକ ବଂଗଳା ଘର ଥିଲା । ଘରଟି ଥିଲା ପକା ଓ ଛଣ ଛପର । ସେହି ଗୃହରେ ଅଷ୍ଟମ ଶ୍ରେଣୀ ଆରମ୍ଭ ହେଲା । ପରବର୍ଷ ଝାଟିମାଟି ଓ ତାଳ କାଠରେ ପାର୍ଶ୍ୱରେ ଏକ ଲମ୍ବା ଘର ତିଆରି ହୋଇ ଅନ୍ୟାନ୍ୟ ଶ୍ରେଣୀ ଖୋଲିଲା । ତିନିଜଣ ଶିକ୍ଷକ ମଠରେ ରହିଲେ । ସରକାରୀ ଅନୁଦାନ ପର୍ଯ୍ୟନ୍ତ ଏହି ଶିକ୍ଷକମାନଙ୍କର ଖାଦ୍ୟପେୟର ଭାର ମଠ ବହନ କରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଗ୍ରାମର ସମାଜସେବୀ ପଠାଣୀ ପୃଷ୍ଟି ବିଦ୍ୟାଳୟର ସଂପାଦକ ହୋଇ ସ୍କୁଲଟିକୁ ପୂର୍ଣ୍ଣାଂଗ କରି ସରକାରୀ ଅନୁଦାନ କରାଇଥିଲେ । ବିଦ୍ୟାଳୟ ସରକାରୀ ହେବା ପର୍ଯ୍ୟନ୍ତ ମହରାଜ । ପରିଚାଳନା କମିଟିର ସଭାପତି ରହିଥିଲେ । ଖାଲି ସେତିକି ନୁହେଁ ସେ ଗ୍ରାମର ପ୍ରାଇମେରୀ, ମି.ଇ. ସ୍କୁଲର ପରିଚାଳନା କମିଟିର ସଭାପତି

ଥିଲେ । ବର୍ତ୍ତମାନ ଏହି ଉଚ୍ଚବିଦ୍ୟାଳୟ ପ୍ରମୁଖ ସରକାରୀ ଉଚ୍ଚବିଦ୍ୟାଳୟ ରୂପେ ଅଂଚଳର ଖ୍ୟାତ । ଏହାର ୫୦ବର୍ଷର ପୂର୍ତ୍ତି ବା ସ୍ୱର୍ଣ୍ଣଜୟନ୍ତୀ ଯାକଜମକରେ ପାଳନ କରାଯାଇଅଛି ।

ସର୍ବଶେଷରେ ତାଙ୍କର ଗୀତିକାର ଜୀବନ ବିଷୟରେ କିଛି କଥା ଅଦୃଷ୍ଟ ହୋଇ ରହିଯାଇଅଛି । ଅନେକ ଗୀତ ସେ ନିଜେ ରଚନା କରି ସ୍ୱର ଦେଇ ନିଜେ ଗାଉଥିଲେ ଏବଂ ତାଙ୍କର ଶିଷ୍ୟମାନଙ୍କୁ ମଧ୍ୟ ଶିକ୍ଷା ଦେଉଥିଲେ । ଶ୍ରୀମଦନ ମୋହନଙ୍କ ଝୁଲଣ ଓ ହୋଲି ସଂଗୀତ ରଚନା ଓ ସ୍ୱର ସଂଯୋଜନା ଏକ ଅନବଦ୍ୟ ସୃଷ୍ଟି କହିଲେ ଅତ୍ୟୁକ୍ତି ହେବ ନାହିଁ, ଯାହାକି ଲୋକଲୋଚନକୁ ଆସିପାରି ନାହିଁ । ଏହି ସଂଗୀତକୁ ହୋଲିରେ ଓ ଝୁଲଣରେ ପରିବେଷଣ କରିବାକୁ ଏକ କୀର୍ତ୍ତନ ଦଳଗଠନ କରିଥିଲେ । ଗ୍ରାମର ଏହି ଯୁବକମାନେ ସେତେବେଳେ ମହନ୍ତଙ୍କ ସହିତ ଝୁଲଣରେ ଓ ମେଲଣରେ ସୁଲଳିତ କଣ୍ଠରେ ଗାନ କରି ଆଧ୍ୟାତ୍ମିକ ପରିବେଶ ସୃଷ୍ଟି କରୁଥିଲେ । ମନେପଡୁଛି ବହୁ ଦର୍ଶକ ଓ ଶ୍ରୋତା ମନ୍ତ୍ରମୁଗ୍ଧ ହୋଇ ଉପଭୋଗ କରୁଥିଲେ । ଯେଉଁମାନେ ସେହି ସଂଗୀତ ଦଳରେ ସଂପୃକ୍ତ ଥିଲେ ସେମାନଙ୍କ ମଧ୍ୟରୁ କେତେକ ବର୍ତ୍ତମାନ ଜୀବିତ ଅଛନ୍ତି । ଯଥା- ୧. ବାସୁ ନାୟକ, ୨. ଭୀମ ନାଥ, ୩. ଶେଷନ ସାହୁ, ୪. ପଂଚାନନ ସାହୁ, ୫. ସହଦେବ ବେହେରା ପ୍ରମୁଖ ।

ସେହି ପାଣ୍ଡୁଲିପିକୁ ଆପାତତଃ ସଂଗ୍ରହ କରି ମୁଁ ଏଥି ସହିତ ସଂଯୁକ୍ତ କଲି । କାରଣ ଭବିଷ୍ୟତରେ କେହି ଗୁଣଗ୍ରାହୀ ସଂଗୀତ ପ୍ରେମୀ ଏହାର ସଦ୍‌ଉପଯୋଗ କରି ପ୍ରଚାର ପ୍ରସାର କରିପାରନ୍ତି । ବିଶେଷ କରି ତାଙ୍କର ଜୀବନର ଅନୁଭୂତିକୁ ନେଇ ଭକ୍ତିପୂତ ଭାବେ ଶ୍ରୀମଦନ ମୋହନଙ୍କୁ ଜଣାଣ କରି ଯେଉଁ ଚଉତିଶାଟିକୁ ରଚନା କରିଛନ୍ତି, ତାହା ଅତ୍ୟନ୍ତ ହୃଦୟ ସ୍ପର୍ଶୀ- ସର୍ବପ୍ରଥମେ ସେ ଚଉତିଶାଟିକୁ ଉଲ୍ଲେଖ କରିବାକୁ ମନସ୍ଥ କଲି ।

"କରୁଣା ଆକର ବୃଥା କାରବାର ହୁଏକି ଏହି ସଂସାରେ
ଏବେ ହେଁ ମୁଖେ ଆଜି ଭାଷିବ ପ୍ରେମ କେହି ନଭାଷନ୍ତି ଥରେ
ମହାପ୍ରଭୁ ହେ, କବଳେ ପଡ଼ିଛି ଧରା
ସାରା ଅବାତାର ତୋ' ଦରବାରରେ କେହିନାହିଁ ମୋ' ଆସରା ।"

**ନିଜକଥା:-**

"ଶ୍ରେୟାନ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ ସ୍ୱନୁଷ୍ଠିତାତ୍
ସ୍ୱଧର୍ମେ ନିଧନଂ ଶ୍ରେୟଃ ପର ଧର୍ମୋ ଭୟାବହଃ ।।"

ନିଜର ବର୍ଣ୍ଣ, ଆଶ୍ରମ, ପରଂପରା ପ୍ରଭୃତିର ଧର୍ମ ବାହ୍ୟ ଦୃଷ୍ଟିରୁ ଯେତେ ସ୍ୱଳ୍ପ ଗୁଣଯୁକ୍ତ ହୋଇଥାଉ, ତା'ର ପାଳନ ଯେତେ କଠିନ ହେଉଥାଉ, ପାଳନକରିବାରେ ମନ ଲାଗୁ ନଥାଉ ଏବଂ ସୁଖ ସୁବିଧାମାନ ଇତ୍ୟାଦି ନମିଳିବା ସଂଗେ ସଂଗେ ତାହା ପାଳନ କରିବାରେ ଜୀବନ ସାରା ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଥାଏ, ତଥାପି ସ୍ୱଧର୍ମକୁ ନିଷ୍କାମ ଭାବେ ପାଳନ କରିବା ବିଧେୟ । କାରଣ ଏହା କଲ୍ୟାଣ ଯୁକ୍ତ । ଏହା ହିଁ ଗୀତାର ମର୍ମବାଣୀ ।

୧୯୯୧ ମସିହା ଫେବୃୟାରୀ ୨୦ ତାରିଖରେ ନବକିଶୋର ଭାରତୀ ମୋ'ରି କୋଳରେ ଶେଷନିଃଶ୍ୱାସ ତ୍ୟାଗକଲେ । ଯିବାପୂର୍ବରୁ ମୋତେ ଚେଲାରୂପେ ସ୍ୱୀକାର କରି ତାଙ୍କର ମୃତ୍ୟୁପରେ ଗାଦୀନ୍ୟାସନ ହୋଇ, ତିଳତର୍ପଣାଦି ସୁଧିକ୍ରିୟା, ସାଧୁଭୋଜନ, ଗ୍ରାମବାସୀ, ପ୍ରଜାପାଟକ ଓ ସେବାୟତମାନଙ୍କୁ ପ୍ରସାଦ ସେବା କରାଇବା ଇତ୍ୟାଦି କାର୍ଯ୍ୟମାନ କରିବା ପାଇଁ ଦାୟିତ୍ୱ ଦେଇଗଲେ । ମଠର ସୁରକ୍ଷା ଶ୍ରୀଜୀଉଙ୍କର ସେବାପୂଜା ଇତ୍ୟାଦି ସମସ୍ତ ଦାୟିତ୍ୱ ନିର୍ବାହ କରିବାର କ୍ଷମତା ରେଜେଷ୍ଟ୍ରି ଉଇଲ୍ ମାଧ୍ୟମରେ ଦେଇଗଲେ ଏବଂ ଦେବୋତ୍ତର ବିଭାଗ ଦ୍ୱାରା ମଧ୍ୟ ପ୍ରଚଳିତ ଆଇନ ଅନୁସାରେ ଅନୁମୋଦିତ କରାଇଥିଲେ ।

ପେଶାରେ ମୁଁ ଶିକ୍ଷକ । କ୍ଷେତ୍ରପାଳ ଉଚ୍ଚ ବିଦ୍ୟାଳୟ, କୋଳଥଳର, ସ୍ଥାପନ ଦିନଠାରୁ ଅନୁଷ୍ଠାନ ଗଢ଼ିବାରେ ମୁଁ ନିୟୋଜିତ ହୋଇଥିଲି । ଶିକ୍ଷକତାକୁ ଜୀବନସାରା ଆଦରି ନେବାର ପ୍ରେରଣା ମୂଳରେ ଏକଘଟଣା ନିହିତ । ୧୯୭୭ ମସିହା ଜୁନ୍ ୨୯ ତାରିଖ । ସେଦିନ କୋଳଥଳ ଗ୍ରାମର ବଦାନ୍ୟ ବ୍ୟକ୍ତି ୰ ରାଜକିଶୋର ମହାନ୍ତି ତାଙ୍କ ଗ୍ରାମରେ ଏକ ଉଚ୍ଚବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ସଲଗ୍ନ ପ୍ରାୟ ୧୦ ଖଣ୍ଡ ଗ୍ରାମର ମୁଖ୍ୟ ବ୍ୟକ୍ତିମାନଙ୍କୁ ନେଇ ଏକ ସଭା କରିଥିଲେ । ମୋ'ର ଅନ୍ତରଂଗ ବାଲ୍ୟସଖା ୰ ଅଖିଳ ମହାନ୍ତି, ଅରଡ଼ା ମୋତେ ସେଠି ପ୍ରଧାନଶିକ୍ଷକ ଦାୟିତ୍ୱ ତୁଲାଇବା ପାଇଁ ପ୍ରସ୍ତାବ ଦେଲେ ଏବଂ ଉକ୍ତ ସଭାକୁ ସେ ମୋତେ ଘରୁ ଆସି ଡାକିନେଲେ । ଗ୍ରାମର ଅଧିଷ୍ଠାତ୍ରୀ ଦେବୀ କ୍ଷେତ୍ରପାଳଙ୍କ ନାମରେ ଏକ ଉଚ୍ଚବିଦ୍ୟାଳୟ ଗଠନ କରିବାର ସର୍ବସମ୍ମତି ପ୍ରସ୍ତାବ ଗୃହୀତ ହେଲା । ମୋତେ ସେ ପ୍ରସ୍ତାବିତ ଉଚ୍ଚବିଦ୍ୟାଳୟରେ ପ୍ରଧାନଶିକ୍ଷକ ହେବାପାଇଁ ମତାମତ ନିଆଗଲା । କ୍ଷେତ୍ରପାଳ ଦେବୀଙ୍କ ମହିମା ଅପାର । ଏହି ନୂତନ ପ୍ରସ୍ତାବିତ ବିଦ୍ୟାଳୟ ପ୍ରତି ମୋ'ର ଆନୁରାଗ ସୃଷ୍ଟି ହେଲା କାରଣ କେତେକ ଘଟଣା ମୋ' ହୃଦୟକୁ ଗଭୀର ଭାବେ ସ୍ପର୍ଶ କରିଥିଲା । ସ୍କୁଲର ପ୍ରତିଷ୍ଠାତା ବ୍ରଜବାବୁ କହିଲେ- କ୍ଷେତ୍ରପାଳଦେବୀଙ୍କ ପାଖରେ ମୁଣ୍ଡ ବିକିବାକୁ ଯଦି ଶପଥ ନେବ, ତାହା ହେଲେ ମା'ଙ୍କ ଅଶେଷ କୃପା ଲାଭ କରିବ । ସ୍କୁଲର ଜମିଦାତା ୰

ହରେକୃଷ୍ଣ ଦାଶ କହିଲେ- ତୁମେ ମହନ୍ତଙ୍କର ପୁତ୍ର । ତେଣୁ ତୁମ ପାଦରେ ଆମ୍ଭେ ବାଟ ଚାଲିବୁ, ତେବେ ଅନୁଷ୍ଠାନ ପୂର୍ଣ୍ଣାଙ୍ଗ ହେବ । ମୁଁ ସ୍ୱୀକୃତି ଦେଲି ଏବଂ ଜୟ ଜୟକାର ମଧ୍ୟରେ ମୋତେ ପ୍ରଧାନ ଶିକ୍ଷକ କରିବା ପ୍ରସ୍ତାବ ସର୍ବସମ୍ମତି କ୍ରମେ ଗୃହୀତ ହେଲା । ମଠରେ ଆସି ମହନ୍ତଙ୍କର ପରାମର୍ଶ ନେଲି । ସେ କହିଲେ- ଚାକିରି କରିବା ଓ ଅନୁଷ୍ଠାନ ଗଢ଼ିବାରେ ବହୁ ପାର୍ଥକ୍ୟ । ତେଣୁ ତୁମେ କୋଳଥଳରେ ହେଡ଼ ହୋଇ ଅନୁଷ୍ଠାନ ଗଢ଼ିଚାଲ । ତୁମର ଭବିଷ୍ୟତ ଉଜ୍ଜ୍ୱଳ ହେବ । ପରବର୍ତ୍ତୀ ବ୍ୟବସ୍ଥାରେ ତୁମେ ଖଣ୍ଡିତର ହାଇସ୍କୁଲକୁ ପ୍ରଧାନ ଶିକ୍ଷକ ହୋଇ ଆସିବ, କାରଣ ଏହି ଅନୁଷ୍ଠାନ ମୁଁ ଗଢ଼ିଅଛି- ଏହା ହିଁ ହେଲା ଶିକ୍ଷକ ଜୀବନର ଅୟମାରମ୍ଭ ଓ ମୂଳଦୁଆ ।

ମହନ୍ତଙ୍କର ତିରୋଧାନ ପରେ ଏତେବଡ଼ ମଠର ପରିଚାଳନା କରିବା ଓ ନୂତନ ବିଦ୍ୟାଳୟର ଦାୟିତ୍ୱ ତୁଲାଇବା ମୋ' ପକ୍ଷରେ ଦୂରୁହବ୍ୟପାର ହୋଇ ପଡ଼ିଲା । ତଥାପି ସ୍ୱଧର୍ମ ପାଳନ ପାଇଁ ଜୀବନସାରା ସଂଗ୍ରାମ କରିଆସୁଅଛି । ବୃନ୍ଦାବନ ମହନ୍ତ ତିଆରି କରିଥିବା ମଠ ମନ୍ଦିର ସବୁ ଜରାଜୀର୍ଣ୍ଣ ହୋଇ ଭାଙ୍ଗିପଡ଼ିଲା । କାରଣ ପ୍ରତିବର୍ଷ ପ୍ରଳୟଙ୍କରୀ ବନ୍ୟାରେ ମାସାଧିକ କାଳ ପାଣିରେ ବୁଡ଼ି ରହିଥିବାରୁ ଏହି ନିର୍ମାଣ ଦୁର୍ବଳ ହୋଇଗଲା । ମଠର ଆର୍ଥିକ ବ୍ୟବସ୍ଥା ଓ ସ୍ୱଳ୍ପ ଆୟରେ ଏହାର ପୁନଃ ନିର୍ମାଣ ପାଇଁ ମନ ବଳାଇଲି । ସରକାରୀ କର୍ତ୍ତୃପକ୍ଷ ତଥା ଦେବୋତ୍ତର ବିଭାଗ ଏଥିପ୍ରତି ଦୃଷ୍ଟିଦେଲେ ନାହିଁ । ସେମାନଙ୍କ ନିକଟରେ ସମସ୍ତ ପ୍ରଚେଷ୍ଟା ନିଷ୍ଫଳ ହେଲା ।

ମଠ- ଆବାହନ କାଳରୁ ଶ୍ରୀମଦନ ମୋହନ ଚାଳଘରେ ରହି ପୂଜା ପାଉଥିଲେ । ପ୍ରତିବର୍ଷ ଘରଛିଆରେ ମଦନ ମୋହନଙ୍କୁ ଶାଳଗ୍ରାମ ଗଦୀକୁ ସ୍ଥାନାନ୍ତରିତ କରାଯାଉଥିଲା । କାଳକ୍ରମେ ଏହି ଚାଳଛପର ଭାଙ୍ଗି ପଡ଼ିଲା । ଏପରିକି ସିଂହାସନଟି ମଧ୍ୟ ନଷ୍ଟ ପ୍ରାୟ ହୋଇଗଲା । ପ୍ରାରମ୍ଭରୁ ଏହି ମନ୍ଦିର କାର୍ଯ୍ୟ ଆରମ୍ଭ ହେଲା । ଯେହେତୁ ପ୍ରବାଦ ଅଛି ଶ୍ରୀଜୀଉ ଦେଉଳରେ ରହିବେ ନାହିଁ ଏବଂ ଉତ୍ତର ମୁଖା ହୋଇ ପୂଜା ପାଇବେ, ଏଣୁ ଦେଉଳ ତୋଳାଇବାକୁ ଇଚ୍ଛାଥିଲେ ମଧ୍ୟ ବାପାଙ୍କ ପରାମର୍ଶକ୍ରମେ ପକ୍କାଘର ଓ ଗେଟ୍ ତିଆରି କରି ଏବଂ ଗ୍ରାନାଇଟ୍ ପ୍ରସ୍ତରରେ ସିଂହାସନ ନିର୍ମାଣ କରି ଶ୍ରୀଜୀଉଙ୍କୁ ପୁନଃ ସ୍ଥାପିତ କଲି । ମଠର ଅନ୍ୟାନ୍ୟ ଗୃହ, ଯଥା- ଶାଳଗ୍ରାମ ଗାଦୀ, ଅଭିଷେକ ଗୃହ, ମାହାରାଜମାନଙ୍କର ସମାଧୀ ଗୃହ, ରନ୍ଧନଶାଳା, ଝୁଲଣ ମଣ୍ଡପ, କଚେରି ଗୃହ ଯାହାକି ବର୍ତ୍ତମାନ ଅତିଥିଗୃହ ହୋଇଅଛି । ତାହା ସଂପୂର୍ଣ୍ଣ ପୁନଃ ନିର୍ମାଣ କରାଯାଇଅଛି । ଆହୁରି ଅନେକ କାର୍ଯ୍ୟ ମଧ୍ୟ ବାକି ରହିଯାଇଛି ।

ଶ୍ରୀମଦନମୋହନଜୀଉଙ୍କର ଦୈନିକ ପୂଜା, ନୀତି, ଯାନିଯାତ୍ରା ନିୟମିତ ଭାବେ ହେଉଅଛି । ବିଶେଷ ପୂଜା, ହୋମ, ଗୀତା ପରାୟଣ ପ୍ରତି ପୂର୍ଣ୍ଣିମାରେ ଅନୁଷ୍ଠିତ ହେଉଅଛି ।

**ଘାଟମଂଗଳା ମନ୍ଦିର:-** ଏହି ମନ୍ଦିର ବୃନ୍ଦାବନ ଭାରତୀ ନିର୍ମାଣ କରିଥିଲେ ଏବଂ ସେବକାରୀ ଖଞ୍ଜିଥିଲେ । ଯଦିଓ ମନ୍ଦିର ଭାଙ୍ଗିନଥିଲା କିନ୍ତୁ ଚାରିପଟ ବିଭିନ୍ନ କାରଣରୁ ଉଚ୍ଚା ହୋଇଯିବା ଫଳରେ ଜଳ ନିଷ୍କାସନ ହୋଇ ନପାରି ବନ୍ୟାଜଳ ଓ ବର୍ଷାଜଳରେ ଠାକୁରାଣୀ ମାସମାସ ଧରି ବୁଡ଼ି ରହୁଥିଲେ । ପାଣି ମାଡ଼ରେ ମନ୍ଦିରର ସ୍ଥାୟିତ୍ୱ ସଂକଟାପନ୍ନ ହେଲା । ଅସ୍ଥାୟୀ ଗୃହ ନିର୍ମାଣ କରି ଠାକୁରାଣୀଙ୍କୁ ସ୍ଥାନାନ୍ତରିତ କରି ମନ୍ଦିର କାର୍ଯ୍ୟ ଆରମ୍ଭ ହେଲା । ପ୍ରାଥମିକ ଅବସ୍ଥାରେ ମନ୍ଦିରର ଆୟ, ଯଥା- ବଳି ଉତ୍ସର୍ଗ ମାସୁଲ, ମଙ୍ଗଳା ଓଷାର ଆୟକୁ ଭିତ୍ତି କରି ଆରମ୍ଭ ହେଲା ଗ୍ରାମର ରାଜେନ୍ଦ୍ର ବିହାରୀ ଦାଶ, ୰ସାବିତ୍ରୀ ସାହୁ ଓ ଚଣ୍ଡୀପୁର ୰ହଗୁରୀ ସାହୁ ପ୍ରତିବର୍ଷ ପ୍ରାୟ ୨୦ ହଜାର ଟଙ୍କା ଦାନଆକାରରେ ମନ୍ଦିର ନିର୍ମାଣ ପାଇଁ ମୋତେ ଯୋଗାଇଲେ । ୨୦୦୪ ମସିହାରେ ମୁଁ ଖଣ୍ଡିତର ହାଇସ୍କୁଲର ପ୍ରଧାନ ଶିକ୍ଷକ ହେଲି । ସେହି ବର୍ଷ ମନ୍ଦିରରେ ଅଗ୍ନିକାଣ୍ଡ ଘଟିଲା । ଏହା ଅତ୍ୟନ୍ତ ଦୋଷାବହ ହେବାରୁ ଏହାର ପ୍ରତିକାର ପାଇଁ ମନ୍ଦିର ପୂଜକ ଓ ଗ୍ରାମର କେତେଜଣ ମୁଖ୍ୟ ବ୍ୟକ୍ତିଙ୍କୁ ନେଇ ଶ୍ରୀକ୍ଷେତ୍ର ଗଲୁ । ସେଠି ମୁକ୍ତିମଣ୍ଡପରେ ପରାମର୍ଶ କଲୁ । ସେମାନଙ୍କ ପରାମର୍ଶ ଅନୁସାରେ ଆମ୍ଭେ ପୁରୀରେ ପଞ୍ଚତୀର୍ଥରେ ସ୍ନାନ କରି ପ୍ରାୟଶ୍ଚିତ ହେଲୁ- (ମନ୍ଦିର ମାଫତଦାର, ପୂଜକ ଓ ଗ୍ରାମ ପ୍ରତିନିଧି) । ତା' ପରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲୁ । ତାଙ୍କର ପରାମର୍ଶକ୍ରମେ ମା'ଙ୍କ ପାଖରେ ସାର୍ବଜନୀନ ଚଣ୍ଡୀଯଜ୍ଞ ଆରମ୍ଭ ହେଲା । ଯଜ୍ଞ ଆରମ୍ଭ ପରେପରେ ଗ୍ରାମର କେତେକ ବଦାନ୍ୟ ବ୍ୟକ୍ତି ତଥା ଭକ୍ତ, ମନ୍ଦିର ନିର୍ମାଣ କାର୍ଯ୍ୟରେ ସହଯୋଗ କରିବାକୁ ଆଗେଇ ଆସିଲେ । ବାହାରୁ ବହୁଭକ୍ତ ଦାନଦେଲେ । ଗ୍ରାମବାସୀଙ୍କ ସହଯୋଗରେ ସରକାରୀ ଅର୍ଥ ମଧ୍ୟ ଆସିଲା । ବିଶେଷ କରି ଗଜେନ୍ଦ୍ର ବିହାରୀ ଦାସ, ଶାସନର ଚଣ୍ଡୀ ବ୍ରାହ୍ମଣ ସରକାରୀ ଚାକିରିରୁ ଅବସର ନେଇ ମନ୍ଦିର କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କରିବା ସଙ୍ଗେସଙ୍ଗେ (ଏହି ନିର୍ମାଣ କାର୍ଯ୍ୟରେ ଦାୟିତ୍ୱ ନେଲେ) । ଯଜ୍ଞାରମ୍ଭର ୧୨ ବର୍ଷ ମଧ୍ୟରେ ନୂତନ ମନ୍ଦିର ତିଆରି ହୋଇ ପତିଷ୍ଠା ହେଲା । ମା' ମଂଗଳା ସ୍ୱସ୍ଥାନରେ ବିଜେ କଲେ । ଏବେ ବି ମନ୍ଦିରର ଆନୁସାଂଗିକ କାର୍ଯ୍ୟ ଚାଲୁ ରହିଅଛି ଓ ଯଜ୍ଞମଣ୍ଡପ କାର୍ଯ୍ୟ ମଧ୍ୟ ଚାଲୁ ରହିଅଛି । ୨୦୦୪ ମସିହାଠାରୁ ପ୍ରତିବର୍ଷ ଯଜ୍ଞ ଅନୁଷ୍ଠିତ ହେଉଅଛି । ସମସ୍ତ ଗ୍ରାମବାସୀଙ୍କର ଭକ୍ତିପୂତ ସହଯୋଗ ରହି ଆସୁଅଛି । ପ୍ରତିବର୍ଷ ମଇ ୩୦ ତାରିଖରେ ଏହି ଚଣ୍ଡୀଯଜ୍ଞ, ପୂଜା, ପ୍ରସାଦସେବା ସମସ୍ତ ଗ୍ରାମବାସୀଙ୍କର ସହଯୋଗ ଓ ଉପସ୍ଥିତିରେ ଏହା ପାଳିତ ହୋଇ ଆସୁଅଛି । କାରଣ ଏହି ମଇ ତିରିଶ ତାରିଖରେ ମା' ଘାଟମଙ୍ଗଳା ନୂତନ ମନ୍ଦିରରେ ପୁନଃ ସ୍ଥାପିତ ହୋଇଥିଲେ ।

ପ୍ରତିବର୍ଷ ଦୋଳ ପୂର୍ଣ୍ଣମା ଦିନ ମା' ମଙ୍ଗଳାଙ୍କ ପାଖରେ ଦୋଳାଧୀବାସ ହୁଏ । କଳସ ପୂଜା, ହୋମ, ହୋଲି କୀର୍ତ୍ତନ ହୋଇ ମନ୍ଦିର ପରିକ୍ରମା କରାଯାଏ ।

ଗ୍ରାମବାସୀ ତଥା ମେଲଣ କମିଟି ଏଥିରେ ଅଂଶ ଗ୍ରହଣ କରନ୍ତି । ପରଦିନ ପ୍ରତିପଦ ତିଥିରେ ସନ୍ଧ୍ୟା ସମୟରେ ମଦନମୋହନ (ରାଧା, କୃଷ୍ଣ) ଥାନପତି ହୋଇ ମେଲଣ ଆରମ୍ଭ କରନ୍ତି । ଶାସନ ରାଧାକୃଷ୍ଣଙ୍କୁ ବିମାନରେ ବ୍ରାହ୍ମଣମାନେ ଆଣି ମଦନମୋହନଙ୍କ ପାଖରେ ବିଜେ କରାନ୍ତି ଓ ପଟୁଆର ହୋଇ ମା'ଙ୍କ ପୀଠରେ ପଂହଚନ୍ତି । ଗ୍ରାମ ମେଲଣ କମିଟି ତରଫରୁ ବାହାର ଠାକୁରଙ୍କୁ ନମନ୍ତ୍ରଣ କରାଯାଏ । ସେମାନେ ପରେ ପରେ ପଟୁଆର କରି ମେଲଣ ପଡ଼ିଆରେ ପହଞ୍ଚନ୍ତି । ଏହି ପରମ୍ପରା ଏବେ ଚାଲୁ ରହିଛି ।

**ଯଜ୍ଞେଶ୍ୱର ମହାଦେବ ମନ୍ଦିର-** ଏହି ମନ୍ଦିରଟିକୁ ଆସି ମହନ୍ତ ସଦାଶିବ ପ୍ରତିଷ୍ଠା କରିଥିଲେ । ମଠବାଡ଼ି ନଦୀ କୂଳରେ ଏହି ମନ୍ଦିର ଅବସ୍ଥିତି । ପାଖରେ ପାର୍ବତୀ ଦେବୀ ବା ଭାଲୁଣୁଣୀ ଦେବୀ ମନ୍ଦିର ଅଛି । ଏହା ଖଣ୍ଡିତର ଗ୍ରାମର ମଠସାହି ଲୋକମାନଙ୍କର ଆରାଧ ଦେବତା ଓ ଗ୍ରାମଦେବୀ । ବିବାହ, ବ୍ରତରେ ଏହି ଶିବ ଓ ଭାଲୁଣୁଣୀଙ୍କ ପାଖରେ ଦିଅମଙ୍ଗଳା କାର୍ଯ୍ୟକ୍ରମ କରାଯାଏ । ଶିବମନ୍ଦିର ପଶ୍ଚିମ ପଟରେ ଗ୍ରାମବାସୀମାନେ ପ୍ରତିବର୍ଷ ଅଗ୍ନିଉତ୍ସବ ପାଳନ କରନ୍ତି । ସମୟକ୍ରମେ ଖରସ୍ରୋତା ନଦୀ କୂଳଖାଇ ପାଣି ମାଡ଼ରେ ମନ୍ଦିରଟି ନଷ୍ଟ ହୋଇଗଲା । ଏବେ ଏହାକୁ ସଂପୂର୍ଣ୍ଣ ଭାଙ୍ଗି ନୂତନ ମନ୍ଦିର ନିର୍ମାଣ କରାଯାଇଅଛି । ଆହୁରି ମଧ୍ୟ କାର୍ଯ୍ୟ ବାକି ରହିଯାଇଅଛି ।

**ମହନ୍ତ ସଦାଶିବଙ୍କ ସମାଧୀ ମନ୍ଦିର-** ଏହା ମଠ ଭିତରେ ସଦାଶିବଙ୍କ ପରବର୍ତ୍ତୀ ମହନ୍ତମାନେ ନିର୍ମାଣ କରିଥିଲେ । ବନ୍ୟାଜଳ ପ୍ରତିବର୍ଷ ମଠରେ ପଶି ଏହା ଅର୍ଦ୍ଧଭଗ୍ନ ହୋଇଯାଇଥିଲା । ତାହାକୁ ମଧ୍ୟ ପୁନଃନିର୍ମାଣ କରାଯାଇଅଛି । ନିୟମିତ ଭାବେ ମନ୍ଦିର ପୂଜା ନୀତି ସଂପନ୍ନ ହେଉଅଛି ।

**ବ୍ରହ୍ମେଶ୍ୱର ମହାଦେବ-** ବ୍ରାହ୍ମଣ ଶାସନରେ ବ୍ରାହ୍ମଣମାନଙ୍କ ଦ୍ୱାରା ଏହି ମନ୍ଦିର ସ୍ଥାପନ କରାଯାଇଥିଲା । ଏହି ମନ୍ଦିର ଅବକ୍ଷୟ ହେବାପରେ ବ୍ରାହ୍ମଣମାନଙ୍କ ସହଯୋଗରେ ପୁନଃ ନିର୍ମିତ ହୋଇଅଛି । ଏହାର ନିତ୍ୟ ପୂଜାର ଦାୟିତ୍ୱ ବ୍ରାହ୍ମଣମାନେ କରି ଆସୁଅଛନ୍ତି । ମହନ୍ତ ମନ୍ଦିରର ସତ୍ତ୍ୱାଧିକାରୀ ଅଛନ୍ତି ।

**କଂକାଳୀଦେବୀ ମନ୍ଦିର-** ଏହା ମଠସାହିର ଜଳସରପୁର ମୌଜାରେ ଅବସ୍ଥିତ । ଏହାଙ୍କୁ ବଡ଼ୀଠାକୁରାଣୀ ବୋଲି କହନ୍ତି । ପୂର୍ବେ ବାଡ଼ୀ ବା ହଇଜାରେ ଲୋକ ମରୁଥିଲେ । ଏହି ଠାକୁରାଣୀଙ୍କୁ ଉପାସ୍ନା କରି ରୋଗମୁକ୍ତ ହେଉଥିବାରୁ ଏହାଙ୍କୁ ବାଡ଼ୀମଙ୍ଗଳା କୁହାଯାଏ । ଏହାର ଅବସ୍ଥିତି, ଆଗମନ ସମ୍ପର୍କରେ କିଛି ତଥ୍ୟ ମୋ' ପାଖରେ ନାହିଁ । ମଠ ତରଫରୁ ବାରିକକୁ ଏହାର ଦୈନିକ ପୂଜା ଦାୟିତ୍ୱ ଦିଆଯାଇଅଛି । ମହନ୍ତ ଏହି ମନ୍ଦିରର ସତ୍ତ୍ୱାଧୀକାରୀ ଅଟନ୍ତି । ଗ୍ରାମବାସୀମାନଙ୍କ ଉଦ୍ୟମରେ ଏହି ମନ୍ଦିର ପୁନଃ ନିର୍ମାଣ ହୋଇଅଛି ।

**ଜଗଦୀଶ୍ୱର ମହାଦେବ-** ଏହି ଶିବ ଠାକୁର ମଠର ଜମିଦାରୀ ଓଚିନ୍ଦା ଗ୍ରାମର ପାଟଣାସାହିରେ ପୂଜାପାଉଅଛନ୍ତି । ଏହାରଂମନ୍ଦିର ନଥିଲା । ସ୍ଥାୟୀ ବାସିନ୍ଦା ଶ୍ରୀ ପଦ୍ମନାଭ ନାୟକ- ଶିକ୍ଷକ, ଶିବଙ୍କର ଭକ୍ତ ଏବଂ ତାଙ୍କର ଉଦ୍ୟମରେ ଗୋଟିଏ ମନ୍ଦିର ତିଆରି ହୋଇଅଛି । ଗ୍ରାମବାସୀମାନଙ୍କୁ ନେଇ ସେ ଏଠାର ଦୈନିକ ପୂଜା, ଯାନିଯାତ୍ରା ଓ ନାମଯଜ୍ଞ କରୁଅଛନ୍ତି । ମଠର ମହନ୍ତ ଏହି ମନ୍ଦିରର ସ୍ୱତ୍ତ୍ୱାଧିକାରୀ ଅଟନ୍ତି ।

**ଯାଜପୁର କବାଡ୍ଡୀ ଆସୋସିଏସନ୍, ଖଣ୍ଡିତର-** ଏହି ଅନୁଷ୍ଠାନ ୧୯୫୪ ମସିହାରେ ଆରମ୍ଭ ହୋଇଥିଲା । କେଉଟଲଗୁଆଁ ବାସୀ ୰ଜଗଦାନନ୍ଦ ଦାସ, ପ୍ରାକ୍ତନ କ୍ରୀଡ଼ା ଶିକ୍ଷକ, ରେଭେନ୍ସା ମହାବିଦ୍ୟାଳୟ, ଏହାର ପ୍ରତିଷ୍ଠାତା । ମହନ୍ତଙ୍କ ସହଯୋଗରେ ମେଲଣ ପଡ଼ିଆର ଏକ ଅଂଶରେ କାବଡ୍ଡୀ ଖେଳ ଆରମ୍ଭ କରିଥିଲେ । ଗ୍ରାମର ଯୁବକମାନେ ତାଙ୍କୁ ଏଥିରେ ପୂର୍ଣ୍ଣ ସହଯୋଗ କରିଥିଲେ । ଏହି ଅନୁଷ୍ଠାନ ବର୍ତ୍ତମାନ ସର୍ବଭାରତୀୟ ସ୍ତରରେ ଏକ ବିରାଟ କ୍ରୀଡ଼ା ଅନୁଷ୍ଠାନର ମାନ୍ୟତା ହାସଲ କରିଅଛି । ଭାରତର ବିଭିନ୍ନ ରାଜ୍ୟରୁ ତଥା ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ସୁନାମଧନ୍ୟ ଖେଳାଳୀମାନେ ଆସି ଏଠି କ୍ରୀଡ଼ା ପ୍ରଦର୍ଶନ କରନ୍ତି । ରଜ ତିନିଦିନ ଧରି ବହୁ ଜନସମାଗମ ହୁଏ । ଏହା ଖଣ୍ଡିତର ଗ୍ରାମର କେବଳ ଗୌରବ ନୁହେଁ ଏକ ଇତିହାସ ସୃଷ୍ଟି କରିଅଛି । ବହୁ ଯୁବକ ଯୁବତୀ ଏଠି କୃତିତ୍ୱର ସହ କ୍ରୀଡ଼ା ପ୍ରଦର୍ଶନ କରି ସରକାରୀ ଚାକିରି ପାଇବାର ସୌଭାଗ୍ୟ ଅର୍ଜନ କରିଅଛନ୍ତି । ପୂର୍ବତନ ବିଧାୟକ ତଥା ମନ୍ତ୍ରୀ ୰କଳ୍ପତରୁ ଦାସଙ୍କ ପଚେଷ୍ଟାରେ Stadium ତିଆରି ହୋଇ ଏହି ମଙ୍ଗଳାଙ୍କ ପୀଠ ଖୁବ୍ ରଚିମନ୍ତ ଓ ଆକର୍ଷଣୀୟ ହୋଇ ପାରିଛି ।

୨୦୧୦ ମେ ମାସରେ ପ୍ରଧାନ ଶିକ୍ଷକ କାର୍ଯ୍ୟରୁ ଅବସର ନେଲାପରେ ମଠ ଅବକ୍ଷୟକୁ ଲକ୍ଷ୍ୟ କରି ଏକ ଗୀତାଯଜ୍ଞର ଆୟୋଜନ କରିଥିଲି । ଅଧ୍ୟାପକ ସୁଶାନ୍ତ କୁମାର ପଣ୍ଡାଙ୍କ ଅଧକ୍ଷତାରେ କେତେକ ସୁବେଦୀ ବ୍ରାହ୍ମଣମାନଙ୍କୁ ନେଇ ଏହା ଅନୁଷ୍ଠିତ ହୋଇଥିଲା । ଗ୍ରାମବାସୀ ଓ ଆଖପାଖ ଗ୍ରାମର ଭଦ୍ରବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଖୁବ ଜନସମାଗମ ହୋଇଥିଲା ଓ ଯଜ୍ଞକାର୍ଯ୍ୟ ଖୁବ୍ ଭଲରେ ସମାପନ ହୋଇଥିଲା । ତତ୍‌ପରବର୍ତ୍ତୀ ସମୟରେ ଗୀତା ଯଜ୍ଞ ନହୋଇ ପ୍ରତି ପୂର୍ଣ୍ଣମୀରେ ଶ୍ରୀ ମଦନମୋହନଙ୍କ ଉପଚାର ପୂଜା, ଅଷ୍ଟାଦଶ ଅଧ୍ୟାୟ ଗୀତା ପାରାୟଣ, ତୁଳସୀ ସମର୍ପଣ, ଘୃତାହୁତି, ନାମଯଜ୍ଞ ତଥା ଭକ୍ତି ସଙ୍ଗୀତ କାର୍ଯ୍ୟକ୍ରମ ସହିତ ଭକ୍ତମାନଙ୍କୁ ପ୍ରସାଦ ସେବା କାର୍ଯ୍ୟ ହୋଇ ଆସୁଅଛି । ଏଥିରେ ବିଶିଷ୍ଟ ଗୀତାପ୍ରେମୀ, ଗୀତାଚାର୍ଯ୍ୟମାନେ ଅଂଶ ଗ୍ରହଣ କରି ପାରାୟଣକୁ ସମାପନ କରନ୍ତି ।

ଏହି ଗୀତା ପାରାୟଣ କାର୍ଯ୍ୟ ଆଖଣ୍ଡଳମଣି ଗୀତା ପ୍ରସାର ପ୍ରଚାର ସମିତିର ନିଃସ୍ୱାର୍ଥ ଗୀତା ପ୍ରେମୀମାନଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥିଲା । ସ୍ୱର୍ଗତ ସଦାଶିବ ନାୟକ-

ଜଗତପୁର ଓ ଭୀମସେନ ବେହେରା, ଅପ୍‌ସରପୁର ଏହାର ପଥ ପ୍ରଦର୍ଶକ ଥିଲେ । ସେମାନେ ସ୍ୱତଃ ପ୍ରବୃତ୍ତଭାବେ ମଠରେ ପ୍ରବିଷ୍ଟ ହୋଇ ଏହି କାର୍ଯ୍ୟର ଶୁଭାରମ୍ଭ କରିଥିଲେ । ତାଙ୍କ ସହିତ ସଙ୍କର୍ଷଣ ପୋହି- ବାହାବଳପୁର, ଗଗନବିହାରୀ ଜେନା, ଶିକ୍ଷକ ବାଲିକୁଦା, ପଲ୍ଲୀକବି ପ୍ରଫୁଲ୍ଲ ବାବୁ (ସଠିଆ ଟିକିରି, ଯାଜପୁର), ଅବସରପ୍ରାପ୍ତ ଶିକ୍ଷକ ସଙ୍କର୍ଷଣ କାଣ୍ଡି- ଚିତାଘଟା ଓ ଗୀତାଚାର୍ଯ୍ୟ ବିଭୁତି ଭୂଷଣ ପଣ୍ଡା- ଅଣ୍ଡେଇ ଗୋଡ଼ା ସଂପୂର୍ଣ୍ଣ ସହଯୋଗ କରି ପରିପୁଷ୍ଟ ଓ ପରିବୃଦ୍ଧି କରିଥିଲେ । ବିଶେଷ କରି ଗଗନସାର୍ ଓ କାଣ୍ଡି ସାର୍‌ଙ୍କ ସୁଲଳିତ କଣ୍ଠରେ ଭକ୍ତି ସଂଗୀତ ତଥା ଶ୍ରୀ ପୋହି ମହାଶୟଙ୍କ ଗୀତାଚର୍ଚ୍ଚା ସହିତ ପୁରାତନ ଭକ୍ତି ସଙ୍ଗୀତକୁ ପରିବେଷଣ ସୃଷ୍ଟି ହୁଏ । ସେମାନଙ୍କ ମଧ୍ୟରୁ କେତେକ ଆରପାରିକୁ ଚାଲିଗଲେଣି, ଅନ୍ୟମାନେ ବର୍ତ୍ତମାନ ବୟସାଧିକ, ତଥାପି ଦୀର୍ଘ ଏଗାର ବର୍ଷଧରି ପ୍ରତିପୂର୍ଣ୍ଣମୀରେ ଏଯାବତ ଏହି ଆଧାତ୍ମିକ କାର୍ଯ୍ୟକ୍ରମ ଚାଲୁରହିଛି । ଏହା ସାମୂହିକ ଭାବେ ଦେବଯଜ୍ଞ, ଗୀତାଯଜ୍ଞ, ନାମଯଜ୍ଞ ଓ ଅନ୍ନଯଜ୍ଞର ସମଷ୍ଟିରେ ଏକ ଆଧାତ୍ମିକ କାର୍ଯ୍ୟକ୍ରମ ।

**ଉପସଂହାର-**

ଭାଗବତରେ ଅଛି-

ଅଦୃଷ୍ଟ ଦୁଃଖ ସୁଖ ଦିଏ । ଆନେ ଦୂଷିବା ଯୋଗ୍ୟ ନୁହେଁ ॥
କର୍ମ ଆଦରି ସହି ଦୁଃଖ । କେବେହେ ନୋହିବ ବିମୁଖ ।

ନିଜର ପ୍ରାରବ୍ଧ ଅନୁସାରେ ଯେଉଁ ପରିବେଶ, ପରିସ୍ଥିତି, ବର୍ଣ୍ଣ, ଆଶ୍ରମ ଓ ସଂସ୍କାରରେ ଜନ୍ମ ନେଇଛି ତାକୁ ହିଁ ଆଦରି ନେଇ କର୍ମପଥରେ ଅଗ୍ରସର ହେବା ଉଚିତ । କର୍ମ ଓ କର୍ମଫଳକୁ ନିଜର ଓ ନିଜପାଇଁ ମନେକରି ସୁଖଭୋଗର ଇଚ୍ଛା କରିବା ଅନୁଚିତ । ଭଗବତ ଇଚ୍ଛାରେ ଯେତିକି ସୁଯୋଗ ମିଳିଛି ତାହାକୁ ସଦ୍‌ଉପଯୋଗ କରି ଭଗବତ୍ କୃପାଲାଭ କରିବାକୁ ପ୍ରୟାସୀ ହେବା ହିଁ ଯଥାର୍ଥ ଜୀବନ । ଆଧାତ୍ମିକ ସାଧନା ଏକ ଧାରାବାହିକ ପ୍ରକ୍ରିୟା । ଏହା ପ୍ରତିହତ ହେବା ଉଚିତ ନୁହେଁ । ଏହା ହିଁ ଅଭ୍ୟାସଯୋଗ । ଚିତ୍ତ ସ୍ଥିର ଥାଉ ବା ନଥାଉ, ଭକ୍ତି ଉତ୍ସାହ ସବୁକିଛି ବ୍ୟତିକ୍ରମ ଥିଲେ ମଧ୍ୟ ଅଭ୍ୟାସ ଅବ୍ୟାହତ ହେବା ବାଞ୍ଛନୀୟ ।

"ଅଭ୍ୟାସ ଯୋଗ ଯୁକ୍ତେନ ଚେତସା ନାନ୍ୟଗାମିନା"- ଏହା ଭଗବାନ କୃଷ୍ଣଙ୍କର ବାଣୀ ।

ନିଜର ନିୟତ କର୍ମ ପାଳନ କଲେ, ମନୁଷ୍ୟ କର୍ମ ବନ୍ଧନରୁ ମୁକ୍ତିହୁଏ ଅର୍ଥାତ୍ ତା'ର କଲ୍ୟାଣ ହୋଇଯାଏ । ଅତଏବ ଦୋଷମୁକ୍ତ ଦେଖାଯାଉଥିଲେ ମଧ୍ୟ ନିୟତକର୍ମ ଅର୍ଥାତ୍ ସ୍ୱଧର୍ମ ତ୍ୟାଗ କରିବା ଅନୁଚିତ ।

ଏହାକୁ ଭିତ୍ତିକରି ଶେଷ ଜୀବନ ପର୍ଯ୍ୟନ୍ତ ଏହି ପୀଠରେ ପଡ଼ିରହି ଶ୍ରୀମଦନମୋହନଙ୍କର ସେବାରେ ନିଜକୁ ନିୟୋଜିତ କରି ସମୟ ଅତିବାହିତ କରୁଅଛି । ପ୍ରଭୁଙ୍କୁ ଏତିକି ପ୍ରାର୍ଥନା କରୁଛି ବଞ୍ଚିଥିବା ପର୍ଯ୍ୟନ୍ତ ତାଙ୍କ ସେବାରୁ ଯେପରି ବଞ୍ଚିତ ନ କରନ୍ତୁ ।

ଶ୍ରୀମଦନମୋହନଜୀଉ ମଠ ଓ ଖଣ୍ଡିତର ଗ୍ରାମର ଐତିହ୍ୟ ଓ ସଂସ୍କୃତି ସମ୍ବନ୍ଧରେ ଯାହା କିଛି ଜାଣିଛି ତାହା ନିଜ ଭାଷାରେ ଲେଖିଅଛି । ଉଦ୍ଦେଶ୍ୟ ହେଲା ଭବିଷ୍ୟତ ପିଢ଼ି କିଛି ଆହରଣ କରିବା ସଙ୍ଗେ ସଙ୍ଗେ ଏହାକୁ ଆଗାମୀ ଦିନ ପାଇଁ ସୁରକ୍ଷିତ ରଖିବେ । ମୋର ଗୋସିବାପା ଅଧିକାରୀ ୰ବୈଷ୍ଣଚରଣ ଭାରତୀ ଓ ପୂର୍ବତନ ମହନ୍ତ ନବକିଶୋର ଭାରତୀଙ୍କଠାରୁ କିଛି କଥା ଅବଗତ ହୋଇଥିଲି । ତତ୍ ସଙ୍ଗେ ସଙ୍ଗେ ମଠରେ ଆଗରୁ ଥିବା ତାଳପତ୍ର ପୋଥି, ତମ୍ବାପାତ୍ରର ସନନ୍ଦ ଏବଂ ପାଞ୍ଚ ସାଲିଆ ବନ୍ଦୋବସ୍ତ ରେକର୍ଡ଼ ଠାରୁ ଏଯାବତ୍ ବନ୍ଦୋବସ୍ତ ରେକର୍ଡ଼କୁ ଅନୁସନ୍ଧାନ କରିଥିଲି । ଏହାକୁ ଭିତ୍ତିକରି ପୁସ୍ତକଟିକୁ ଲେଖିଅଛି । ବିଶେଷ କରି ନବକିଶୋର ଭାରତୀଙ୍କର ସ୍ୱରଚିତ ସଙ୍ଗୀତାବଳୀ ଲୋକଲୋଚନକୁ ଆସିଲେ ସଂଗୀତଜ୍ଞ ଓ ସଂଗୀତ ପ୍ରେମୀମାନଙ୍କ ପାଇଁ ଅତ୍ୟନ୍ତ ଉପାଦେୟ ହେବ ବୋଲି ମୋ'ର ଆଶା ଓ ବିଶ୍ୱାସ ।

ଶେଷରେ ମତ ପୋଷଣ କରୁଛି, ଏଭଳି ଏକ ପ୍ରାଚୀନ ଧାର୍ମିକ ଓ ସଂସ୍କୃତିକ ପୀଠକୁ ରକ୍ଷାକରି ଏହାକୁ ମର୍ଯ୍ୟାଦାସଂପନ୍ନ କରିବା ସମସ୍ତଙ୍କର କର୍ତ୍ତବ୍ୟ । ସଂପ୍ରତି ଆମ ବିକାଶୋନ୍ମୁଖୀ ଦେଶରେ ସବୁ ସ୍ତରରେ ଉନ୍ନତି ପରିଲକ୍ଷିତ ହେଉଅଛି । ଏଣୁ ଏହି ଅଞ୍ଚଳର ଅନୁଷ୍ଠାନ ପ୍ରେମୀ, ଭଗବତ ପ୍ରେମୀ ସଂସ୍କୃତି ଓ କଳା ପ୍ରେମୀଙ୍କର ଦୃଷ୍ଟିପାତ ହେବା ବାଞ୍ଛନୀୟ । କାରଣ ଏହି ଗ୍ରାମ ତଥା ପଡ଼ୋଶୀ ଗ୍ରାମକୁ ଆଧାତ୍ମିକ, ସାମାଜିକ, ଶିକ୍ଷା, ସଂସ୍କୃତି, ସଂଗୀତ ଓ ନାଟ୍ୟକଳା କ୍ଷେତ୍ରରେ ଏହା ଏକ ଆଲୋକବର୍ତ୍ତୀକା ହୋଇ ଏହି ମଠର ଭୂମିକାକୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣଭାବେ ଦଣ୍ଡାୟମାନ କରିରଖିବ ।



# ଏ ଦୀନ ପ୍ରାର୍ଥନା

*ଶ୍ରୀ ଶ୍ରୀ ବୀରେନ୍ କୁମାର ଆରଣ*



ଆହେ ମଦନ ମୋହନ ମୋ' ପ୍ରାଣର ଧନ
ସେବୁ ଥିବି ନିରନ୍ତର ଥିବା ଯାଏ ପ୍ରାଣ ।
ଅଧମ ଅକିଂଚନ ମୁହିଁ ସେବା ନ ଜାଣଇ
ହାତଧରି ଶିଖାଇ ଦିଅ ହେ ଜଗତ ସାଇଁ ।
ଅମୃତ ମୂରତି ସଦା ଝୁରେ ଏ ନୟନ
ତୁମରି ନାମ ଭଜନେ ବିତିଯାଉ ଦିନ ।
ତୁମରି କୃପା, ଆଦେଶ ପାଳିବାର ପାଇଁ
ଶକତି ଦିଅ ଆରାଧ୍ୟ ଅନ୍ତରରେ ରହି ।
ପରବ ପାଳନେ କୌଣସି ବାଧା ନରହୁ
ତୁମ ଦରଶନେ ଭକ୍ତଙ୍କ ଧାଡ଼ି ଲାଗିଥାଉ ।
ଜୀବେ ଦୟା ନିଷ୍କାମ କର୍ମେ ମଜ୍ଜିଛି ଏ ମନ
ଶ୍ରଦ୍ଧା, ଭକ୍ତି ବିଶ୍ୱାସରେ ବିତାଏ ମୁଁ ଦିନ ।
ଦୈନିକ କର୍ମ ସକାଳେ ସଂଜେ ଜଣାଏ
କରମ ମଧ୍ୟେ ଯେପରି ନାମ ଭୁଲି ନଯାଏ ।
ଏ ଭବ ସାଗରୁ ପ୍ରଭୁ କର ହେ ଉଦ୍ଧାର
(ଏ) ପ୍ରାର୍ଥନା ମଦନମୋହନ ଘେନାକର ॥

# ଶ୍ରୀମଦନମୋହନଜୀଉ

ଶ୍ରୀ :- ଶ୍ରୀ ଧାରଣ କରି ମନ୍ଦିରେ ପୂଜା ପାଅ ସଦା ॥
ମ :- ମୁକ୍ତିଦାତା ତମେ ମୋର ହୃଦୟ ଦେବତା ॥
ଦ :- ଦମନ କରିବାକୁ ଇନ୍ଦ୍ରିୟ ତୁମେ ହିଁ କରତା ॥
ନ :- ନିବୃତ୍ତି ମାର୍ଗେ ଚଳିବାକୁ ଦିଅ ଉପଦେଶ ॥
ମୋ :- ମୋହ, ମାୟା, ତ୍ୟାଗ ପାଇଁ କରିଥାଅ ଆଦେଶ ॥
ହ :- ହତ୍ୟା ପାପଠାରୁ ଦୂରେ ଦେଇଥାଅ ନିର୍ଦ୍ଦେଶ ॥
ନ :- ନାମ ସଦା ଜପିବାରୁ କରିଥାଅ ଆଶିଷ ॥
ଜି :- ଜୀବନ ମରଣ ଶଙ୍କୁଳ ପଥରୁ ଉଦ୍ଧାର ॥
ଉ :- ଉଦ୍ଧାର କରତା ତୁମେ ହିଁ ଏକ ମାତର ॥

# ମଠ ପାଇଁ ପଦେ

ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ, ପରଧର୍ମାତ୍ ସ୍ୱନୁଷ୍ଠିତାତ୍

ସ୍ୱଧର୍ମେ ନିଧନଂ ଶ୍ରେୟଃ, ପରଧର୍ମୋ ଭୟାବହଃ ॥

ନିଜଧର୍ମ ସଂସ୍କୃତିକୁ ଅନୁସରଣ କରି ଜୀବନ ଶୈଳୀ ଗଠନ କରିବା ପ୍ରତ୍ୟେକ ମାନବର ଅବଶ୍ୟ କର୍ତ୍ତବ୍ୟ ।

ମଂଗଳ ମୟ ଭଗବାନ ନିଜକୁ ଯେଉଁ ପରିବେଶ, ପରିସ୍ଥିତି, ସଂସ୍କୃତି, ଧର୍ମ ଓ ଜାତି ବା ସଂପ୍ରଦାୟରେ ଜନ୍ମ ନେବାର ସୁଯୋଗ ଦେଇଛନ୍ତି ତା'ର ଗୁରୁତ୍ୱ ଓ ଗୌରବକୁ ଅଧ୍ୟୟନ କରିବାକୁ ପ୍ରୟାସ ଜାରି ରଖିବା ବାଞ୍ଛନୀୟ ।

ଲେଖକ- ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ ମଠାଧୀଶ ଶ୍ରୀମଦନ ମୋହନଜୀଉ ମଠ, କେଉଟ ଲଗୁଆଁ ଖଣ୍ଡିତର ମହୋଦୟଙ୍କ ପାଣ୍ଡୁଲିପିଟିକୁ ଆମୂଳାନ୍ତ ପାଠକରି ଜାଣିଲି ଯେ ଉକ୍ତ ମଠର ପୂର୍ବତନ ମହନ୍ତମାନେ ମଠ, ମନ୍ଦିର ସୁରକ୍ଷା ତଥା ଭାରତୀ ମଠର ମର୍ଯ୍ୟାଦା ବିଶେଷ ଦୃଷ୍ଟି ଦେଇନଥିଲେ । ଶ୍ରୀଯୁକ୍ତ ନବକିଶୋର ଭାରତୀ ଗୋସ୍ୱାମୀ ମଠାଧୀଶ ସମୟରେ ମଠ, ମନ୍ଦିର ଉନ୍ନତିକରଣ ଧାରା ଆରମ୍ଭ କରିଥିଲେ । ସେ ଜଣେ ଅମାୟିକ ବ୍ୟକ୍ତି ଥିଲେ । ତାଙ୍କ କାର୍ଯ୍ୟକାଳର ଧାରା ସଂପର୍କରେ ପୁସ୍ତକଟି ମଧ୍ୟରେ ସ୍ଥାନ ପାଇଛି ।

ସଂପ୍ରତି ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ ମଠାଧୀଶଙ୍କ କାର୍ଯ୍ୟକାଳ ମଧ୍ୟରେ ଶ୍ରୀ ମଦନ ମୋହନ ଜୀଉଙ୍କ ମନ୍ଦିର, ସଦାଶିବ ମନ୍ଦିର, ମଠ ଅନ୍ତର୍ଗତ ମହନ୍ତଙ୍କ ବାସଗୃହ, ଟ୍ରଷ୍ଟବୋର୍ଡ଼ ବୈଠକ ଗୃହ, ଜୀଉଙ୍କ ଝୁଲଣ ଯାତ୍ରା ଗୃହ, ଦାନଶାଳା, ଶାଳଗ୍ରାମ ଓ ପୋଥି ଗାଦି ଗୃହ ପ୍ରଭୃତିର ଉନ୍ନିତିକରଣ ହୋଇପାରିଛି । ବିଶେଷ କରି ଶ୍ରୀମଦନ ମୋହନ ଜୀଉଙ୍କର ସୁଦୃଶ୍ୟ ମନ୍ଦିର ପୂର୍ଣ୍ଣାଙ୍ଗ ନିର୍ମାଣ କରିବାରେ ସକ୍ଷମ ହୋଇ ପାରିଛନ୍ତି । ମୋଟ ଉପରେ କହିବାକୁ ଗଲେ ଶିଶିର କୁମାର ଭାରତୀ ଗୋସ୍ୱାମୀ ଜଣେ ସୁଦକ୍ଷ ମଠାଧୀଶ ଅଟନ୍ତି ।

ପରିଶେଷରେ ବିଶ୍ୱଗୁରୁ ବିଶ୍ୱନିୟନ୍ତାଙ୍କ ପାଦପଦ୍ମରେ ବିନମ୍ର ନିବେଦନ କରୁଛି, ଏହି ଦରଦୀ ଲେଖକଙ୍କ ଚଲାପଥରେ ଅଗମ୍ୟ କଣ୍ଟକିତ ପଥକୁ କୁସୁମିତ କରାନ୍ତୁ । ମୁଁ ତାଙ୍କର ଦୀର୍ଘାୟୁ କାମନା କରି ରହିଲି ।

ଶ୍ରୀ ଶ୍ରୀ ଠାକୁର ଚରଣାଶ୍ରିତ

ଅବସରପ୍ରାପ୍ତ ଶିକ୍ଷକ, ଭଦ୍ରକ



# ଖଣ୍ଡିତର ଭାରତୀ ମଠ ଓ ମଦନମୋହନ

*ଶ୍ରୀ ସୁଶିଳ କୁମାର ଗିରି*

ଶ୍ରୀ ଶ୍ରୀ ଶ୍ରୀ ମଦନ ମୋହନ ଜୀଉ ଦଶନାମୀ ଭାରତୀ ମଠ ନାମରେ ବିଖ୍ୟାତ ମଠଟି ମା' ବିରଜା କ୍ଷେତ୍ର ଯାଜପୁରର କେଉଟଲଗୁଆ ଖଣ୍ଡିତରରେ ଅବସ୍ଥିତ । ଏହି ପବିତ୍ର ସ୍ଥାନଟି ଖରସ୍ରୋତା ନଦୀର ତଟଦେଶରେ ଅବସ୍ଥାନ କରିଛି । ଏଠାରେ ମୋର ତଥା ଏ ଅଞ୍ଚଳର ପ୍ରିୟ ମହନ୍ତ ମହାରାଜ ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ ମହୋଦୟ ପ୍ରାୟ ୧୯୯୧-୯୨ରୁ ଏହି ମହନ୍ତ ଆସନଟିକୁ ମଣ୍ଡିତ କରିଛନ୍ତି । ମୋର ଯେତିକି ମନେପଡ଼େ ପୂର୍ବରୁ ମହନ୍ତ ମହାରାଜ ନନ୍ଦ କିଶୋର ଭାରତୀ ଗୋସ୍ୱାମୀ ମହୋଦୟ ଥିବାବେଳେ ମୁଁ ମୋର ମାମୁଁଙ୍କ ପୁଅ ଶ୍ରୀଯୁକ୍ତ ପ୍ରଫୁଲ ଗୋସ୍ୱାମୀ ମହୋଦୟ ଯେ କି ବର୍ତ୍ତମାନ ଶ୍ରୀ ଶ୍ରୀ ଠାକୁର ଅଭିରାମ ପରମହଂସଙ୍କର ଆଶ୍ରିତ ତଥା କରମଳା ଆଶ୍ରମରେ ପ୍ରମୁଖ ଭୂମିକା ତୁଲାଉଛନ୍ତି, ଆମ୍ଭେ ଦୁହେଁ ମହନ୍ତ ମହାରାଜ ଶ୍ରୀଯୁକ୍ତ ନବ କିଶୋର ଭାରତୀ ଗୋସ୍ୱାମୀଙ୍କଠାରୁ କର୍ଣ୍ଣମନ୍ତ୍ର ନେଇ ବ୍ରତକାର୍ଯ୍ୟ ସମାପନ କରିଥିଲୁ । ମହନ୍ତ ମହାରାଜ ଜଣେ ମିଷ୍ଟଭାଷୀ, ପରୋପକାରୀ ତଥା ବାତ୍ସଲ୍ୟ ପ୍ରେମୀ ଲୋକ ଥିଲେ । ମୁଁ ମୋ' ବୋଉଙ୍କଠାରୁ ଯେତିକି ଶୁଣିଛି ତାଙ୍କ ପୂର୍ବରୁ ମହନ୍ତ ମହାରାଜ ଶ୍ରୀଯୁକ୍ତ ଲୋକନାଥ ଭାରତୀ ଗୋସ୍ୱାମୀ ଏବଂ ମହନ୍ତ ମହାରାଜ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଭାରତୀ ଗୋସ୍ୱାମୀ ମହୋଦୟ ଜଣେ ବାତ୍ସଲ୍ୟ ପ୍ରେମୀ କର୍ତ୍ତବ୍ୟ ପରାୟଣ ବ୍ୟକ୍ତି ଥିଲେ । ସେତେବେଳରେ ଖଣ୍ଡିତରର ଭାରତୀ ମଠ ଚାଳ ଛପର ଘର ଜରାଜୀର୍ଣ୍ଣ ଅବସ୍ଥାରେ ଥିଲା କିନ୍ତୁ ଏହି ମଠରୁ ବହୁତ ବ୍ରତୋପନୟନ କାର୍ଯ୍ୟ ସମାପନ ହୋଇଛି । କିନ୍ତୁ ପରେ ମହନ୍ତ ମହାରାଜ ଶ୍ରୀଯୁକ୍ତ ନବ କିଶୋର ଭାରତୀ ଗୋସ୍ୱାମୀଙ୍କ ସମୟରେ 'ମଠ'ର କିଛି ଉନ୍ନତି ସାଧନ ହୋଇଥିଲା । ଧୀରେ ଧୀରେ 'ମଠ' ଲୋକଖ୍ୟାତ ହେହବାରେ ଲାଗିଲା ।

ଏବେ କିନ୍ତୁ ମହନ୍ତ ମହାରାଜ ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ ମହୋଦୟ 'ମଠ'ର ଦାୟିତ୍ୱ ନେବାପରେ ମଠର ଉତ୍ତୋରତ୍ତର ଉନ୍ନତି ସହିତ, ଗୀତା ଜ୍ଞାନ ଯଜ୍ଞ, ବିଷ୍ଣୁଙ୍କ ସହସ୍ର ନାମ, ଚନ୍ଦନଯାତ୍ରା, ଝୁଲଣ ଯାତ୍ରା, ରାସପୂର୍ଣ୍ଣିମା ଏବଂ ପ୍ରତି ପୂର୍ଣ୍ଣିମାରେ ଅନ୍ନଦାନ କରିବା ଏମିତି ଅନେକ ବାରମାସରେ ତେରପର୍ବ ପାଳନ

କରାଯାଉଛି । ବହୁ ଆଡ଼ମ୍ବର ସହିତ ପାଖ ଆଖରୁ ହଜାର ହଜାର ଶ୍ରଦ୍ଧାଳୁ ରୁଣ୍ଡ ହୋଇ ମଦନ ମୋହନଙ୍କର ଆଶିଷ ଲାଭ କରନ୍ତି । ମହନ୍ତ ମହାରାଜ ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ ମହୋଦୟ ନିଜ ଗାଁ', ପଞ୍ଚାୟତ ଓ ପାଖ ଆଖ ପଞ୍ଚାୟତ ଲୋକମାନଙ୍କର ଭଲମନ୍ଦ ବୁଝିବା ସହିତ, ନ୍ୟାୟ ହିସାବରେ ଲୋକମାନଙ୍କୁ ସାହାଯ୍ୟ କରନ୍ତି । ଏପରିକି ନିଜ ବାଡ଼ି ବଗିଚାରେ ଥିବା କାଠ, ବାଉଁଶ, ଛଣ ଆଦି ଗରିବ ଲୋକମାନଙ୍କୁ ଦାନ କରନ୍ତି । ନିଛକ ମଣିଷଟିଏ ପରି ନିଜର କାର୍ଯ୍ୟକୁ ଖାତିରି ନକରି ପରୋପକାର କରିବାରେ ବ୍ୟସ୍ତ ରୁହନ୍ତି । ସେ ଏକାଧାରାରେ ଜଣେ କବି, ବିଦ୍ୱାନ, ପଣ୍ଡିତ, ସାଇବାବାଙ୍କ ଆଶ୍ରିତ, ଅବସର ପ୍ରାପ୍ତ ପ୍ରଧାନ ଶିକ୍ଷକ, ଗୁଣୀଜ୍ଞାନୀ ଲୋକ, ଯାହାକି ଅବର୍ଣ୍ଣନୀୟ । ତାଙ୍କ ବିଷୟରେ ଲେଖି ବସିଲେ ଅସରନ୍ତି ବର୍ଣ୍ଣନା ହେବ । ମଦନମୋହନଙ୍କ କୃପାରୁ ସେ ଜଣେ ସ୍ନେହବତ୍ସଳ ଲୋକ ପାଲଟି ଯାଇଛନ୍ତି । ସେ ବ୍ରତ ଉପନୟନ କରିବା ପାଇଁ ସୁଦୂର କଟକ, ଜଗତସିଂହପୁର, ପୁରୀ, ଭଦ୍ରକ, ଢେଙ୍କାନାଳ, ଖୋର୍ଦ୍ଧା ଜିଲ୍ଲା ଆମନ୍ତ୍ରଣରେ ଯାଇଥାନ୍ତି । ତାଙ୍କ ସହିତ ବ୍ରାହ୍ମଣ, ବାରିକ, ଅନ୍ୟ ପ୍ରଜାମାନଙ୍କୁ ଯିବାପାଇଁ ସେ ଅନୁମତି ପ୍ରଦାନ କରନ୍ତି । ତାଙ୍କର ହଜାର ହଜାର ଶିଷ୍ୟ ତାଙ୍କର ଚରଣାଶ୍ରିତ ହେବାପାଇଁ ବହୁ ଦୂରରୁ ଧାଇଁ ଆସନ୍ତି ତାଙ୍କ ଏହି 'ମଠ'କୁ ।

ମଦନ ମୋହନ ଶ୍ରୀଜଗନ୍ନାଥଙ୍କର ଚଳନ୍ତି ପ୍ରତିମା । ଦେଢ଼ଫୁଟ ଉଚ୍ଚ ମଦନମୋହନଙ୍କର ସମସ୍ତ ରୀତିନୀତି ପାଇଁ ସବୁବେଳେ ମଠରେ ବିଦ୍ୟମାନ ଥାନ୍ତି । ଜଗନ୍ନାଥଙ୍କ ସମସ୍ତ ଚଳନ୍ତି ପ୍ରତିମାମାନଙ୍କ ମଧ୍ୟରେ ମଦନମୋହନ ହିଁ ସର୍ବାଧିକ ରୀତିନୀତିରେ ମୁଖ୍ୟ ଠାକୁର ଅଟନ୍ତି । ମଠରେ ମଦନମୋହନଙ୍କର ମୁଖ୍ୟ ନୀତିଗୁଡ଼ିକ ମଧ୍ୟରୁ ଝୁଲଣ ଯାତ୍ରା, ଚନ୍ଦନ ଯାତ୍ରା, ସ୍ୱନକ୍ଷତ୍ର ତିଥି, ରାସ ପୂର୍ଣ୍ଣିମା ଅନ୍ୟତମ । ଶ୍ରାବଣ ମାସରେ ହେଉଥିବା ଝୁଲଣ ଯାତ୍ରା ଓ କାର୍ତ୍ତିକ ମାସରେ ହେଉଥିବା ରାସ ପୂର୍ଣ୍ଣିମା ଓ ଅନ୍ୟ ପୂର୍ଣ୍ଣମୀ ତିଥି ଏହି ମଠର ସୌନ୍ଦର୍ଯ୍ୟ ବଢ଼ାଇଥାଏ । ମଠରେ ଥିବା ମଦନ ମୋହନଙ୍କର ସିଂହାସନଟି ଅତି ଆକର୍ଷଣୀୟ, ଦୋଳମଣ୍ଡପର କୁଞ୍ଜ ପରି ଶୋଭାପାଏ ।

ବେଦ ବେଦାନ୍ତଠାରୁ ଆରମ୍ଭ କରି ପୁରାଣ, ସଂସ୍କୃତି ବେଦର ଅଧ୍ୟୟନ ଓ ଅଧ୍ୟାପନାର କେନ୍ଦ୍ରସ୍ଥଳ ଥିଲା 'ମଠ' ସଂସ୍କୃତି । ମଠର ଅର୍ଥ ଛାତ୍ରାବାସ । ଆଦି ଶଙ୍କର ଏକାଧାରାରେ ଜଗତର ଅନ୍ୟତମ ଧର୍ମଗୁରୁ । ଦାର୍ଶନିକ, ସମାଜ ସଂସ୍କାରକ ଓ ବେଦାନ୍ତର ମୁଖ୍ୟ ପ୍ରବକ୍ତା । ସେ ଆଦିଶଙ୍କର ଓ ଶଙ୍କର ଭଗବତ ପାଦ ନାମରେ ମଧ୍ୟ ପରିଚିତ । ସେ ଦଶନାମୀ ସନ୍ନ୍ୟାସୀ ସଂପ୍ରଦାୟର ପ୍ରତିଷ୍ଠାତା । ହିନ୍ଦୁ ଧର୍ମର ପୁନଃ ସ୍ଥାପନା ଏବଂ ସମାଜ ସଂସ୍କାରରେ ତାଙ୍କର ଅବଦାନ ଅତୁଳନୀୟ । ଶଙ୍କରାଚାର୍ଯ୍ୟ ଭାରତ ସାରା ଭ୍ରମଣ କରି ବିଭିନ୍ନ ଦାର୍ଶନିକମାନଙ୍କର ଦ୍ୱାରା ତର୍କ ଓ ବକ୍ତୃତା ଦ୍ୱାରା

ଅଦ୍ୱୈତ ବେଦାନ୍ତର ପ୍ରଚାର କରିଥିଲେ । ସେ ମୀମାଂସା ମତ ଖଣ୍ଡନ କରି ସନ୍ନ୍ୟାସର ଗୁରୁତ୍ୱ ପ୍ରତିପାଦନ କରିଥିଲେ । ସେ ଭାରତର ଚାରି ପ୍ରାନ୍ତରେ ଚାରୋଟି ମଠ ସ୍ଥାପନା କରିଥିଲେ । ଏହି ମଠ ସବୁ ଅଦ୍ୱୈତ ମତବାଦ ପ୍ରଚାର ଓ ପ୍ରସାର କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

ସେ ଦଶନାମୀ ସନ୍ନ୍ୟାସୀ ସଂପ୍ରଦାୟର ପୁନଃ ସ୍ଥାପନା କରିଥିଲେ । ସେ ମଧ୍ୟ ଆଦି ଶଙ୍କରାଚାର୍ଯ୍ୟ, ଶଙ୍କର ଭଗବତ ପାଦ ଆଦି ନାମରେ ଜଣାଶୁଣା । ଆଦି ଶଙ୍କରାଚାର୍ଯ୍ୟ ଭଗବାନ ଶଙ୍କରଙ୍କ ସାକ୍ଷାତ ଅବତାର ଥିଲେ । ଭାରତୀୟ ସନାତନ ପରମ୍ପରାକୁ ପୂରା ଦେଶରେ ପ୍ରଚାର କରିବା ପାଇଁ ଆଦିଗୁରୁ ଶଙ୍କରାଚାର୍ଯ୍ୟ 'ମଠ' ସ୍ଥାପନା କରିଥିଲେ । ବର୍ତ୍ତମାନ ଏହି ଚାରୋଟି 'ମଠ' ଶଙ୍କରାଚାର୍ଯ୍ୟଙ୍କ ନେତୃତ୍ୱରେ ସନାତନ ପରମ୍ପରାର ପ୍ରଚାର ପ୍ରସାର କରିଛନ୍ତି ।

**୧. ଗୋବର୍ଦ୍ଧନ ମଠ:-** ଗୋବର୍ଦ୍ଧନ ମଠ ଭାରତର ପୂର୍ବ ଭାଗରେ ଓଡ଼ିଶାର ପୁରୀରେ ଅବସ୍ଥିତ । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମନ୍ଦିର ସହିତ ଗୋବର୍ଦ୍ଧନ ମଠର ସମ୍ବନ୍ଧ ରହିଛି । ଗୋବର୍ଦ୍ଧନ ମଠରେ ଦୀକ୍ଷା ନେଉଥିବା ସନ୍ନ୍ୟାସୀମାନଙ୍କର ନାମରେ "ଅରଣ୍ୟ" ନାମ ଯୋଗ କରାଯାଇଥାଏ । ଏହି ମଠରେ ମହାକାବ୍ୟ ହେଉଛି "ପ୍ରଜ୍ଞାନଂ ବ୍ରହ୍ମ" ଏବଂ ଏହି ମଠରେ ଋକବେଦ ସ୍ଥାପନ କରାଯାଇଛି ।

**୨. ଶାରଦା ମଠ:-** ଦ୍ୱାରକା ମଠ ଭାରତର ପଶ୍ଚିମ ଭାଗରେ ଶାରଦା ମଠ ନାମରେ ପରିଚିତ । ଏହି ମଠ ଗୁଜୁରାଟର ଦ୍ୱାରକା ଧାମରେ ଅବସ୍ଥିତ ଏହି ମଠରେ ଦୀକ୍ଷା ନେଉଥିବା ସନ୍ନ୍ୟାସୀମାନଙ୍କ ନାମରେ "ତୀର୍ଥ" ଏବଂ "ଆଶ୍ରମ" ଯୋଗ କରାଯାଇଥାଏ । ଏହି ମଠରେ ମହାକାବ୍ୟ ହେଉଛି 'ତତ୍ୱମସି' ଏବଂ ଏହି ମଠରେ ସାମବେଦ ସ୍ଥାପନ କରାଯାଇଛି ।

**୩. ଜ୍ୟୋର୍ତି ମଠ:-** ଜ୍ୟୋର୍ତିମଠ ଭାରତର ଉତ୍ତର ଭାଗରେ ଉତ୍ତରାଖଣ୍ଡର ବଦ୍ରିକା ଆଶ୍ରମରେ ଅବସ୍ଥିତ । ଜ୍ୟୋର୍ତି ମଠରେ ଦୀକ୍ଷା ନେଉଥିବା ସନ୍ନ୍ୟାସୀମାନଙ୍କ ନାମରେ "ଗିରି", "ପର୍ବତ" ଓ "ସାଗର" ନାମ ଯୋଗ କରାଯାଇଛି । ଏହି ମଠର ମହାକାବ୍ୟ ହେଉଛି "ଅୟମାତ୍ମା ବ୍ରହ୍ମ" ଏହି ମଠରେ ଅଥର୍ବ ବେଦର ସ୍ଥାପନା କରାଯାଇଛି ।

**୪. ଶୃଙ୍ଗେରୀ ମଠ:-** ଶୃଙ୍ଗେରୀ ଶାରଦା ପୀଠ, ଦକ୍ଷିଣ ଭାରତର ରାମେଶ୍ୱରରେ ଅବସ୍ଥିତ । ଏହି ମଠରେ ଦୀକ୍ଷା ନେଉଥିବା ସନ୍ନ୍ୟାସୀମାନଙ୍କ ମଧ୍ୟରେ "ପୁରୀ", "ଭାରତୀ", "ସରସ୍ୱତୀ" ନାମ ଯୋଗ କରାଯାଇଛି । ଏହି ମଠର ମହାକାବ୍ୟ ହେଉଛି "ଅହଂ ବ୍ରହ୍ମାସ୍ମି" । ଏହି ମଠରେ ଯଜୁଃବେଦ ସ୍ଥାପନ କରାଯାଇଛି ।

ଆଧୁନିକ ସମାଜରେ ଆମ ସଂସ୍କୃତି ରୁଗ୍ଣ ହେବାକୁ ବସିଛି । ସେହି ଧାରାରେ ମଣିଷ ତା'ର ଐତିହ୍ୟ, କଳା, ସଂସ୍କୃତି ଓ ପରମ୍ପରାକୁ ଜଳାଞ୍ଜଳି ଦେବାକୁ ପଛାଉ ନାହିଁ । ଭାରତୀୟ ସଂସ୍କୃତିର ଗରିମାମୟ ସ୍ମାରକୀ ଏବେ ଅବକ୍ଷୟ ଆଡ଼କୁ ଟାଣି ହୋଇ ଯାଉଥିବାରୁ ଆମ ଜାତି, ସଂସ୍କୃତି, ମଠ ଓ ପରମ୍ପରା ଲାଗି ପ୍ରଶ୍ନବାଚୀ ଛିଡ଼ା କରିଛି । ସେହି କ୍ରମରେ ପ୍ରାଚୀନ ମଠ ସଂସ୍କୃତି ମଧ୍ୟ ଅବକ୍ଷୟ ମୁଖୀ । ବର୍ତ୍ତମାନ ପରିପ୍ରେକ୍ଷୀରେ ଏହାର ପୁନଃଉଦ୍ଧାର ଆବଶ୍ୟକ ହୋଇପଡ଼ିଛି । ଏଥିପ୍ରତି ରାଜ୍ୟ ସରକାର ସଚେତନ ହେଲେ ପ୍ରାଚୀନ ମଠ, ସଂସ୍କୃତି ଅବକ୍ଷୟ ଧାରାରୁ ମୁକୁଳି ପାରିବ ବୋଲି ବୁଦ୍ଧିଜୀବୀ ମହଲରେ ଆଲୋଚନା ହେଉଛି । ପ୍ରକାଶ ଥାଉକି ବୈଦିକ କାଳରୁ ମଠ, ସଂସ୍କୃତିର ପରିପ୍ରକାଶ ପୁରାଣ ପୃଷ୍ଠାରୁ ଜାଣିବାକୁ ମିଳେ । ତେଣୁ ଏହାର ଅବକ୍ଷୟ ଧାରାକୁ ରୋକିବାକୁ ସମସ୍ତଙ୍କର ପ୍ରୟାସ ହେବା ଦରକାର ।

ଗିରିମଠ, ଜଗତସିଂହପୁର



# କେଇପଦ କହିବି

*ସଙ୍କର୍ଷଣ କାଣ୍ଡି*

ଜାଣି ଅତ୍ୟନ୍ତ ଆନନ୍ଦିତ ହେଲି, ମଦନ ମୋହନ ଜୀଉ ମଠାଧୀଶ ମହାରାଜ ପୂଜ୍ୟ ଶିଶିର ଭାରତୀ ମଠ ସଂପର୍କିତ ଏକ ତଥ୍ୟ ସମ୍ବଳିତ ପୁସ୍ତକ ରଚନା କରୁଛନ୍ତି । ଚାରିଶହ ବର୍ଷ ତଳର ମଠରେ ଐତିହ୍ୟ ଅତି ପ୍ରାଚୀନ । ସାଇତା ମାଦଳା ତଥ୍ୟକୁ ପୁଙ୍ଖାନୁ ପୁଙ୍ଖ ଭାବେ ବର୍ଣ୍ଣନା କରିଛନ୍ତି । ଆମ୍ଭ ଦେଖାନ୍ତରେ ମଠର ପୁରାତନ ଶୈଳୀ ଏବେ ବି ନିଖୁଣ ଭାବେ ଦୃଶ୍ୟମାନ । ପାରମ୍ପାରିକ ରୀତି ନୀତିରେ ଭଗବାନ ମଦନମୋହନଙ୍କ ପୂଜାପାର୍ବଣ ପାଳନ ହେଉଛି । ପ୍ରତ୍ୟେକ ପୂର୍ଣ୍ଣିମାରେ ଗୀତା ପାରାୟଣ ଅନୁଷ୍ଠିତ ହେଉଛି । ଆଖଣ୍ଡଳମଣି ଗୀତାଜ୍ଞାନ ପ୍ରଚାର ସଂଘର ସଦସ୍ୟ ରୂପେ ଆମେ ନିଜେ ଅଂଶ ଗ୍ରହଣ କରି କୃତାର୍ଥ ହୋଇଛୁ ।

ପ୍ରଭୁ ମଦନମୋହନ ଜୀଉଙ୍କୁ ପ୍ରାର୍ଥନା କରୁଛି ମହାରାଜ ଶିଶିର ଭାରତୀଙ୍କ ସ୍ୱାସ୍ଥ୍ୟ ଭଲ ରହୁ । ତାଙ୍କ ପୁସ୍ତକ ବହୁଳ ପ୍ରସାର ହେଉ ।



# ସଂକ୍ଷିପ୍ତ ଗୁରୁପରମ୍ପରା

*ପଣ୍ଡିତ ଅଭୟ କୁମାର ତ୍ରିପାଠୀଶର୍ମା*

ଭୂମିଠାରୁ ଭୂମା ଯାଏ ପ୍ରସରିଥିବା ଭାରତୀୟ ଗୌରବର ଐତିହ୍ୟ ମଧ୍ୟରେ ଉତ୍କଳ ସ୍ୱତନ୍ତ୍ର ସ୍ଥାନ ଅଧିକାର କରେ । ଏହି ଉତ୍କଳ ମାଟିରେ ତଥା ଭାରତର ମାଟିରେ ସର୍ବଧର୍ମର ସମନ୍ୱୟ ଦେଖିବାକୁ ମିଳେ । ତନ୍ମଧ୍ୟରୁ ସନାତନ ବା ହିନ୍ଦୁଧର୍ମ ସର୍ବତନ୍ତ୍ର ସ୍ୱତନ୍ତ୍ର । ପ୍ରାମାଣିକ ତଥ୍ୟାନୁସାରେ ଏହି ଧର୍ମ ସୃଷ୍ଟିର ଆଦ୍ୟଧର୍ମ ନାମରେ ବିଦିତ । "ଧାରୟତେ ଇତି ଧର୍ମଃ" ଅର୍ଥାତ୍ ସାମାଜିକ ଚଳଣି ଓ ରୀତିନୀତି ଯାହାଦ୍ୱାରା ପରିଚାଳିତ ତାହା ହିଁ ଧର୍ମ । ଏହି ଧର୍ମରେ ପରବର୍ତ୍ତି ସମୟରେ ବହୁ ମତବାଦ ଆସିଛି । ଲୋକେ ଭିନ୍ନ ଭିନ୍ନ ଚେତନାରେ ଉଦ୍‌ବୁଦ୍ଧ ହୋଇ ପରଂବ୍ରହ୍ମ ଏକ ନ୍ୟାୟରେ ଭିନ୍ନ ଭିନ୍ନ ଆଚରଣରେ ସିଦ୍ଧିପ୍ରାପ୍ତି କରି ତାହାକୁ ଏକ ସ୍ୱତନ୍ତ୍ର ଧର୍ମର ନାମକରଣ କରିଛନ୍ତି ମାତ୍ର । ଯାହାକୁ ଆମେ ମୂଳସନାତନ ଧର୍ମର ଶାଖା ବା ଉପଧର୍ମ ବୋଲି କହିଥାଉ । ମାତ୍ର ଧୀରେ ଧୀରେ ଏହି ସବୁ ଧର୍ମମାନଙ୍କରେ ବହୁ କୁସଂସ୍କାର ମଧ୍ୟ ଦେଖା ଦେଇଛି । ସେ ଯାହା ହେଉନା କାହିଁକି, ଧର୍ମ ସର୍ବଦା ସଂସାରକୁ ସୁମାର୍ଗରେ ପରିଚାଳିତ କରିଥାଏ । ଏହି ସନାତନ ଧର୍ମର ଶାଖା ପ୍ରଶାଖା ମଧ୍ୟରୁ ବୈଷ୍ଣବୀୟ ଓ ଗୌଡ଼ୀୟ ଚିନ୍ତାଧାରା ଏକ ସ୍ୱତନ୍ତ୍ରସ୍ଥାନ ନେଇଛି । ଏହି ଧାରାରେ ଥିବା ଲୋକେ ବିଭିନ୍ନ ସ୍ଥାନରେ ମଠ ମନ୍ଦିରମାନ ପ୍ରତିଷ୍ଠା କରି ଇତିହାସ ସୃଷ୍ଟି କରିଛନ୍ତି । ଯାହାକି ଅନେକ ଐତିହାସିକ ପୀଠ / ମଠ ଭାବରେ ଆମ୍ଭମାନଙ୍କ ଦୃଷ୍ଟିଗୋଚର ହୋଇଥାଏ । ତନ୍ମଧ୍ୟରୁ ଉତ୍କଳର ଯାଜପୁର ଜିଲ୍ଲା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଏଠାରେ ଆମ୍ଭେ ବିଭିନ୍ନ ମଠ ମନ୍ଦିର ବୌଦ୍ଧସ୍ତୂପ ଆଦି ଦେଖିବାକୁ ପାଉଛେ ।

ରସୁଲପୁର, ପଞ୍ଚାୟତ ସମିତି, ରସୁଲପୁର ଗ୍ରାମପଞ୍ଚାୟତ ଅନ୍ତର୍ଗତ ଖଣ୍ଡିତର ଗ୍ରାମରେ ଷୋଡଶ ଶତାବ୍ଦୀର ଶେଷ ଭାଗରେ ଏକ ମଠ ଗଢ଼ି ଉଠିଥିଲା । ଯାହାକୁ ସଦାବ୍ରତ ମଠ ବା ମଦନମୋହନ ମଠ ନାମରେ ଅଭିହିତ କରାଯାଏ ବା ଲୋକେ ଜାଣନ୍ତି । ଏହି ମଠର ଆରାଧ୍ୟ ଦେବତା ମଦନମୋହନ ଷଡ଼ଭୁଜା ମୂର୍ତ୍ତି । ଚାରି ହସ୍ତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଓ ଦୁଇ ହସ୍ତରେ ବଂଶୀ ଧାରଣ କରିଥିବା ପ୍ରସ୍ତର

ଖୋଦିତ ମୂର୍ତ୍ତି ଅତୀବ ଦୃଷ୍ଟି ଆକର୍ଷଣକାରୀ ଓ ମନମୋହନ । ଏହି ମଠାଧୀନ ଗ୍ରାମ ଦେବତୀ ମା' ଘାଟମଙ୍ଗଳା, ମା' ଭାଲୁଶୁଣୀ, ମା' ଜଠଙ୍ଗାଳି ଦେବୀ ଓ ଯଜ୍ଞେଶ୍ୱର ମହାଦେବଙ୍କ ମନ୍ଦିର ଗ୍ରାମର ବିଭିନ୍ନ ପ୍ରାନ୍ତରେ ଅବସ୍ଥିତ, ଯାହାକି ମଠ ମାର୍ଫତରେ ପରିଚାଳିତ ।

ଅତ୍ୟନ୍ତ ଆନନ୍ଦର ବିଷୟ ଏହିକି, ଏହି ମଠର ଇତିହାସ ଓ ଏହି ମଠର ପ୍ରାକ୍ତନ ମଠାଧୀଶ ୰ ମହନ୍ତ ନବକିଶୋର ଭାରତୀ ମହୋଦୟଙ୍କ ଦ୍ୱାରା ବିରଚିତ ଭକ୍ତିରସାପ୍ଳୁତ ଭଜନ ସମୂହକୁ ଏକ ପୁସ୍ତକର ରୂପ ଦେବାକୁ ଯାଉଛନ୍ତି ତାଙ୍କରି ଯୋଗ୍ୟ ଦାୟାଦ ମହନ୍ତ ଶିଶିର କୁମାର ଭାରତୀ ମହାଶୟ । ଏହା ନିଶ୍ଚିତ ଜନାଦୃତି ଲାଭ କରିବ ବୋଲି ମୋର ଆଶା ଓ ବିଶ୍ୱାସ ।

ଏଠାରେ ଜଗଦ୍‌ଗୁରୁ ପରମ୍ପରାନୁସାରେ ଭାରତୀଙ୍କର ସ୍ଥାନ ନିରୂପଣ କରିବାକୁ ଯାଇ ସଂକ୍ଷିପ୍ତ ଅବତାରଣା କରୁଛି । ଯଥା:-

"ନାରାୟଣଂ ପଦ୍ମଭବଂ ବିଶିଷ୍ଟ, ଶକ୍ତିଞ୍ଚ ତତ୍‌ପୁତ୍ର ପରାଶରଞ୍ଚ । ବ୍ୟାସଂଶୁକଂ ଗୌଡ଼ପଦଂ ମହାନ୍ତଂ, ଗୋବିନ୍ଦ ଯୋଗୀନ୍ଦ୍ର ମଥାସ୍ୟ ଶିଷ୍ୟମ୍ ॥

ଶ୍ରୀ ଶଙ୍କରାଚାର୍ଯ୍ୟ ମଥାସ୍ୟ ପଦ୍ମ ପାଦଞ୍ଚ ହସ୍ତାମଳକଂଚ ଶିଷ୍ୟମ୍ । ତଂ ତ୍ରୋଟକ ବାର୍ତ୍ତିକ କାରମନ୍ୟାନ୍, ଅସ୍ମାଦ୍ ଗୁରୁଂ ସନ୍ତତମାନ ତୋଽତସ୍ମି ॥"

ଶ୍ରୁତିସ୍ମୃତି ପୁରାଣାନାମାଳୟଂ କରୁଣାଳୟମ୍, ନମାମି ଭଗବଦ୍ ପାଦଂ ଶଙ୍କରଂ ଲୋକଶଙ୍କରମ୍ ।

ଶଙ୍କରଂ ଶଙ୍କରାଚାର୍ଯ୍ୟଂ କେଶବଂ ବାଦରାୟଣଂ, ସୂତ୍ରଭାଷ୍ୟ କୃତୌବନ୍ଦେ ଭଗବନ୍ତୌ ପୁନଃ ପୁନଃ ॥

ଏହା ହିଁ ହେଉଛି ସନାତନ ଗୁରୁପରମ୍ପରାର ଧାରା । ନାରାୟଣଙ୍କ ଶିଷ୍ୟ ବ୍ରହ୍ମାଙ୍କର ବଶିଷ୍ଠ । ବଶିଷ୍ଠଙ୍କର ଶିଷ୍ୟ ଶକ୍ତି । ଶକ୍ତିଙ୍କର ଶିଷ୍ୟ ପରାଶର । ପରାଶରଙ୍କର ଶିଷ୍ୟ ବ୍ୟାସ । କ୍ରମାନ୍ୱୟରେ ବ୍ୟାସଙ୍କର ଶୁକ- ଗୌଡ଼ପଦ- ମହାନ୍ତ- ଗୋବନ୍ଦ- ଯୋଗୀନ୍ଦ୍ର । ଏ ପର୍ଯ୍ୟନ୍ତ ଗୋଟିଏ ଧାରାରେ ଗୁରୁପରମ୍ପରା ଧାରାବାହିକ ଭାବେ ଚାଲିଆସିଥିଲା । ମାତ୍ର ଗୋବିନ୍ଦଙ୍କ ଶିଷ୍ୟ ଆଚାର୍ଯ୍ୟ ଶଙ୍କର ସପ୍ତମ ଶତାବ୍ଦୀରେ ଆସିଲେ ଆଦି ଶଙ୍କରାଚାର୍ଯ୍ୟ ଗୁରୁଭାବେ । ସେ ଧର୍ମ ଧାରଣାରେ ଅନେକ ସଂସ୍କାର ଆଣିଲେ ଓ ବିକୃତ ଧର୍ମ ଧାରଣାକୁ ବିଲୁପ୍ତ କରି ପୁନଃ ଧର୍ମକୁ ପ୍ରତିଷ୍ଠାଦେଲେ । ସନାତନ ଧର୍ମର ପ୍ରକୃତ ତଥ୍ୟକୁ ଲୋକଙ୍କଠାରେ ଉପସ୍ଥାପନ କଲେ । ତାଙ୍କଠାରୁ ଯେଉଁ ଶିଷ୍ୟମାନେ ଆସିଲେ ପଦ୍ମପାଦ, ହସ୍ତମଳକ, ତ୍ରୋଟକ, ବାର୍ତିକ, କାରମଣ୍ୟ ଓ ବ୍ରହ୍ମାନନ୍ଦ ।

ଆଚାର୍ଯ୍ୟ ଶଙ୍କରଙ୍କଠାରୁ ଦଶନାମୀ ସଂପ୍ରଦାୟର ସୃଷ୍ଟି ବୋଲି ମଧ୍ୟ ଦାବିଦାର ଏହି ଦଶନାମୀମାନେ । ଯଥା:-

"ତୀର୍ଥାଶ୍ରମ ବନାରଣ୍ୟ ଗିରି ପର୍ବତ ସାଗରାଃ । ସରସ୍ୱତୀ ଭାରତୀ ଚ ପୁରୀ ନାମାନିବୈଦଶଃ ।"

ଅର୍ଥାତ୍- ତୀର୍ଥ, ଆଶ୍ରମ, ବନ, ଅରଣ୍ୟ, ଗିରି, ପର୍ବତ, ସାଗର, ସରସ୍ୱତୀ, ଭାରତୀ ଓ ପୁରୀ ଆଦି ଜଣ । ଏମାନେ ଶଙ୍କର ପନ୍ଥୀ । ମାତ୍ର ସମୟ ପ୍ରଭାବରେ ସବୁକିଛିର ପରିବର୍ତ୍ତନ ହୋଇଛି । ଏମାନେ ଆଉ ପୂର୍ବବତ୍ ନାହାନ୍ତି । କିନ୍ତୁ ମଦନ ମୋହନ ମଠ ଏହି ଭାରତୀ ସଂପ୍ରଦାୟଙ୍କ ଦ୍ୱାରା ପ୍ରତିଷ୍ଠିତ ବୋଲି ମାଦଳାରୁ ଜଣାଯାଏ । ଏହି ପୁରାତନ ପରମ୍ପରାରୁ ଧାରଣ କରୁଥିବା ଐତିହାସିକ ମଠ ଯାହା ପ୍ରାୟତଃ ଯାଜପୁର ଜିଲ୍ଲାର ସର୍ବ ପୁରାତନ ମଠ ବୋଲି ଅନୁମାନ କରାଯାଏ । ଏହି ମଠର ଅବସ୍ଥାନ ହେତୁ ଗ୍ରାମବାସୀ ଏକ ଐତିହ୍ୟସଂପନ୍ନ ଗ୍ରାମର ଗ୍ରାମବାସୀ ଭାବେ ନିଜକୁ ଗର୍ବିତ ଅନୁଭବ କରନ୍ତି ।

॥ ଜୟ ଜଗନ୍ନାଥ ॥





ଖଣ୍ଡିତର ହାଇସ୍କୁଲ ପରିସର



ଖଣ୍ଡିତର ହାଇସ୍କୁଲ ପରିସର

# ମୋ' କଲମରୁ

*ଶ୍ରୀ ବିଚିତ୍ରା ନନ୍ଦ ଆରଣ, ବିଏ.ବି.ଏଡ୍*

ଇଏ ସେହି ଯାଜପୁର ଜିଲ୍ଲାର ଧର୍ମଶାଳା ନିର୍ବାଚନ ମଣ୍ଡଳୀ ଅନ୍ତର୍ଭୁକ୍ତ ଖଣ୍ଡିତର ଗ୍ରାମ । ଖଣ୍ଡିତର ମହାନ୍, ମହାନ ତା'ର ପରମ୍ପରା । କ୍ଷୁଦ୍ର ଗ୍ରାମ ହେଲେ ମଧ୍ୟ ତା'ର ନିଶ୍ଚିତ ଭାବରେ ଅନ୍ୟ ଗ୍ରାମଠାରୁ ଭିନ୍ନ । ଉକ୍ତ ଗ୍ରାମରେ ଶ୍ରୀ ଶ୍ରୀ ମଦନମୋହନଜୀଉ, ଜଗତ୍‌ଜନନୀ ମା' ଘାଟମଂଗଳା ବିଗ୍ରହମାନ କରି ଉକ୍ତ ଗ୍ରାମର ଶ୍ରୀବୃଦ୍ଧି କରିଛନ୍ତି । ଉତ୍ତରରେ ସ୍ରୋତସ୍ୱିନୀ ନଦୀ ଜାହ୍ନବୀ ସଦୃଶ ପୁଣ୍ୟତୋୟା ଖରସ୍ରୋତା କଳକଳ ନାଦରେ ବହିଚାଲିଛି ଏବଂ କହି ଚାଲିଛି ଏ ସ୍ଥାନ ପବିତ୍ର । ସେଥିପାଇଁ ସେ ଦୈନିକ ଶ୍ରୀଜୀଉ ଓ ମା' ମଂଗଳାଙ୍କ ପଦଧୌତରେ ମଜ୍ଜିଯାଉଛି । ଏ ଗ୍ରାମଟି ଗୋଟିଏ ଛୋଟିଆ ପର୍ଯ୍ୟଟନ ସ୍ଥଳୀ କହିଲେ ଅତ୍ୟୁକ୍ତି ହେବନାହିଁ ।

ଶ୍ରୀଜୀଉଙ୍କର ବାରମାସରେ ତେରପର୍ବ ପାଳିତ ହୁଏ । ଯଥା:- ଜନ୍ମାଷ୍ଟମୀ, ରାଧାଷ୍ଟମୀ, ଝୁଲଣଯାତ୍ରା, ସୁନିଆଁ, ବାମନଜନ୍ମ, ପୁଷ୍ୟାଭିଷେକ, ଦୋଳଯାତ୍ରା ଇତ୍ୟାଦି । ଏମାନଙ୍କ ମଧ୍ୟରେ ଝୁଲଣଯାତ୍ରା ଓ ଦୋଳଯାତ୍ରା ଶ୍ରେଷ୍ଠ ପର୍ବ । ଝୁଲଣ ଯାତ୍ରା ପାଞ୍ଚଦିନ ଧରି ପାଳିତ ହୁଏ ଏବଂ ଗହ୍ମା ପୂର୍ଣ୍ଣିମାରେ ଶେଷ ହୋଇଥାଏ । ଏହା ମଠର ଏକ ବିରାଟ ପର୍ବ କହିଲେ ଅତ୍ୟୁକ୍ତି ହେବନାହିଁ । ମହନ୍ତ ମହାରାଜଙ୍କ ନେତୃତ୍ୱରେ ଗ୍ରାମବାସୀମାନେ ଏଠାକୁ ସନ୍ଧ୍ୟା ସମୟରେ ଆସି ଝୁଲଣ କାର୍ଯ୍ୟ ସାରି ପ୍ରାୟ ରାତି ୧୦ଟାରେ ଘରକୁ ପ୍ରସାଦ ପାଇ ଫେରନ୍ତି । ଶେଷଦିନ ଅର୍ଥାତ ଗହ୍ମା ପୂର୍ଣ୍ଣିମା ଦିନ ରାତି ବହୁତ ହୋଇଯାଏ । ଶ୍ରୀଜୀଉଙ୍କୁ ବିଦାୟ ଦେଇ ସିଂହାସନରେ ବସାଇ ସମସ୍ତେ ଫେରନ୍ତି । ଝୁଲଣ ସରେ । ଅନ୍ୟଟି ଦୋଳଯାତ୍ରା ବା ହୋରି । ସ୍ୱୟଂ ଜୀଉ ମେଲଣକୁ ନଯାଇ ପ୍ରତିନିଧି ସ୍ୱରୂପ ରାଧା କୃଷ୍ଣଙ୍କୁ ପଠାନ୍ତି । ମେଲଣ ସେହି ଜଗତ୍ ଜନନୀ ମା' ଘାଟମଂଗଳା ପୀଠରେ ହୁଏ । ଶ୍ରୀଜୀଉଙ୍କ ପ୍ରତିନିଧି ହେଉଛନ୍ତି ଥାନପତି । ସେ ମେଲଣ ସ୍ଥଳୀକୁ ପ୍ରଥମେ ନିଜେ କରନ୍ତି ଓ ଶେଷରେ ଆସନ୍ତି । ଅନ୍ୟାନ୍ୟ ସ୍ଥାନରୁ, ଯଥା- ହରିପୁରରୁ ଶ୍ରୀ ଶ୍ରୀ ବୃନ୍ଦାବନ ଚନ୍ଦ୍ର, ଡିହସାରରୁ ଶ୍ରୀ ଶ୍ରୀ ଗୋପୀନାଥ, କୋଳଥଳରୁ ଗୋପାଳଜୀଉ ଇତ୍ୟାଦି । ମେଲଣ ପୀଠରେ ପ୍ରବେଶ କରି ବହୁ ସାଜସଜ୍ଜା ସହିତ ରୋଷଣି କରନ୍ତି, ଯାହା ଏବେ ମଧ୍ୟ ଚାଲୁଅଛି । ଏହା ପୂର୍ଣ୍ଣିମା ପରଦିନ ହୁଏ । ଆହୁରି

ମଧ୍ୟ ମା'ଙ୍କ ପୀଠରେ ରଜ ସଂକ୍ରାନ୍ତି ସମୟକୁ ଯାଜପୁର ଆଥେଲେଟିକ ଆସୋସିଏସନ୍ ତରଫରୁ ତିନିଦିନ ବ୍ୟାପୀ ମହାସମାରୋହରେ କବାଡ଼ି ଖେଳହୁଏ । ଯାହା କି ଯାଜପୁର ଜିଲ୍ଲାର ଗୌରବ । ଅନ୍ୟାନ୍ୟ କ୍ରୀଡ଼ା ମଧ୍ୟ ହୁଏ । ଏହା ଏକ ଆନନ୍ଦ ସମୟ । ବାସ୍ତବରେ ଗ୍ରାମବାସୀ ତଥା ଏ ଅଞ୍ଚଳବାସୀ ଭାଗ୍ୟବାନ । ଏଣୁ ଖଣ୍ଡିତର ଏକ ଲୀଳାକ୍ଷେତ୍ର ।

ଖଣ୍ଡିତର ମଠ (କେଉଁଟ ଲଗୁଁଆ)ରେ ଦୀର୍ଘ ଷୋଡ଼ଶ ଶତାବ୍ଦୀରୁ ଶ୍ରୀ ଶ୍ରୀ ମଦନମୋହନଜୀଉ ନିଜେ ଏ ସ୍ଥାନକୁ ସୁଦୀର୍ଘ ବୃନ୍ଦାବନରୁ ଆସି ତାଙ୍କର ଲୀଳାକ୍ଷେତ୍ର ବାଛିଛନ୍ତି । ଯାହାକି ଆଶ୍ଚର୍ଯ୍ୟ ଲାଗେ । ଦୁଇ ଜଣ ବ୍ୟକ୍ତି ବୃନ୍ଦାବନରୁ ଆସି ଶ୍ରୀଜୀଉଙ୍କୁ କାନ୍ଧେଇ କାନ୍ଧେଇ ଆଣି ଏଠାରେ ରାତ୍ରିଯାପନ କରିଥିଲେ । ପରଦିନ ପୁରୀକୁ ସେମାନେ ଚାଲିଗଲେ ଶ୍ରୀଜୀଉଙ୍କ ଇଂଗିତରେ । ରଖି ଦେଇଗଲେ ଶ୍ରୀଜୀଉଙ୍କୁ । ଏହା ପୂର୍ବପୁରୁଷଙ୍କ ପାଖରୁ ଆମ୍ଭେ ଶୁଣିଅଛୁ । ଶ୍ରୀ ଶ୍ରୀ ମଦନ ମୋହନଜୀଉଙ୍କରର ଅନେକ ଅଲୌକିକ କାହାଣୀ ଶୁଣାଯାଏ । ଯାହାକି ନ ଦେଖିଲେ ବିଶ୍ୱାସ ହେବନାହିଁ । କିନ୍ତୁ ସେ ହେଉଛନ୍ତି ଚଳନ୍ତି କଥାକୁହା ଠାକୁର । ଭଲ ମନ୍ଦରେ, ଦୁଃଖ ସୁଖରେ ସେ ହେଉଛନ୍ତି ସାଥୀ । ତାଙ୍କ ବିନା ଆଉ କେହି ସାହା ନୁହଁନ୍ତି । ସେ ଶୟନେ, ସ୍ୱପନେ ଜାଗରଣେ ସମସ୍ତ ଟିକିନିଖି ବ୍ୟାଖ୍ୟା କରିଥାନ୍ତି ଏ ମଠ ପାଇଁ ।

ଖଣ୍ଡିତର ମଠ ଦଶନାମୀ ସନ୍ନ୍ୟାସୀ ସମ୍ପ୍ରଦାୟ ଭୁକ୍ତ । ଭାରତୀ ନାମୀ ଅଟନ୍ତି । ଏହି ଦଶନାମା ସନ୍ନ୍ୟାସୀ ସୃଷ୍ଟିକର୍ତ୍ତା ହେଉଛନ୍ତି ଆଦି ଶଙ୍କରାଚାର୍ଯ୍ୟ । ଚାରିଧାମରେ ଚାରୋଟି ମଠ ଅଛି ।

ଚାରିଗୋଟି ମଠ ବ୍ୟତୀତ ଦଶନାମୀ ସନ୍ନ୍ୟାସୀ ସଂପ୍ରଦାୟର ପ୍ରାୟ ବାରଶହ ମଠ ଭାରତ ବର୍ଷରେ ନାନାସ୍ଥାନରେ ଅଛି । ଚାରି ମଠରେ ଦଶଜଣ ଶିଷ୍ୟଙ୍କଠାରୁ ଦଶ ଗୋଟି ସଂପ୍ରଦାୟ ସୃଷ୍ଟି ହୋଇଛି । ସନ୍ନ୍ୟାସୀମାନେ ଦୁଇ ଗୋଟି ଶ୍ରେଣୀରେ ବିଭକ୍ତ । ପ୍ରଥମେ- ଦଣ୍ଡିସ୍ୱାମୀ ଦ୍ୱିତୀୟେ, ପରମହଂସ । ପ୍ରଥମ ଅବସ୍ଥାରେ ଦଣ୍ଡ ଧାରଣ କରି ବ୍ରହ୍ମଜ୍ଞାନ ଆଲୋଚନା କରିଥାନ୍ତି । ବ୍ରହ୍ମଙ୍କର ଉପଲବ୍ଧି ହେଲେ ପରମହଂସ ହୋଇ ଲୋକଶିକ୍ଷା, ଶାସ୍ତ୍ରବାଖ୍ୟା ଏବଂ ଜଗତହିତ କର୍ମରେ ନିଯୁକ୍ତ ହୁଅନ୍ତି ।

ଏହି ଖଣ୍ଡିତର ମଠର ମହନ୍ତମାନେ କଥିତ ଗ୍ରାମ (ଖଣ୍ଡିତର) ସ୍ଥିତ ଭାରତୀ ନାମ ସନ୍ନ୍ୟାସୀ ବଂଶ ପରଂପରାର । ବଂଶର ଜ୍ୟେଷ୍ଠ ପୁତ୍ର ମହନ୍ତଙ୍କର ଶିଷ୍ୟ ହୋଇ ପରବର୍ତ୍ତୀ ସମୟରେ ମଠାଧୀଶ ହେବାର ଯୋଗ୍ୟତା ଅର୍ଜନ କରିଥାନ୍ତି । ସେଥିପାଇଁ ଜଣେ କବି ଶ୍ରୀଯୁକ୍ତ ଜଗନ୍ନାଥ ମହାନ୍ତି (ବାହାଦଲାପୁର ଗ୍ରାମ), ତାଙ୍କର ଗୋଟିଏ ରଚନା ମୋର ମନେପଡ଼େ । ସେ ଲେଖିଛନ୍ତ- ଭାରତୀ କେଶରୀ ହେଲେ ତବ ଅନୁଚର । ସେ ବର୍ତ୍ତମାନ ନାହାଁନ୍ତି । କିନ୍ତୁ ତାଙ୍କର ରଚନା ମନରୁ ଲିଭିନାହିଁ । ଭାରତୀ

ବଂଶର ଶ୍ରୀ ଶ୍ରୀ ମଦନ ମୋହନଜୀଉ ହେଉଛନ୍ତି ଆରାଧ୍ୟ ଦେବତା । ଏ ବଂଶ ପ୍ରତି ତାଙ୍କର ସ୍ନେହାଶୀଷ ବର୍ଷିତ ହେଉଅଛି । ସେ ହେଉଛନ୍ତି ଭାରତୀ ବଂଶର କଲ୍ୟାଣକାରୀ । ତାଙ୍କ ବିନା ଏ ବଂଶର ଗତ୍ୟନ୍ତର ନାହିଁ । ସେ ବଂଶର ପିତା, ମାତା, ବନ୍ଧୁ ସବୁକିଛି । ତାଙ୍କର କୃପା ସର୍ବଦା ବର୍ଦ୍ଧିତ ହେଉଅଛି ।

ଶ୍ରୀ ଶ୍ରୀ ମଦନ ମୋହନ ଜୀଉଙ୍କ ପ୍ରଥମ ସେବକ (ମହନ୍ତ) ଭାବେ ଦଶଜଣ ମଠରେ ସେବା କରିଆସିଛନ୍ତି । ଏ ପର୍ଯ୍ୟନ୍ତ ନଅଜଣ ଶ୍ରେଷ୍ଠ ସେବକ ଭାବେ ସେବାକରି ତାଙ୍କର ନିତ୍ୟଧାମକୁ ଚାଲିଗଲେଣି । ଯେଉଁ ପବିତ୍ର ତଥା ଚିର ସ୍ମରଣୀୟ ଆତ୍ମାମାନେ ଗୋଟିଏ ଆଲୋକରୁ ଅନ୍ୟ ଏକ ଆଲୋକ, ଗୋଟିଏ ଇଚ୍ଛାରୁ ଅନେକ ଇଚ୍ଛାକୁ ଜନ୍ମଦେଇ ଆମ ଗହଣରେ ନାହାଁନ୍ତି, ବିଦାୟ ନେଇଛନ୍ତି । କିନ୍ତୁ ଗଢ଼ି ଦେଇଛନ୍ତି ସ୍ମୃତିର ମନ୍ଦିର, ତାହା ଭୁଲିବାର ନାହିଁ, ଅବିସ୍ମରଣୀୟ । ସେମାନେ ହେଉଛନ୍ତି ୧. ମହନ୍ତ ଶ୍ରୀ ସଦାଶିବ ଭାରତୀ ଗୋସ୍ୱାମୀ, ୨. ମହନ୍ତ ଗରିବଭାରତୀ ଗୋସ୍ୱାମୀ, ୩. ମହନ୍ତ ଦେଓ ଭାରତୀ ଗୋସ୍ୱାମୀ, ୪. ମହନ୍ତ ପୁରୁଷୋତ୍ତମ ଭାରତୀ, ୫. ମହନ୍ତ ହରିହର ଭାରତୀ ଗୋସ୍ୱାମୀ, ୬. ମହନ୍ତ ବୃନ୍ଦାବନ ଭାରତୀ ଗୋସ୍ୱାମୀ, ୭. ମହନ୍ତ ଲୋକନାଥ ଭାରତୀ ଗୋସ୍ୱାମୀ, ୮. ମହନ୍ତ କୃଷ୍ଣଚନ୍ଦ୍ର ଭାରତୀ ଗୋସ୍ୱାମୀ, ୯. ମହନ୍ତ ନବ କିଶୋର ଭାରତୀ ଗୋସ୍ୱାମୀ, (ଏମାନେ ସ୍ୱାର୍ଗାରୋହଣ କରିଛନ୍ତି), ୧୦. ମହନ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ, ବର୍ତ୍ତମାନର ମଠାଧୀଶ ଅଛନ୍ତି ।

୧. ସଦାଶିବ ଭାରତୀ ଗୋସ୍ୱାମୀ, ହେଉଛନ୍ତି ଏ ମଠର ପ୍ରତିଷ୍ଠାତା ଓ ଆଜନ୍ମ ବ୍ରହ୍ମଚାରୀ, ଆଦିକେଶବ । ତାହାଙ୍କର ତୁଳନାନାହିଁ । ସେ ଭୀଷ୍ମଙ୍କ ପରି ଇଚ୍ଛାମୃତ୍ୟୁ ବରଣ କରିଛନ୍ତି । ତାଙ୍କ ସମାଧି ମନ୍ଦିର ମଠରେ ଅଛି । ସେ ବର୍ତ୍ତମାନ ସେବା ପୂଜା ପାଉଛନ୍ତି । (୨) ମହନ୍ତ ଶ୍ରୀ ବୃନ୍ଦାବନ ଭାରତୀଙ୍କୁ ମୁଁ ଦେଖିନାହିଁ । କିନ୍ତୁ ଯାହା ମୋର ଅଜା ଓ ମାମୁଁଙ୍କଠାରୁ ଶୁଣିଛି, ଯେତେବେଳେ ଭାରତୀ ବଂଶର ଅର୍ଜୁନ ଭାରତୀ ହେଲେ ତାଙ୍କର ସନ୍ତାନ ନଥିଲେ । ସେ ସର୍ବଦା ଦୁଃଖରେ କାଳଯାପନ କରୁଥିଲେ । ମଠରେ ମହନ୍ତ ହେବାକୁ କେହି ନାହିଁ । ସମସ୍ତେ ବିଚଳିତ । ମହନ୍ତ ହରିହରିଙ୍କ ଠାରୁ ଶେଷ ହେଲା ବୋଲି ସବୁ ଧରି ନେଲେ । କିନ୍ତୁ ଜିୟତି କେନ ବାଧତେ, ନିୟତିର ଲିପି ଅଖଣ୍ଡନୀୟ । ଯୋଗକୁ ପୁରୀ ତୀର୍ଥଯାତ୍ରୀ ସ୍ୱାମୀ ସ୍ତ୍ରୀ ଦୁଇଜଣ । ଏହିଠାରେ ବା ଭାରତୀ ଘରେ ସନ୍ଧ୍ୟା ସମୟରେ ପହଞ୍ଚି ରାତ୍ରିଯାପନ କଲେ । ସ୍ତ୍ରୀଟି ଥିଲେ ଆସନ୍ନ ପ୍ରସବା । ସେହି ରାତିରେ ସେ ଦୁଇଟି ପୁତ୍ର ସନ୍ତାନ ଜନ୍ମ ଦେଲେ । ଅର୍ଜୁନ ଭାରତୀ ଓ ତାଙ୍କ ସ୍ତ୍ରୀଙ୍କର ଆନନ୍ଦ କହିଲେ ନସରେ । ଶ୍ରୀ ଶ୍ରୀ ମଦନ ମୋହନଙ୍କର କୃପା ହେଲା । ମଠ ପାଇଁ ଚିନ୍ତା ତାଙ୍କର । ସେ ସ୍ୱାମୀ ସ୍ତ୍ରୀ ବ୍ରାହ୍ମଣ

ଜାତିର । ଘର ବୃନ୍ଦାବନ, ସେମାନେ ପ୍ରଥମ ପୁତ୍ରଟିକୁ ଅର୍ଜୁନ ଭାରତୀଙ୍କୁ ଦେଲେ । ଆନନ୍ଦରେ ସ୍ୱାମୀ ସ୍ତ୍ରୀ ଶ୍ରୀ ଶ୍ରୀ ମଦନ ମୋହନଙ୍କ ଶ୍ରୀପାଦରେ ପ୍ରଣାମ ଜଣାଇ ନିସନ୍ତାନ ଦୋଷରୁ ମୁକ୍ତି ପାଇଲେ ଓ ସେ ପଥଚାରୀ ସ୍ୱାମୀ ସ୍ତ୍ରୀ ଅନ୍ୟପୁତ୍ରଟିକୁ କୁଆଖିଆଠାରେ ଅନ୍ୟ ଜଣକୁ ଦେଇ ପୁରୀ ଚାଲିଗଲେ । ମଠର ମହନ୍ତ ଚିନ୍ତା ଗଲା । ତା'ପରେ ଅର୍ଜୁନ ଭାରତୀଙ୍କର ଆଉ ତିନିଗୋଟି ପୁତ୍ର ଜନ୍ମ ହେଲେ । ସେମାନେ ହେଲେ ଚିନ୍ତାମଣି, ରଘୁନାଥ ଓ ନୀଳମଣି । ବଡ଼ପୁଅ ହିସାବରେ ପାଳିତ ପୁତ୍ରର ନାମ ଅର୍ଜୁନ ଦେଲେ ବୃନ୍ଦାବନରୁ ଆସିଥିବାରୁ ବୃନ୍ଦାବନ, ଯେ କି ଜଣେ ଆଦରଣୀୟ ଭାତୃ ସ୍ନେହର, ପିତୃମାତୃ ଭକ୍ତ, ପରୋପକାରୀ ବୋଲି ଖ୍ୟାତ ଥିଲେ । ସେ ମଠର ଉନ୍ନତି କଳ୍ପେ କିଛି କାର୍ଯ୍ୟ କରିଥିଲେ । ଯାହାକି ସମସ୍ତେ ମନେ ରଖିଥିଲେ । ୨. ଗରିବ ମହାରାଜ, ୩. ଦେଓ ମହାରାଜ, ୪. ପୁରୁଷୋତ୍ତମ ମହାରାଜ, ୫. ହରିହର ମହାରାଜ,୭. ଲୋକନାଥ ମହାରାଜ, ୮. କୃଷ୍ଣଚନ୍ଦ୍ର ମହାରାଜଙ୍କ ସମ୍ବନ୍ଧରେ ଏ ଅଧୀନର ସେପରି କିଛି ଜ୍ଞାନନାହିଁ, ତେଣୁ କିଛି ଲେଖି ପାରୁନାହିଁ ।

ନବମ ମହନ୍ତ ହେଉଛନ୍ତି ମହନ୍ତ ନବ କିଶୋର ଭାରତୀ ଗୋସ୍ୱାମୀ । ମୋର ଜ୍ୟେଷ୍ଠ ମାତୁଳ । ଯାହାଙ୍କ ଆଶୀର୍ବାଦରେ ମୁଁ ଆଜି ମଣିଷ ହୋଇ ପାରିଛି ମୁଁ ପିତୃହରା ହେଲା ପରେ ସେ ମୋତେ ଆଣି ଏଠାରେ ରଖି ପାଠ ପଢ଼ାଇ ମୋର ଦାୟିତ୍ୱ ନେଇଥିଲେ । ତାଙ୍କର ଋଣ ମୁଁ ଜନ୍ମଜନ୍ମ ଧରି ଶୁଝିପାରିବି ନାହିଁ । ମୋ' ଜୀବନର ସେ ହେଉଛନ୍ତି ଧ୍ରୁବତାରା ସଦୃଶ । ଅନ୍ଧକାର ରାତିରେ ନାବିକମାନଙ୍କୁ ଦିଗ ନିର୍ଣ୍ଣୟରେ ସାହାଯ୍ୟ କରୁଥିବା ଧ୍ରୁବତାରା ମୋତେ ଅନ୍ଧାର ପଥରୁ ଆଲୋକ ପଥକୁ ଆଣିଥିବା ବ୍ୟକ୍ତି । ମୋ'ର ଚିର ନମସ୍ୟ ଓ ପୂଜ୍ୟ । ସେ ଏକାଧାରରେ ଥିଲେ ଜଣେ ଲେଖକ ଗୀତିକାର, କଣ୍ଠଶିଳ୍ପୀ, ସମସ୍ତ ବାଦ୍ୟର ଧୂରୀଣ, ସମାଜସେବୀ, ଅନୁଷ୍ଠାନ ପ୍ରେମୀ ନ୍ୟାୟବନ୍ତ । ଆଜି ଯେଉଁ ଖଣ୍ଡିତର ହାଇସ୍କୁଲ ଅଛି, ତା'ର ନିର୍ମାତା ହେଲେ ମହନ୍ତ ନବକିଶୋର ଭାରତୀ । .ଶେଷ ପର୍ଯ୍ୟନ୍ତ ହାଇସ୍କୁଲର ସଭାପତି ଥିଲେ । ସ୍ଥାନୀୟ ପ୍ରାଇମେରୀ ସ୍କୁଲରେ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଶେଷ ପର୍ଯ୍ୟନ୍ତ ମଧ୍ୟ ସଭାପତି ଥିଲେ । ତାଙ୍କ ବ୍ୟକ୍ତିତ୍ୱ, ଗୁଣ ଗାନ କରିବା ମୋ' ପକ୍ଷରେ ସମ୍ଭବ ନୁହେଁ । କାରଣ ସେ ମହାନ୍ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ସେ ଯେଉଁଠି ଥାଆନ୍ତୁନା କାହିଁକି ତାଙ୍କର ଆଶୀର୍ବାଦ ମୋ' ମସ୍ତକରେ ନିଶ୍ଚୟ ଢାଳୁଥିବେ । ଏଥିରେ ସନ୍ଦେହ ନାହିଁ ।

ବର୍ତ୍ତମାନର ମଠାଧୀଶ ହେଉଛନ୍ତି ମହନ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ । ମୋ'ର ଅନୁଜ, ତଥା ମଝିଆଁ ମାମୁଁଙ୍କର ଜ୍ୟେଷ୍ଠ ପୁତ୍ର । ଏକା ସାଙ୍ଗରେ ପାଠ ପଢୁଥିଲୁ । ମୁଁ ଗୋଟିଏ ଶ୍ରେଣୀ ଆଗରେ ଥିଲି । ପିଲା ଦିନର ସାଥୀ ମଧ୍ୟ । ଏହି ମଠରେ ଦୁଇଜଣ

ରହି ଖଣ୍ଡିତର ହାଇସ୍କୁଲରେ ପାଠ ପଢୁଥିଲୁ । ସେ ସମୟର ଯାହା ସବୁ କାର୍ଯ୍ୟ ଉଭୟେ ମିଳିମିଶି କରୁଥିଲୁ । ମଠ ଥିଲା ଆମର ବୈକୁଣ୍ଠ ସମାନ ଘର । ସମୟକ୍ରମେ ଫେରି ଆସିଥିଲି ସ୍ୱଗୃହକୁ । ସେ ଥିଲେ ସେଠାରେ । ବି. ଇଡ଼ି ପାଶ କରି ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ । ମୁଁ ମୋ' ଗ୍ରାମ ପାଖ ଏକ ମ:ଇ ବିଦ୍ୟାଳୟରେ ଶିକ୍ଷକ ଥିଲି । ମାମୁଁଙ୍କ ମୃତ୍ୟୁ ପରେ ସେ ମଠର ହେଲେ ମହନ୍ତ ମହାରାଜ, ସେ ଜଣେ ଶିକ୍ଷାବିତ୍ । ଜ୍ଞାନୀ, ଗୁଣୀ ବ୍ୟକ୍ତି । ସେ ମଠରେ ମଠାଧୀଶ ହୋଇ ବହୁତ କାର୍ଯ୍ୟ କରିଛନ୍ତି, ଯାହାକି ଅନ୍ୟ ମହନ୍ତଙ୍କ ଅପେକ୍ଷା ଢେର ଅଧିକ । ତାଙ୍କର ଅଦମ୍ୟ ଚେଷ୍ଟାକୁ ଭୁଲିବାର ନାହିଁ ।

ନିଷ୍ଠା ଓ ସାଧନା କେବେ ବ୍ୟର୍ଥ ହୁଏନାହିଁ କି ଦୃଢ ପ୍ରତିଜ୍ଞା ମନ ଲକ୍ଷ୍ୟ ପଥରୁ କେବେ ବିଚ୍ୟୁତ ହୁଏ ନାହିଁ । ଭଗବାନଙ୍କର.ଆଶୀଷ ତା'ଉପରେ ବର୍ଷଣ ହେଉ । ସମୟ ସ୍ରୋତରେ ଭାସିଯାଏ ପିଲା ଖେଳୁଥିବା କାଗଜ ନିର୍ମିତ ଡଙ୍ଗା । ବେଳେବେଳେ ସ୍ରୋତର ଅନୁକୂଳରେ ଯିବାବେଳେ ଅଟକିଯାଏ ବାଙ୍କ ସ୍ଥାନରେ, ଆଉ ଯାଇ ପାରେନା, ସେଇଠାରେ ହିଁ ରହିଯାଏ । ଯେତେବେଳେ ପ୍ରଖର ସ୍ରୋତ ଆସେ ସେ ଭାସିଯାଏ ସୁଅ ମୁହଁରେ ପତର ପରି । ସେତେବେଳେ ଭାସି ଭାସି ଯାଇ ଗଭୀର ନଦୀ ବା ସମୁଦ୍ରରେ ବିଲୀନ ହୋଇଯାଏ । ଭସାଇଥିବା ବ୍ୟକ୍ତିଟି ତାକୁ ଆଉ ପାଏ ନାହିଁ । ନିରାଶ ହୋଇ ଫେରିଆସେ ମନ ଦୁଃଖରେ । ସେ ହେଉଛି ସୁଦକ୍ଷ ବିନ୍ଧାଣୀ । ଶିଶିର ମହାରାଜ ଏହାକୁ ଜଗି ରହି ନଦୀରେ ବା ସମୁଦ୍ରରେ ବିଲୀନ ହେବାକୁ ଦେଇ ନାହାଁନ୍ତି । ପୁଣିଥରେ ତାକୁ କାର୍ଯ୍ୟରେ ଲଗାଇଛନ୍ତି । ପୁନରୁଦ୍ଧାର କାର୍ଯ୍ୟରେ ବ୍ରତୀ ଅଛନ୍ତି । ମଠର ମଠାଧିଶ ଭାବରେ ଭାଙ୍ଗି ରୁଜି ଯାଇଥିବା ମଠକୁ ନୂତନ ରୂପରେ ଗଢ଼ି ତୋଳିଛନ୍ତି । ପୂର୍ବ ପୁରୁଷମାନଙ୍କର ଆଶୀର୍ବାଦ ବଳରେ ତାହା ନୂତନ ହୋଇ ଉଠିଛି । ସମସ୍ତ ସ୍ମୃତିକୁ ରକ୍ଷାକରି କୃତକାର୍ଯ୍ୟ ହୋଇଛନ୍ତି । ରାମକୃଷ୍ଣଙ୍କ ଆଶୀର୍ବାଦରେ ଯେପରି ସ୍ୱାମୀ ବିବେକାନନ୍ଦ ସଫଳକାମୀ ହେବାପରି ସେ ସଫଳ ହୋଇଛନ୍ତି । ଶ୍ରୀ ଶ୍ରୀ ମଦନ ମୋହନ ଜୀଉଙ୍କର ସେବା ପୂଜାରେ ନିଜକୁ ଉତ୍ସର୍ଗ କରିଛନ୍ତି । ସମର୍ପଣ ସାଧନାରେ ସେ ନିଶ୍ଚୟ କୃତକାର୍ଯ୍ୟ ହାସଲ କରିଛନ୍ତି । ଯେତେବେଳେ ଅସୁବିଧାରେ ସମ୍ମୁଖୀନ ହୋଇଛନ୍ତି ବାସୁଦେବଙ୍କ ଭଳି କହିଛନ୍ତି "ତୋତେ ହିଁ ତୁହି ରକ୍ଷା କର, ମୁଁ ଛାର ମାନବ ମାତର" । ଏହା କମ୍ ସାଧନା ନୁହେଁ, ସେହି ମଦନ ମୋହନ ଜୀଉଙ୍କ ଶ୍ରୀପାଦ ପଦ୍ମରେ ନିଜକୁ ସମର୍ପଣ କରି ଚାଲିଛନ୍ତି ।

କେବଳ ମଠ ନୁହେଁ ଏ ଗ୍ରାମର ତଥା ଏ ଅଞ୍ଚଳର ମା' ଜଗତ୍‌ଜନନୀ

ଘାଟମଙ୍ଗଳା ମନ୍ଦିର ନୂତନ ଅଭିନବ ରୂପରେ ସଜାଇଛନ୍ତି । ସେ ପୀଠ ବର୍ତ୍ତମାନ ଏକ ଦର୍ଶନୀୟ ସ୍ଥାନ ଭଳି ଦୃଶ୍ୟମାନ ହୁଏ । ସେହିପରି ମଠବାଡ଼ିରେ ଥିବା ବାବା ଯଜ୍ଞେଶ୍ୱର ମନ୍ଦିର ପୋତି ହୋଇଥିବା କାର୍ଯ୍ୟକୁ ପୁନଃ ଉଦ୍ଧାର କରିଛନ୍ତି । ତାହା ଏକ ସୁନ୍ଦର ମନ୍ଦିର ହୋଇଛି । ପ୍ରତିଷ୍ଠା ହୋଇ ନାହାଁନ୍ତି । ନିକଟରେ ସେ କାର୍ଯ୍ୟ ଶେଷ ହେବ । ପ୍ରଭୁ ମଦନ ମୋହନ, ମା' ଘାଟମଂଗଳା ବାବା, ଯଜ୍ଞେଶ୍ୱର ନିକଟରେ ପ୍ରାର୍ଥନା ମହନ୍ତ ମହାରାଜଙ୍କୁ ଦୀର୍ଘାୟୁ କରନ୍ତୁ । ଯେପରି ଅନ୍ୟାନ୍ୟ କାର୍ଯ୍ୟ ଯାହା ଅପୂର୍ଣ୍ଣାଙ୍ଗ ରହିଛି ତାହା ପୂର୍ଣ୍ଣ ହେଉ ।

ପରିଶେଷରେ ଯେଉଁ ପୁସ୍ତକଟି ରଚନା କରିଛନ୍ତି ତାହା ମୁଁ ପାଠ କରି ଅପାର ଆନନ୍ଦ ଲାଭ କରିଛି । ଏତେଗୁଡ଼ିଏ ସ୍ମୃତିକୁ ସେ ସବୁ ମନେରଖି ଯାହା ଲେଖିଛନ୍ତି ତାହା ଧନ୍ୟବାଦର ପାତ୍ର । ଏଥିପାଇଁ ତାଙ୍କର ଧୈର୍ଯ୍ୟ, ସାହସ, ଉତ୍ସାହ, ସର୍ବଦା ଥାଉ । ସେ ଯେପରି ପୁନଃ ପୁନଃ ସବୁ କାର୍ଯ୍ୟରେ ସଫଳକାମୀ ହୁଅନ୍ତୁ । ମୋର ଏ ମଠ, ମା' ଘାଟମଂଗଳା, ବାବା ଯଜ୍ଞେଶ୍ୱରଙ୍କ ନିକଟରେ ବାରମ୍ବାର ପ୍ରଣାମ । ଏ ବଂଶ, ଏ ଗ୍ରାମ ସହିତ ମୋର ଚିର ସଂପର୍କ ରହିଆସିଛି ଯାହା ସର୍ବଦା ଥାଉ । ଏ ପାଣି ପବନରେ ମୋ' ଶରୀର ଗଠିତ । ଭୁଲିବାର ନାହିଁ । କର୍ପୂର ଯାଇଛି, କନା ପଡ଼ି ରହିଛି । ମୋର କିଛି କଥା, କିଛି ବ୍ୟଥା ପ୍ରଦାନ କରି କଲମକୁ ବିରାମ ନେଇ ପୂର୍ଣ୍ଣଚ୍ଛେଦ ଟାଣି ମନରେ ଥିବା ପଂକ୍ତିଟି ଉଦ୍ଧାର କରୁଅଛି ।

**"କର୍ପୂର ଯାଇଛି ପଡ଼ିଅଛି କନା କି କହିବା ଆମକଥା**
**ହୃଦୟର ଜ୍ୱାଳା ହୃଦୟ ଜାଣଇ ମନ ଜାଣେ ମନବ୍ୟାଥା ।"**

**ଅବସର ପ୍ରାପ୍ତ ଅନୁଶିକ୍ଷା ଅଧିକାରୀ**
**ବାସୁଦେବପୁର, ଭଦ୍ରକ**



# ସଂସ୍କୃତି ବାହକ ମଠ ଓ ମନ୍ଦିର

ଶ୍ରୀ ସୁନନ୍ଦ କୁମାର ରାଉତ



"ଭାରତସ୍ୟ ପ୍ରତିଷ୍ଠେ ଦ୍ୱେ ସଂସ୍କୃତଂ ସଂସ୍କୃତିସ୍ତଥା ।"

ଏହି ମହନୀୟ ସୂକ୍ତି ଅନୁସାରେ ଭାରତବର୍ଷର ପ୍ରତିଷ୍ଠାରେ ସଂସ୍କୃତିର ମହନୀୟ ଭୂମିକା ରହି ଆସିଛି । ଏହି ଧର୍ମ ଓ ସଂସ୍କୃତିର ବାହକ ଭାବରେ କେଉଁ ଆବାହମାନ କାଳରୁ ଭାରତ ବର୍ଷରେ ଗଢ଼ି ଉଠିଥିବା ମଠ ଓ ମନ୍ଦିର ନିରନ୍ତର ଭାବେ ନିଜକୁ ସମର୍ପିତ କରିଛନ୍ତି । ଏହି ମହନୀୟ ବ୍ରତରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବା ମଠଗୁଡ଼ିକ ମଧ୍ୟରୁ ମଦନମୋହନଜୀଉ ମଠ ଅନ୍ୟତମ । ପୁଣ୍ୟତୋୟା ଖରସ୍ରୋତା ନଦୀକୂଳରେ କେଉଁ କାଳରୁ ଗଢ଼ିଉଠିଥିଲା ଏହି ସଦାବର୍ତ୍ତ ମଠ । ଅତୀତର ଶିକ୍ଷା ଓ ସାମାଜିକ ଚେତନାର ବିକାଶରେ ବିଶେଷ ଭୂମିକା ନିର୍ବାହ କରୁଥିଲା ମଠ ଓ ମନ୍ଦିର । ଉକ୍ତ ସଦାବ୍ରତ ମଠ କେଉଟନଗାଁ ରାଜସ୍ୱ ଗ୍ରାମରେ ଅବସ୍ଥିତ ଥିଲେ ମଧ୍ୟ ଲୋକମୁଖରେ ଖଣ୍ଡିତରଠାରେ ବୋଲି ସମସ୍ତେ ଜାଣନ୍ତି । ଯେତେବେଳେ ଗମନାଗମନ ପଥ ଏତେ ସୁଗମ ନ ଥିଲା, ଏହି ମଠ ଥିଲା ଯାତ୍ରୀ, ଅତିଥି ଓ ଅଭ୍ୟାଗତମାନଙ୍କର ଆଶ୍ରୟସ୍ଥଳ । ମଠର ମହନ୍ତମାନେ ଥିଲେ ଦେବୋପମ ।

ମୋ' ଜାଣିବାରେ ଖଣ୍ଡିତର ଓ ଏହାର ଆଖପାଖ ଅଞ୍ଚଳରେ ଶିକ୍ଷାର ପ୍ରସାର ଦିଗରେ ତତ୍‌କାଳୀନ ମହନ୍ତ ନବକିଶୋର ଭାରତୀ ଗୋସ୍ୱାମୀଙ୍କର ଭୂମିକା ଉଲ୍ଲେଖଯୋଗ୍ୟ । ଖଣ୍ଡିତର ଉଚ୍ଚ ଇଂରାଜୀ ବିଦ୍ୟାଳୟ, ଯାହା ବର୍ତ୍ତମାନ ଖଣ୍ଡିତର ସରକାରୀ ଉଚ୍ଚ ବିଦ୍ୟାଳୟ ନାମରେ ପରିଚିତ ତାହା ଥିଲା ତାଙ୍କ ହାତଗଢ଼ା ଅନୁଷ୍ଠାନ । ମୁଁ ସେହି ବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ତାଙ୍କୁ ଦୂରରୁ ଦେଖିଛି । ବିଶାଳ ବପୁ ବୟସର ଅପରାହ୍ନରେ ବି ତାଙ୍କ ଶରୀରର ତେଜ ଓ ଭାଷାର ସ୍ୱଚ୍ଛତା ତାଙ୍କୁ ଏକ ନିଆରା ପରିଚୟ ପ୍ରଦାନ କରିଥିଲା । ତାଙ୍କ ସମୟରେ ଯେଉଁମାନେ ଉକ୍ତ ବିଦ୍ୟାଳୟର ଶିକ୍ଷକ ଓ କର୍ମଚାରୀ ଥିଲେ ତାଙ୍କଠାରୁ ମୁଁ ଶ୍ରୀଯୁକ୍ତ ଭାରତୀଙ୍କ ସମ୍ବନ୍ଧରେ ଅନେକ କଥା ଶୁଣିଛି । ସେ ସମୟରେ ଅବୈତନିକ ଭାବେ କାର୍ଯ୍ୟ କରୁଥିବା କର୍ମଚାରୀଙ୍କର

ସେ ଥିଲେ ସୁଖ ଦୁଃଖର ବନ୍ଧୁ । ମଠର ସମସ୍ତ ଧାର୍ମିକ ଓ ପାରମ୍ପରିକ କାର୍ଯ୍ୟରେ ଯୋଗଦିଅନ୍ତି ଏ ବିଦ୍ୟାଳୟର କର୍ମଚାରୀମାନେ । ମୋଟ ଉପରେ କହିବାକୁ ଗଲେ ଏକ ମହତ ଉଦ୍ଦେଶ୍ୟ ନେଇ ସେ ଗଢ଼ିଥିବା ଶିକ୍ଷାନୁଷ୍ଠାନ ଆଜି ମହାଦ୍ରୁମରେ ପରିଣତ ହୋଇଛି ।

ଧର୍ମୀୟ ଚେତନାର ଉନ୍ମେଷ ଖଣ୍ଡିତରର ମା' ଘାଟମଙ୍ଗଳା, ଦୋଳଯାତ୍ରା । ଠିକ୍ ଭାବେ ମୁଁ କହିପାରୁନି ଏ ଦୋଳଯାତ୍ରାର ଆରମ୍ଭ କେବେ । କିନ୍ତୁ ମଦନମୋହନଜୀଉ ହେଉଛନ୍ତି ଏ ଯାତ୍ରାର ଥାନପତି । ମଠାଧୀଶମାନଙ୍କର ଅକୁଣ୍ଠ ସାହାଯ୍ୟ ଓ ଗ୍ରାମବାସୀମାନଙ୍କର ସହଯୋଗ ଆମ ଅଞ୍ଚଳରେ ଏକ ସୁଖ୍ୟାତ ଦୋଳ ଯାତ୍ରାର ପରିଚୟ ସୃଷ୍ଟି କରିଛି ଏହି ମେଳଣ ।

ମଠ ପ୍ରତ୍ୟେକ ପର୍ବପର୍ବାଣି ପରମ୍ପରା କ୍ରମେ ପାଳିତ ହୁଏ । ବିଭିନ୍ନ ଗ୍ରାମର ଲୋକମାନଙ୍କର ଆସର ଜମେ ଏହିଠାରେ । ଲୋକାମନଙ୍କ ମଧ୍ୟରେ ସାମାଜିକ ସୁସଂପର୍କ ସ୍ଥାପନ କରିବାରେ ଉକ୍ତ ମଠର ଭୂମିକା ଅତ୍ୟନ୍ତ ଉଲ୍ଲେଖନୀୟ ।

ରାଜ ରାଜୁଡ଼ା ଶାସନ ତଥା ଇଂରେଜ ଶାସନ ସମୟରେ ଉକ୍ତ ମଠର ମଠାଧୀଶମାନେ ଅନେକ ଜମିଜମାର ମାଲିକଭାବେ ଜମିଦାରର ଦାୟିତ୍ୱ ନିର୍ବାହ କରିଥିଲେ । ପ୍ରଜାମାନଙ୍କୁ ସୁଶାସନ ପ୍ରଦାନ କରିବାରେ ଏମାନଙ୍କର ଅନେକ ଗୁରୁଦାୟିତ୍ୱ ଥିଲା । ନ୍ୟାୟ ନିଶାପ ବେଳେ ପାଞ୍ଚଖଣ୍ଡ ଗାଁ'ର ଲୋକେ ସହଯୋଗ ଲୋଡ଼ନ୍ତି ମହନ୍ତ ମହୋଦୟଙ୍କର । ସମସ୍ତଙ୍କୁ ସମଦୃଷ୍ଟିରେ ଦେଖି ଉଚିତ ନ୍ୟାୟ ଓ ମାର୍ଗଦର୍ଶନ କରିବାରେ ଏହି ଅଞ୍ଚଳର ମହନ୍ତମାନେ ଥିଲେ ସିଦ୍ଧହସ୍ତ । ସେଥିପାଇଁ ତାଙ୍କ ନିକଟରେ ସାଧାରଣ ଜନତାଙ୍କ ମସ୍ତକ ଶ୍ରଦ୍ଧାଭକ୍ତିରେ ନଇଁ ଯାଉଥିଲା । ସମୟକ୍ରମେ ସାମାଜିକ ଓ ରାଜନୈତିକ ପୃଷ୍ଠଭୂମିରେ ଉକ୍ତ ମଠର ଗୁରୁତ୍ୱ କିଞ୍ଚିତ କମିଯାଇଥିଲେ ମଧ୍ୟ, ପ୍ରଭୁ ମଦନମୋହନଜୀଉଙ୍କ ଅପାର କରୁଣାରୁ ଖଣ୍ଡିତରବାସୀଙ୍କର ବୌଦ୍ଧିକ, ଆଧ୍ୟାତ୍ମିକ, ଧର୍ମୀୟ, ସାଂସ୍କୃତିକ, ଶୈକ୍ଷିକ, ସାମାଜିକ ବିକାଶର ଧାରା ଯେ ଆଗକୁ ଆଗକୁ ମାଡ଼ି ଚାଲିଛି, ଏହା ନିଃସନ୍ଦେହରେ କୁହାଯାଇପାରେ ।

**ପ୍ରଧାନ ଶିକ୍ଷକ**
**ଖଣ୍ଡିତର ସରକାରୀ ଉଚ୍ଚ ବିଦ୍ୟାଳୟ**
**ଖଣ୍ଡିତର, ଯାଜପୁର**



# ସମୟର ବଳୟରେ ଖଣ୍ଡିତର ମଠ

*ଶ୍ରୀ ରାମଚନ୍ଦ୍ର ମିଶ୍ର*

ତରୀଦ୍ୱାରା ଯାତ୍ରୀମାନେ ଏହି ଘାଟରେ ପାରି ହୋଇ ଶ୍ରୀକ୍ଷେତ୍ରକୁ ଯାତ୍ରା କରୁଥିଲେ । ସନ୍ନ୍ୟାସୀ ପ୍ରତିଦିନ ଉକ୍ତ ନଦୀକୁ ସ୍ନାନ ତର୍ପଣ କରିବାକୁ ଯାଆନ୍ତି । ଦିନକର ଘଟଣା, ସେଦିନ ସ୍ନାନ ସମୟରେ ସୂର୍ଯ୍ୟାର୍ଘ ପ୍ରଦାନ କରୁଥିବା ବେଳେ ଗୋଟିଏ ତୀର ନଦୀକୂଳରେ ପୋତିହୋଇ ଆର୍ଦ୍ଧାଂଶ ଉପରକୁ ରହିବାର ଦେଖିଲେ । ସନ୍ନ୍ୟାସୀଙ୍କର ହୃଦ୍‌ବୋଧ ହେଲା, ବୋଧେ ହୁଏ କୌଣସି ଶିକାରୀ ଲକ୍ଷ୍ୟଭ୍ରଷ୍ଟ, ତୀରଟି କାଳକ୍ରମେ ବଣରୁ ବନ୍ୟାରେ ଭାସି ଆସି କୂଳରେ ପୋତି ହୋଇ ଯାଇଛି । ସନ୍ନ୍ୟାସୀ ଏହି ୨ ଖଣ୍ଡ ବାକ୍ୟକୁ ବିଶ୍ଳେଷଣ କରି ନୂଆ ଶବ୍ଦଟିଏ ସଂଯୋଜନା କରି ନାମ ରଖିଥିଲେ ଖଣ୍ଡିତର । ପରେ ଖରସୁଆ ନଦୀ କାୟା ବିସ୍ତାର କରି ଖଣ୍ଡିତର ଘାଟ ହେଲା । ଏହି ନଦୀ ସନ୍ନିକଟସ୍ଥ ଏକ ଫଳଫୁଲ ଭରା ବୃକ୍ଷଲତା ମଧ୍ୟରେ 'ଖଣ୍ଡିତର ମଠ' ପ୍ରତିଷ୍ଠିତ ହେଲା ୧୬୦୦ ଶତାବ୍ଦୀର ଶେଷ ଭାଗରେ ।

ବର୍ତ୍ତମାନ ମଠାଧୀଶ ଶିଶିର କୁମାର ଭାରତୀଙ୍କ ବୟାନାନୁଯାୟୀ ୯ଜଣ ମଠାଧୀଶ ସମାଧିସ୍ଥ ହେଲେଣି । ମାତ୍ର ଗୋଟିଏ କଥା ଅଜଣା ରହିଯାଇଛି । ସଦାଶିବ ମହାରାଜ ମଠର ପ୍ରଥମ ପ୍ରତିଷ୍ଠାତା ତାଙ୍କୁ ଆଣିଲେ କିଏ ? କେବେ ? କେଉଁଠାରୁ ? ଆଉ ସଦାବର୍ତ୍ତ ମଠର ନାମକରଣ କିଏ କରିଥିଲେ ? ସେ ଯାହା ହେଉ ଆଲୋଚନା ଆଗକୁ ନେବା ।

ସର୍ବ ପ୍ରଥମ ପ୍ରତିଷ୍ଠାତା ଶ୍ରୀ ସଦାଶିବ ମହାରାଜ । ସେ ଖ୍ରୀ. ୧୬୦୦ରେ ମଠରେ ଆସୀନ ହେଲେ । ସେ ଅଗ୍ରପୂଜ୍ୟ ମହାରାଜ । ତାଙ୍କ ପାଇଁ ସ୍ୱତନ୍ତ୍ର ସମାଧିପୀଠ ରହିଛି । ତାଙ୍କର ସେବାପୂଜା ନୀତି ନିୟୋଗ ପାଇଁ ସ୍ୱଗୋପନୀୟ ସେବକ ନିଯୁକ୍ତ କରାଯାଇଛି । ଉକ୍ତ ସେବାକାରୀଙ୍କୁ 'ଅଧିକାରୀ' ଆଖ୍ୟା ଦିଆଯାଇଛି । ସେ ହେଉଛନ୍ତି ମଠର ନିରାପତ୍ତାକାରୀ ତଥା ଭଣ୍ଡାର ରକ୍ଷକ । ମହନ୍ତ ମହାରାଜଙ୍କର ପ୍ରତିନିଧି ସ୍ୱରୂପ । ତାଙ୍କରି ନିର୍ଦ୍ଦେଶନାରେ ମହନ୍ତମାନଙ୍କ ଅନୁପସ୍ଥିତିରେ ମଠର ପୂଜା ପାର୍ବଣ ପାଳିତ ହୁଏ ।

ଦ୍ୱିତୀୟ ଆସିଲେ ମହନ୍ତ ଗରିବ ଭାରତୀ, ତୃତୀୟରେ ଦେଓ ଭାରତୀ । ଏମାନଙ୍କ ଅମଳରେ ମଧ୍ୟ ମଠରେ କୌଣସି ଦେବଦେବୀ ନଥିଲେ । କେବଳ ସନ୍ନ୍ୟାସ ଧର୍ମ ପାଳନ କରି କାଳକ୍ରମରେ ଚାଲିଗଲେ ।

ପୁରୁଷୋତ୍ତମ ମହାରାଜ ମଠରେ ୪ର୍ଥ ସ୍ଥାନ ମଠାଧୀଶ ଭାବରେ ରହିଥିଲେ । ସେତେବେଳ ପର୍ଯ୍ୟନ୍ତ ମଠରେ କୌଣସି ବିଗ୍ରହ ନଥିଲେ । ଉକ୍ତ ସମୟରେ ଓଡ଼ିଶାରେ ବୈଷ୍ଣବ ଧର୍ମ ପ୍ରଚଳିତ ଥିବାରୁ ବଙ୍ଗୀୟମାନେ ପୁରୀରେ ମଠ ପ୍ରତିଷ୍ଠା କରି ବିଷ୍ଣୁ ପ୍ରତିମାର ପୂଜା ସମ୍ଭାର ବୃଦ୍ଧି କରିଥିଲେ । ଏହି ସମୟରେ ପୁରୁଷୋତ୍ତମ ମହାରାଜ ଷଡ଼ଭୁଜ ଗୌରାଙ୍ଗ ମୂର୍ତ୍ତି ଆଣି ମଠରେ ପ୍ରତିଷ୍ଠା କରିଥିଲେ । ପୁରୁଷୋତ୍ତମ ଭାରତୀ ହିଁ କଣ୍ଟାବଣ ସଫାକରି ଷଡ଼ଗୋତ୍ରୀ ବ୍ରାହ୍ମଣଙ୍କୁ ନିଷ୍କାର ଭାବେ ଘରବାଡ଼ି ଯୋଗାଇ କଣ୍ଟିଆକୂଳ ଶାସନ ବସାଇ ସୁନାମ ଅର୍ଜନ କରିଯାଇଛନ୍ତି ।

୬ଷ୍ଠ ପିଢ଼ି ମହନ୍ତ ଆସିଲେ ବୃନ୍ଦାବନ ଭାରତୀ ଓ ୭ମ ଲୋକନାଥ ଭାରତୀ । ଏହି ଦୁଇ ମହନ୍ତଙ୍କ କାର୍ଯ୍ୟକାଳ ମଧ୍ୟରେ ମଠରେ କୌଣସି ଭୋଜି ଭାତ ହେବା, ବ୍ରାହ୍ମଣମାନେ ମଠରେ ଅନ୍ନ ଭୋଜନ କରିବା ଶାସ୍ତ୍ର ବିରୁଦ୍ଧ ବୋଲି ବ୍ରାହ୍ମଣ ମଣ୍ଡଳୀର ନିର୍ଦ୍ଦେଶ ମତେ ମଠର ଚଳନ୍ତି ରାଧାକୃଷ୍ଣ ବିଗ୍ରହ ପ୍ରତିଷ୍ଠା କରି ବ୍ରାହ୍ମଣମାନଙ୍କୁ ଭୋଜନ କରାଇଥିବାର ଉଲ୍ଲେଖ ରହିଛି । ମହନ୍ତ ବୃନ୍ଦାବନ ଭାରତୀଙ୍କ ଗୁରୁ ହରିହର ଭାରତୀଙ୍କଠାରୁ କିଛି ସୂଚନା ପାଇ ମଠର ସେବାପୂଜା ସକାଶେ କେତେ କୁଳୀନ ଧର୍ମ ଅବଲମ୍ବନ କରୁଥିବା ବ୍ୟକ୍ତିଙ୍କୁ ବିଭିନ୍ନ କାର୍ଯ୍ୟ କରିବା ପାଇଁ ସେବାକାରୀ ଭାବେ ଜାଗିରୀସୂତ୍ରେ କିଛି ଘରବାଡ଼ି ଯୋଗାଇ ଦେଇଥିଲେ । କିନ୍ତୁ ଉକ୍ତ ଜମିର, ରାଜସ୍ୱ ମହନ୍ତମାନେ ବହନ କରୁଥିଲେ । ସେବାକାରୀମାନେ ହେଲେ- ମଠର ସବୁ ଦେବାଦେବୀଙ୍କ ପୂଜକ, ପୁରୋହିତ, ବ୍ରହ୍ମା, ବାରିକ, ମାଳୀ, କୁମ୍ଭାର, ରଜକ, କମାର, ଟହଲିଆ ଇତ୍ୟାଦି ।

ମହନ୍ତ ବୃନ୍ଦାବନ, ମହନ୍ତ ଲୋକନାଥଙ୍କ କାର୍ଯ୍ୟକାଳ ପର୍ଯ୍ୟନ୍ତ ମଠର ପୂଜା ପାର୍ବଣ, ସେବାଧର୍ମ ଠିକ୍ ଭାବେ ଚାଲିଥିଲା । ଏହାପରେ ଆସିଲେ ମହନ୍ତ କୃଷ୍ଣଚନ୍ଦ୍ର ଭାରତୀ । ସେ ଜଣେ ବିଳାସ ପ୍ରିୟ ଏବଂ ଉତ୍ତମ ଅଶ୍ୱାରୋହୀ । ଗୋଟିଏ ଅଶ୍ୱ ସହିତ ସଇସ ରଖିଥିଲେ ଏବଂ ଗାନ୍ଧର୍ବ ବିଦ୍ୟାରେ ନିପୁଣ ବ୍ୟକ୍ତି । ଦେହରେ ତାଙ୍କର ୨୦/ ୩୦ ଭରୀର ଅଳଙ୍କାର । କାନରେ ଟିକ ଲାଖିଥିବା କୁଣ୍ଡଳ, ମଣିବନ୍ଧରେ କଙ୍କଣ, ୮ ଅଙ୍ଗୁରୀୟ ବେକରେ ସୁନାର ତାବିଜ, ସର୍ବଦା ରକ୍ତ ପାଟବସ୍ତ୍ର ପରିଧାନ, ମୁଣ୍ଡରେ ପଗଡ଼ୀ, ଗୋଡ଼ରେ କଠଉ ପରିଧାନ କରି ପ୍ରତ୍ୟେହ ଘୋଡ଼ା ଉପରେ ବସି ଖଣ୍ଡିତର ସାରା ଭ୍ରମଣ କରିବା ତାଙ୍କର ନିତିଦିନିଆ ଅଭ୍ୟାସ ଥିଲା । ତା' ବ୍ୟତୀତ ଭାରି ପଶା ନିଶାପାଣିରେ ରହି ପ୍ରଜାଙ୍କ କଥା ଓ ମଠ କଥା ଭୁଲି ଯାଇଥିଲେ । ତାଙ୍କ ଶାସନକୁ ପ୍ରଜା ପସନ୍ଦ କରୁନଥିଲେ । ଏହିପରି କିଛି ଦିନ ଶାସନ କରିବା ପରେ ଅଚାନକ କେଉଁଆଡ଼େ ଚାଲିଗଲେ । କିନ୍ତୁ ସେତେବେଳକୁ ମଠ ଦେବାଳିଆ ଅବସ୍ଥାକୁ ଆସି ଯାଇଥିଲା ।

ମହାରାଜ କୃଷ୍ଣଚନ୍ଦ୍ରଙ୍କ ପରେ ତାଙ୍କର ପଟ୍ଟଶିଷ୍ୟ ଶ୍ରୀ ନବ କିଶୋର ଭାରତୀ ହେଲେ ମଠର ମହନ୍ତ । ସେ ଥିଲେ ଜଣେ ସରଳ ବ୍ୟକ୍ତି ଏବଂ ଜଣେ ସଙ୍ଗୀତଜ୍ଞ । କଟକ ବେତାର କେନ୍ଦ୍ରର ଆଗ ଧାଡ଼ିର ଜଣେ କଣ୍ଠଶିଳ୍ପୀ । ତା' ବ୍ୟତୀତ ତାଙ୍କର ଚମତ୍କାର ମନଛୁଆଁ କଣ୍ଠ His Master ଗ୍ରାମ୍ ଫୋନ୍‌ରେ ଅନେକ ଭଜନ ଜଣାଣରେ କଣ୍ଠଦାନ କରି ସୁନାମ ଅର୍ଜନ କରିଥିଲେ । ଗୁରୁ କୃଷ୍ଣଚନ୍ଦ୍ରଙ୍କଠାରୁ ଗାନ୍ଧର୍ବ ବିଦ୍ୟା ଶିକ୍ଷାଲାଭ କରିଥିଲେ । ତାଙ୍କ ଶାସନ କାଳରେ ପ୍ରଥମ କରି ଗୋଟିଏ ରାହାସ ପାର୍ଟି କରି ପ୍ରଶଂସିତ ହୋଇଥିଲେ । ସରସ୍ୱତୀ ପୂଜା ତାଙ୍କରି ଅମଳରୁ ଆରମ୍ଭ ହୋଇଥିଲା । ଏହି ପୂଜା ଉପଲକ୍ଷେ ଜନରଂଜନ ପାଇଁ ଅନେକ ସାମାଜିକ ନାଟକ ଥିଏଟର୍ସ ଆକାରରେ ପ୍ରଦର୍ଶନ କରି ଜନ ସମାଜକୁ ଆନନ୍ଦିତ କରୁଥିଲେ । ତାଙ୍କର ଆଚାର ବ୍ୟବହାର ଅତି ସରଳ । ଧଳା ଧୋତି ଚାଦର ଦେହରେ ଖଣ୍ଡେ ଫତୁଆ, ଏହା ଥିଲା ତାଙ୍କର ପରିଧାନ । କେବେ କେମିତି ବାହାରକୁ ଗଲେ, ପୂରା ପଞ୍ଜାବୀଟିଏ ପିନ୍ଧନ୍ତି । ଦେବତା ବ୍ରାହ୍ମଣମାନଙ୍କୁ ଭୟ ଓ ଭକ୍ତି କରନ୍ତି । ତାଙ୍କ ଗୁରୁ କୃଷ୍ଣଚନ୍ଦ୍ର ଭାରତୀଙ୍କ ସୌଖୀନ ଶାସନ ଫଳରେ ମଠ ସଂପତ୍ତିକୁ ଅନେକଙ୍କୁ ବିକ୍ରି କରି ମଉଜ ମଜଲିସ୍‌ରେ ଖର୍ଚ୍ଚ କରି ଚାଲିଗଲେ ସିନା, ହେଲେ ମଠ ତହବିଲରେ ଗାଣ୍ଠିଆ ଖାଲି । ତଥାପି ମଠର ଦୈନିକ ନୀତିକାନ୍ତିରେ ଅସୁବିଧା କରି ନଥିଲେ । ନବକିଶୋର ମହନ୍ତଙ୍କ ପରଂପରାଦି ଅନୁଯାୟୀ ଯାବତୀୟ ପର୍ବପର୍ବାଣି ପାଳନ କରିବାରେ, ଯଥାପୂର୍ବରୁ ସେ ଖୁବ୍ ସାବଧାନରେ ପ୍ରସ୍ତୁତ ଥାଆନ୍ତି । ବିଶେଷତଃ ମଠର ଝୁଲଣ ଯାତ୍ରା ବହୁ ଆଡ଼ମ୍ବରେ ପାଳନ କରାଯାଉଥିଲା । ମହନ୍ତଙ୍କ ନିଜ ରଚିତ କେତେଗୋଟି ଝୁଲଣ ସଂଗୀତ ଆଜି ବି ସଂକୀର୍ତ୍ତନ ପ୍ରେମିକ ମଧ୍ୟରେ ଗୋଟେ ଉଦଣ୍ଡ ସୃଷ୍ଟି ହୋଇଯାଏ । ନିଜ ରଚିତ ସଂଗୀତକୁ ସେ ଗାନ କରୁଥିବାବେଳେ ଶ୍ରୋତାମାନେ ଆତ୍ମହରା ହୋଇ ତାଳ ମିଳାଇ ଗାଇବାରେ ମଠ ପ୍ରାଙ୍ଗଣ କମ୍ପିତ ହୋଇଉଠେ । ତାଙ୍କ ପାଇଁ ଖଣ୍ଡିତର ମେଲଣ ଖ୍ୟାତି ଅର୍ଜ୍ଜନ କରିଥିଲା । ମେଲଣରେ ଆଜି ସେ ଦିନର ଶୋଭା ନାହିଁ । ମହନ୍ତ ନବକିଶୋରଙ୍କ ଉଦ୍ୟମରେ ଖଣ୍ଡିତର ପୋଷ୍ଟ୍‌ଅଫିସ୍, ଖଣ୍ଡିତର ହାଇସ୍କୁଲ ତଥା ଜଳସରପୁର ରାଧା ଗୋବିନ୍ଦ ଉ:ପ୍ରା: ସ୍କୁଲ ପୁନଃ ନିର୍ମାଣ ହୋଇଥିବା କାର୍ଯ୍ୟ ବିଶେଷ ଉଲ୍ଲେଖଯୋଗ୍ୟ । ଖଣ୍ଡିତର ମେଲଣ ସୁଖ୍ୟାତି ତାଙ୍କରି ଉଦ୍ୟମ, ଯାହା ଆଜି ମଳିନ ।

ସମୟ ବଡ଼ ବଳବାନ । ସେ ମହନ୍ତ ଥିବାବେଳେ ଗଣତନ୍ତ୍ର ଶାସନର ବିଧି ଅନୁଯାୟୀ ୧୯୪୮ ମସିହାରେ ସରକାର ନୂଆ ଜମି ଆଇନ ପ୍ରଣୟନ କରି ରାଜା ମହାରାଜା, ମଠ ମନ୍ଦିର ହାତ଼ରେ ଥିବା ସଂପତ୍ତିକୁ ନିଜ ହାତକୁ ନେଇଗଲେ । ଫଳରେ ଏହି ଆଇନ ରାଜା ମହାରାଜାଙ୍କୁ କ୍ଷତିପୂରଣ ବାବଦରେ ଭତ୍ତା ଦେଇ ବିଦା

କରାଗଲା । ମାତ୍ର ମନ୍ଦିର ମାଲିକମାନେ ହଇରାଣ ହେଲେ । ଜାଗିରୀ ଦତ୍ତ ଜମିଜମା ହରାଇ, ସେବାକାରୀମାନେ ମଠ ଆଡ଼ରୁ ମୁହଁ ବୁଲାଇଲେ । ଯେଉଁ ଘରବାଡ଼ିରେ ବସବାସ କରୁଥିଲେ ତାହା, ନଦୀ ଗର୍ଭରେ ଲୀନ ହେଲା । କିଛି ବାଲିଚର ହେଲା ମଧ୍ୟ । ଜାଗିରଦାରମାନେ ସେବାପୂଜା ବନ୍ଦ କରିଦେଲେ । ଦୂରରେ ଥିବା ଜମିବାଡ଼ିରୁ ଫସଲ ମିଳିଲା ନାହିଁ । କାଳକ୍ରମେ ମଠର ପର୍ବପର୍ବାଣି ବାଦ ହୋଇଗଲା । ତଥାପି ସେ ବଞ୍ଚିଥିବା ପର୍ଯ୍ୟନ୍ତ ଏହିପରି ପର୍ବପର୍ବାଣିକୁ ଯଥା ସମ୍ଭବ ପାଳନ କରୁଥିଲେ । ବିଶେଷ ଅସହାୟ ଅବସ୍ଥାରେ ପଡ଼ି ସେ ମଦନମୋହନଙ୍କୁ ଡାକି କହନ୍ତି-

"ହେ ପ୍ରଭୁ, ନିଜକୁ ନିଜେ ରକ୍ଷାକର ।
ମୁଁ ଛାର ମନୁଷ୍ୟ ମାତର ॥"

ମହନ୍ତ ନବକିଶୋର ଭାରତୀଙ୍କ ପରେ ତାଙ୍କର ଶିଷ୍ୟ ଶିଶିର୍ କୁମାର ଭାରତୀ ମଠର ଉତ୍ତାରାଧିକାରୀ ଭାବେ ଦାୟିତ୍ୱ ଗ୍ରହଣ କରିଛନ୍ତି । ସେ ଜଣେ ଉଚ୍ଚଶିକ୍ଷିତ । ବିଭିନ୍ନ ହାଇସ୍କୁଲରେ ଶିକ୍ଷକତା କରି ଖଣ୍ଡିତର ହାଇସ୍କୁଲର ପ୍ରଧାନ ଶିକ୍ଷକ ପଦରୁ ଅବସର ନେଇ, ମଠ ମହନ୍ତ ହିସାବରେ କାର୍ଯ୍ୟରତ । ସେ ଜଣେ ଉତ୍ତମ ଲୋକ । ତାଙ୍କର ଚାଲିଚଳନ, ଆଚାର, ପବିତ୍ର ବ୍ୟବହାର ଲାଳିତ୍ୟ କଣ୍ଠରେ କଥାବାର୍ତ୍ତା ସମସ୍ତଙ୍କ ମନକୁ ଛୁଏଁ । ମଠର ଆର୍ଥିକ ଅବସ୍ଥାକୁ ନେଇ ବଡ଼ ଚିନ୍ତାରେ ଅଛନ୍ତି । ଠାକୁରଙ୍କ ସେବା ପାଇଁ ଆଉ ସେବାକାରୀମାନେ ଆସୁନାହାନ୍ତି । ସବୁ ପ୍ରକାର ଖର୍ଚ୍ଚ ତାଙ୍କ ନିଜକୁ ବହନ କରିବାକୁ ପଡୁଛି । ପେନ୍‌ସନ୍‌ରୁ ମାସିକ ୬ ହଜାର ଟଙ୍କା ଦରମାରେ ଜଣେ ମାତ୍ର ପୂଜକଙ୍କ ଦ୍ୱାରା ମଠର ସେବାପୂଜା ନୀତିକାନ୍ତି ଚାଲିଛି ।

ମଠର ସମସ୍ତ ଘର ଭାଙ୍ଗି ଯିବାପରେ, ମଠ ବାଡ଼ିରେ କିଛି ବଗିଚାକୁ ସଫାକରି, ଉକ୍ତ ଜମିରେ ଚାଷକରି, ଚାଷବାସରୁ ଆୟ ଏବଂ ନିଜ ପେନ୍‌ସନ୍‌ରୁ ଅର୍ଥ ଖଟାଇ ପ୍ରାୟ ୫ରୁ ୧୦ ଲକ୍ଷ ଟଙ୍କା ଖର୍ଚ୍ଚ ମଧ୍ୟରେ ମଠର ସୌନ୍ଦର୍ଯ୍ୟ ବର୍ଦ୍ଧନ କରିଛନ୍ତି । ଜଙ୍ଗଲଘେରା ଖଣ୍ଡିତର ମଠ ଆଜି ନୂଆରୂପ ନେଇଛି । ଯାହାକି ତାଙ୍କ ମହନ୍ତ କାଳରେ ଉଲ୍ଲେଖଯୋଗ୍ୟ । ଏହା ମଦନ ମୋହନ ପ୍ରେମୀଙ୍କୁ ଆନନ୍ଦ ଦେଉଛି । ବର୍ତ୍ତମାନ ପୂର୍ବତନ ମହନ୍ତମାନଙ୍କ ଦ୍ୱାରା ମଠାଧୀନ, ଘାଟମଂଗଳା, ଯଜ୍ଞେଶ୍ୱର ମନ୍ଦିର, ଜଞ୍ଜାଳୀ, ବ୍ରହ୍ମେଶ୍ୱର ମହାଦେବ ମନ୍ଦିରର ପୁନଃ ନିର୍ମାଣ ଯୁବକ ଏବଂ ଗ୍ରାମବାସୀ ତଥା ବଦାନ୍ୟ ବ୍ୟକ୍ତି ବିଶେଷଙ୍କ ଦାନାର୍ଥରେ ନୂଆରୂନପ ନେବାପାଇଁ ଯାଉଛି । ସେଥିମଧ୍ୟରୁ ମଙ୍ଗଳା ମନ୍ଦିର ସମ୍ମୁଖରେ ଯଜ୍ଞଶାଳା, ସରକାରଙ୍କ ଅନୁଦାନରେ ନିର୍ମିତ କଲ୍ୟାଣ ମଣ୍ଡପ, ଯାଜପୁରର ସର୍ବଭାରତୀୟ ସ୍ତରରେ କବାଡ଼ି ଖେଳପାଇଁ ନିର୍ମିତ ପ୍ରକାଣ୍ଡ ଗ୍ୟାଲେରୀ,

ରାସ୍ତାକଡ଼ରେ ଅଙ୍ଗନବାଡ଼ି କେନ୍ଦ୍ର, ସରସ୍ୱତୀ ଯୁବକ ସଂଘ ଥିବା ଏବଂ ଖଣ୍ଡିତର ପୋଷ୍ଟଅଫିସ ଅବସ୍ଥିତ । ମଙ୍ଗଳା ପଡ଼ିଆ ଆଦି ମନ ମୋହୁଛି । ଜଂଜାଳୀ ଦେବୀ ମନ୍ଦିରର ନୂତନ ରୂପରେଖ ଓ ପାର୍ଶ୍ୱଦେବତା ସ୍ଥାପନ ସ୍ଥାନୀୟ ଯୁବକମାନଙ୍କ ଉଦ୍ୟମ ବଳରେ ପ୍ରତିଷ୍ଠା ସରିଛି । ୩ୟରେ ମଠାଧୀନ ବ୍ରହ୍ମେଶ୍ୱର ମନ୍ଦିର ନୂତନ ଭାବେ ସଂପୂର୍ଣ୍ଣ ପରେ ବର୍ତ୍ତମାନ ମହାଦେବଙ୍କ ରୋଷଇ ଗୃହ ନିର୍ମାଣାଧୀନ । ଏହି ସବୁ ଅନୁଷ୍ଠାନରେ ଉନ୍ନତି ମଠ ପାଇଁ କ'ଣ ଶ୍ରେୟ ନୁହେଁ କି ? ଯେତେ ହେଲେ ଏସବୁ ଦେବଦେବୀ ପୀଠ ମଠର ନିଜସ୍ୱ । ମଠ ଧନ ନ ଦେଉ ପଛେ ଆମର ଉତ୍ତରପିଢ଼ି ନିଶ୍ଚୟ କହିବେ ଶିଶିର ଭାରତୀ ମହନ୍ତ ଥିବାବେଳେ ପିଲାମାନେ ଏହା କରିଛନ୍ତି । ଏହା କ'ଣ ଶିଶିର ଭାରତୀ 'ମଠାଧୀଶ'ଙ୍କୁ ଶ୍ରେୟ ଦେଉନାହିଁ କି ?

ଆମ୍ଭମାନଙ୍କର ପୂର୍ଣ୍ଣବିଶ୍ୱାସ ମଠ ମନ୍ଦିରକୁ ଜନପ୍ରିୟ ସରକାର ଚଳାଇବାକୁ ଜନମତକୁ ସମ୍ମାନ ଦେଇ ମଠାଧିଶ ଶିଶିର ଭାରତୀଙ୍କ ଆଲୋଚନା କରି ଖଣ୍ଡିତର ସଦାବର୍ତ୍ତ ମଠ ସୁନାମ ଅକ୍ଷୁଣ୍ଣ ରହେ । ନିଜ ଷଡ଼ଭୁଜା ମଦନମୋହନଙ୍କ ପୂଜାବିଧିରେ ଉପଯୁକ୍ତ ବିଚାର କରି ଏ ଅନୁଷ୍ଠାନକୁ ରକ୍ଷା କରିବେ ।

ଶେଷରେ ଖଣ୍ଡିତର ଗ୍ରାମବାସୀ ତଥା ମଦନମୋହନ ପ୍ରେମୀ ଭକ୍ତମାନେ ଅପେକ୍ଷାରେ ଅଛନ୍ତି 'ସମୟ ବଳୟରେ ଖଣ୍ଡିତର ମଠ'ର ଅବସ୍ଥା କେଉଁଆଡ଼କୁ ଗତି କରୁଛି ସମୟ କହିବ । ବ୍ୟକ୍ତିଗତ ଭାବେ ଅନୁରୋଧ, ଶାସ୍ତ୍ରାନୁସାରେ ଲେଖକ କହନ୍ତି:-

"କାମଧେନୁଃ ସହସ୍ରେ ସୁବତ୍ସା ଗଛନ୍ତି ମାତରଂ
ତଥା କୃତକର୍ମ କର୍ତ୍ତାର ମନୁଃ ଗଛନ୍ତି ॥"

॥ ଜୟ ଜଗନ୍ନାଥ ॥

ପ୍ରାକ୍ତନ ବ୍ରହ୍ମା, ଖଣ୍ଡିତର ମଠ



# ସନାତନ ଧର୍ମରେ ମଠ ସଂସ୍କୃତି

*ଡକ୍ଟର ଭାଗ୍ୟଧର ସାହୁ*

ସଭ୍ୟତାର ଉନ୍ମେଷ କାଳରୁ ଅଦ୍ୟାବଧି, ମଣିଷ ମନକୁ ନିୟନ୍ତ୍ରଣ କରିବାକୁ, ସମାଜରେ ଶାନ୍ତି, ଶୃଙ୍ଖଳା, ସହାବସ୍ଥାନ ବଜାୟ ରଖିବାକୁ, ଐଶ୍ୱରୀୟ ଚେତନା ଉଦ୍ରେକ ପୂର୍ବକ ଜୀବନକୁ ସ୍ୱଚ୍ଛ, ସରଳ ଓ ଉର୍ଦ୍ଧ୍ୱଗାମୀ କରିବାକୁ ଧର୍ମ ଏକ ମହୌଷଧିର ଭୂମିକା ନିଭାଇ ଆସିଚି । ବୈଦିକ ଯୁଗରୁ ଏ ପର୍ଯ୍ୟନ୍ତ ପ୍ରବହମାନ ଧାର୍ମିକ ଚେତନାରେ ଅବଗାହନ କରି ମାନବ ସାମାଜିକ ଭାରସାମ୍ୟ ରକ୍ଷା ପୂର୍ବକ ଧର୍ମ ଓ ବିଜ୍ଞାନ ମଧ୍ୟରେ ଏକ ଅପୂର୍ବ ସମନ୍ୱୟ ସ୍ଥାପନ କରି ବିଶ୍ୱ ପ୍ରଗତିର ସହାୟକ ହୋଇପାରିଛି । ନାସ୍ତିକ ବୋଲି ନିଜକୁ ଉଦ୍‌ଘୋଷିତ କରୁଥିବା ମଣିଷଟି, ଅବଚେତନ ମନରେ କେଉଁଠି ନା କେଉଁଠି ଈଶ୍ୱରୀୟ ସତ୍ତା ଅନୁଭବ କରିଛି ।

ଆର୍ଯ୍ୟଭୂମି ଭାରତ ଏକ ବୈଚିତ୍ର୍ୟମୟ ଧାର୍ମିକ ଚେତନାରେ ତରଙ୍ଗାୟିତ । ବୌଦ୍ଧ, ଜୈନ, ଶିଖ୍, ଇସଲାମ, ଖ୍ରୀଷ୍ଟଧର୍ମ ପରି ପ୍ରମୁଖ ସଂପ୍ରଦାୟ, ଭିନ୍ନ ମତାବଲମ୍ବୀ, ଭିନ୍ନ ବାହ୍ୟ ଆଚରଣ, ନୀତିନିୟମରେ ବନ୍ଧା ପଡ଼ିଥିଲେ ହେଁ ସଭିଁଙ୍କର ଲକ୍ଷ୍ୟ ଏକ, ଅଭିନ୍ନ । ତାହା ହେଲା ଈଶ୍ୱର ସତ୍ତା ଉବଲବ୍ଧି, କରୁଣା ଲାଭ ଓ ଚରମ ତଥା ପରମ ଆନନ୍ଦ ପ୍ରାପ୍ତି ସହିତ ପାର୍ଥିବ ଦୁଃଖ, ଜଞ୍ଜାଳ, ରୋଗ, ଶୋକରୁ ମୁକ୍ତି ପାଇଁ ନିବେଦନ, ସମର୍ପଣ ଓ ଉପଲବଧି । ନଦୀମାନଙ୍କ ଉତ୍ପତ୍ତିସ୍ଥଳ, ଖଣି ଯେଉଁଠାରୁ ଯେପରି ହୋଇଥିଲେ ହେଁ ସାଗର ସଙ୍ଗମ ଏହାର ମୁଖ୍ୟ ଲକ୍ଷ୍ୟ । ଏ ଦୃଷ୍ଟିରୁ ପ୍ରାଚୀନ ହିନ୍ଦୁ ଧର୍ମ ବିଶ୍ୱର, ଅନନ୍ୟ, ଅଦ୍ୱିତୀୟ, ଅନୁପମ ବିଶ୍ୱ କଲ୍ୟାଣକାରୀ ଏକ ମହାନ ଧର୍ମ । ଯେଉଁ ଧର୍ମ "ବସୁଧୈବ କୁଟୁମ୍ବକମ୍" ଭାବନାରେ ମଗ୍ନ, ମାନବ କଲ୍ୟାଣରେ ସମର୍ପିତ, ତ୍ୟାଗ ନିଷ୍ଠା, ସଂଯମତା, ସଂସ୍କାରରେ ଗରୀୟାନ, ମହୀୟାନ୍ ।

'ବିଶ୍ୱ ହିତାୟ ଧର୍ମାୟ' ନ୍ୟାୟରେ ହିନ୍ଦୁ ଧର୍ମର ଦର୍ଶନ, ମୌଳିକତା, ସଂସ୍କାର ଓ ସମାଜ ଉପଯୋଗୀ ନୀତି, ନିୟମ, ଆଚରଣ ସହିତ ଶୁଦ୍ଧ ଜୀବନଚର୍ଯ୍ୟା ଯୁଗପତ୍ ମଣିଷକୁ ନିୟନ୍ତ୍ରିତ କରିଆସିଛି । କିଛି କଠୋର ପନ୍ଥୀ, ଭୋଗବାଦୀ ଓ ଅନୈତିକ ବ୍ୟକ୍ତି ବିଶେଷ ହିନ୍ଦୁଧର୍ମର ମୂଳ ଉଦ୍ଦେଶ୍ୟକୁ ସାମୟିକ କଳଙ୍କିତ କରିବାକୁ ଚାହିଁଥିଲେ ମଧ୍ୟ ସନାତନ ଧର୍ମର ମହୋଦଧିରେ ଫୋଟକା ପରି ଉଡ଼ିଯାଇଛନ୍ତି । ଶାସ୍ତ୍ରୀୟ ଉତ୍କର୍ଷ ସହିତ ସମୁଚିତ ମାର୍ଗଦର୍ଶନ ହିନ୍ଦୁ ଧର୍ମର ମୂଳତତ୍ତ୍ୱ ।

ଧାର୍ମିକ ବିକାଶ ପାଇଁ ଓ ସୁସ୍ଥ ମାନସିକତା ପାଇଁ ଉପାସନା ପୀଠଗୁଡ଼ିକର ପ୍ରମୁଖ ଭୂମିକା ରହିଛି । ସବୁଧର୍ମର ଉପାସନାସ୍ଥଳମାନଙ୍କରେ (ଯେପରିକି ମନ୍ଦିର ମସ୍‌ଜିଦ୍, ଚର୍ଚ୍ଚ, ଗୁରୁଦ୍ୱାର, ବିହାର ଇତ୍ୟାଦି) ଭକ୍ତମାନଙ୍କର ସମୂହ ପ୍ରାର୍ଥନା, ଭାଇଚାରା ଭାବର ଆଦାନ ପ୍ରଦାନ ଦ୍ୱାରା ମାନବୀୟ ସଦ୍‌ଗୁଣର ବିକାଶ ସହିତ ଈଶ୍ୱରସତ୍ତା ଉପଲବ୍ଧି ପାଇଁ ଏକ ପବିତ୍ର ପରିବେଶ ମିଳିଥାଏ । ଗୁରୁକୁଳ ଆଶ୍ରମରେ ଶିକ୍ଷା ସହିତ ଆଚରଣ ସଂହିତା ଓ ଆଧ୍ୟାତ୍ମିକ ଅନୁରାଗ ସୃଷ୍ଟି କରାଯାଉଥିଲା । ହିନ୍ଦୁ ଧର୍ମର ଶାଖାରୁ ସୌର, ଗାଣପତ୍ୟ, ଶାକ୍ତ, ବୈଷ୍ଣବ, ଶୈବ, ବଜରଂଗୀ ସଂପ୍ରଦାୟମାନ ସୃଷ୍ଟି ହୋଇ ନିଜ ନିଜର ଉପାସନା ମାର୍ଗର ଭିନ୍ନତା ସତ୍ତ୍ୱେ ମୂଳଲକ୍ଷ୍ୟରୁ ବିଚ୍ୟୁତ ହୋଇ ନଥାନ୍ତି । ଈଶ୍ୱର ସତ୍ତା ଏକ ଉପଲବ୍ଧି ମାତ୍ର । ସେ ସାକାର-ନିରାକାର, ନିର୍ଗୁଣ-ସଗୁଣ, ଆଦି-ଅନାଦି, ଏକ-ଅନେକ, ମାତୃଶକ୍ତି-ପିତୃଶକ୍ତି, ଦ୍ୱୈତ-ଅଦ୍ୱୈତ । କଳ୍ପନାରେ ବିଚ୍ଛୁରିତ ଭାବନା ରାଶିର ନିୟନ୍ତ୍ରଣରେ ଏକ ଉପାସ୍ୟ ମୂର୍ତ୍ତି ପରିକଳ୍ପନା କରାଯାଏ । ପୂଜା ପଦ୍ଧତି, କର୍ମକାଣ୍ଡ, ନୀତି ନିୟମର ପ୍ରଣେତା ମୁନି, ଋଷୀ, ଆଚାର୍ଯ୍ୟଗଣଙ୍କର ଭୂମିକା ଧର୍ମ ସଂରକ୍ଷଣ, ପ୍ରସାରଣ ଓ ଅଧିଗ୍ରହଣରେ ବିଶେଷ ଭୂମିକା ନେଇଥାଏ ।

ପ୍ରାଚୀନ ସନାତନ ଧର୍ମର ଅମ୍ଳାନ ସଂସ୍କୃତିରୁ ମଠ ସଂସ୍କୃତିର ଉତ୍ପତ୍ତି । ପୀଠରୁ ମଠର ସୃଷ୍ଟି । ଉପାସନା ସହିତ ଯୋଗ୍ୟ ମଠାଧୀଶଙ୍କ ତତ୍ତ୍ୱାବଧାନରେ ବିଭିନ୍ନ କାର୍ଯ୍ୟସାରଣୀ ପ୍ରସ୍ତୁତି, ଧର୍ମର ସୁରକ୍ଷା ପାଇଁ ବିଭିନ୍ନ ଧାର୍ମିକ ଉତ୍ସବ, ପର୍ବପର୍ବାଣି, ସାତ୍ତ୍ୱିକ- ଆହାର, ଯୋଗ, ଧ୍ୟାନ, ନିୟମିତ ଆରତି, ସୂର୍ଯ୍ୟପୂଜା, ଗୋପୂଜା, ସ୍ୱାଧ୍ୟାୟ, ଯଜ୍ଞକର୍ମ ଓ ସାମୂହିକ ମଙ୍ଗଳକାରୀ କାର୍ଯ୍ୟ ସଂପାଦନରେ ମଠର ଭୂମିକା ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରି ଆସିଛି । ବିଭିନ୍ନ ସଂପ୍ରଦାୟର ପ୍ରଚାରକ, ଭକ୍ତ ଓ ଅନୁଗାମୀମାନେ ଆଶ୍ରମ, ମଠମାନ ସ୍ଥାପନ କରିଥାନ୍ତି । ଜନପଦ ସହ ଏହାର ସଂପୃକ୍ତ ଥାଏ ଓ ଗୋଷ୍ଠୀର ଏକ ଧାର୍ମିକ / ସାଂସ୍କୃତିକ ସ୍ଥଳୀର ଉତ୍ସ ରୂପେ ଏହା ପରିଗଣିତ ହୋଇଥାଏ । ସମଗ୍ର ଭାରତ ବର୍ଷରେ ହଜାର ହଜାର ମଠ ରହିଆସିଛି । ଶ୍ରୀକ୍ଷେତ୍ର ପୁରୀରେ ବହୁମଠ ସହିତ ନାନକ ଓ କବୀରଙ୍କ ନାମରେ ନାମିତ ମଠ ମଧ୍ୟ ଦେଖିବାକୁ ମିଳେ, ଓଡ଼ିଶାରେ ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ମଠ ଦେଖିବାକୁ ମିଳେ । ସଭିଙ୍କର ଲକ୍ଷ୍ୟ ଏକ ! ଈଶ୍ୱର ଉପାସନା । ସେ ବିଷ୍ଣୁ ହୁଅନ୍ତୁ ବା ରାମ, କୃଷ୍ଣ, ବାମନ, ନୃସିଂହ ହୁଅନ୍ତୁ, ଶିବ ହୁଅନ୍ତୁ ଅଥବା ଅନ୍ୟଦେବତା, ଶୂନ୍ୟ ଉପାସନା ହେଉ କି ଅଘୋରୀ ଦୀକ୍ଷା; ମଠ ସଂସ୍କୃତି ପ୍ରାଚୀନ କାଳରୁ ଏହାର ସ୍ୱାତନ୍ତ୍ର୍ୟ ବଜାୟ ରଖିଛି ।

ମଠ ସହିତ ପରିବେଶ ସୁରକ୍ଷା ପାଇଁ ବାଡ଼ି (ବାରି)ର ପରିକଳ୍ପନା କରାଯାଇ "ମଠବାଡ଼ି" କୁହାଯାଇଥାଏ । ସୁଦୃଶ୍ୟ ଉଦ୍ୟାନ, ନାରୀକେଳ, ପୂଗ ବୃକ୍ଷ ସହିତ

ମଠ ଜମିରୁ ଶସ୍ୟ ଉତ୍ପାଦନ ବ୍ୟବସ୍ଥା ଥାଏ । ଗୋ-ସଂପତ୍ତିର ବିକାଶ ପାଇଁ ଗାଈ, ବଳଦ ଅନେକ ମଠରେ ଥାଏ । କୃଷି ଉପକରଣ, ବାଦ୍ୟଯନ୍ତ୍ର ମଧ୍ୟ ମଠରେ ଦେଖିବାକୁ ମିଳିଥାଏ । ଯାହା ପାଇଁ, ଯେଉଁ ପୀଠ ପାଇଁ ଏ ଅବତରଣିକା, ସେ ହେଲା ଯାଜପୁର ଜିଲ୍ଲା ଧର୍ମଶାଳା ଅନ୍ତର୍ଗତ ଖଣ୍ଡିତର ଗ୍ରାମର ଏକ ପ୍ରାଚୀନ ମଠ 'ଶ୍ରୀ ଶ୍ରୀ ମଦନ ମୋହନ ଜୀଉ' ମଠ । ମଠ ସଂସ୍କୃତିର ଗୌରବମୟ ଐତିହ୍ୟ, ପରଂପରା ଆଧାରିତ, ପ୍ରାକୃତିକ ସୁଷମା ବିମଣ୍ଡିତ, ପୁଣ୍ୟତୋୟା ଖରସ୍ରୋତା ନଦୀ ତଟରେ, ଜନବସତିର ଅନତି ଦୂରରେ ଅବସ୍ଥିତ ମଦନ ମୋହନ ମଠ ଶଙ୍କରାଚାର୍ଯ୍ୟଙ୍କ ସ୍ୱୀକୃତ ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ପ୍ରତିଷ୍ଠିତ ଏକ ରମଣୀୟ ଧାର୍ମିକ ପୀଠ ।

ଦଶନାମୀ ସଂପ୍ରଦାୟର ମଠାଧୀଶ ମହନ୍ତମାନେ ବିଷ୍ଣୁ ଓ ଶିବଙ୍କର ସ୍ଥଳ ବିଶେଷରେ ଉପାସନା କରିଥାନ୍ତି । ଅନ୍ୟ ଦେବାଦେବୀଙ୍କ ବିଗ୍ରହ ବି ରହିଥାଏ । ମହନ୍ତମାନଙ୍କର ନାମ ସାଙ୍ଗିଆ ଗିରି, ପୁରୀ, ଭାରତୀ, ପର୍ବତ, ସାଗର, ବନ, ଅରଣ୍ୟ, ତୀର୍ଥ, ଆଶ୍ରମ ଓ ସରସ୍ୱତୀ ରହିଆସିଛି । ମଦନମୋହନଜୀଉ ମଠର ପ୍ରଥମ ମଠାଧୀଶ ରୂପେ ଶ୍ରୀ ଶ୍ରୀ ସଦାଶିବ ଭାରତୀ ଗୋସ୍ୱାମୀ ପ୍ରଥମେ ମଠ ପ୍ରତିଷ୍ଠାରେ ସହାୟକ ହୋଇ ପ୍ରାୟ ୪୦୦ ବର୍ଷ ପୂର୍ବେ ଏ ମଠ ରୂପନ୍ୟାସ ଦେଇଥିଲେ । ପୁରୀର କିଛି ମଠ, ଜଗତସିଂପୁର, ଯାଜପୁରର ଭୁବନ (ଜାରକା), ସାଲେପୁରର ବହୁଗ୍ରାମ, ପଲାଇ (ଯାଜପୁର, ବଡ଼ଚଣା)ର ଗିରିମଠ, ଦେଉଦା ମଠ, କୋଠପଦା (ମାହାଙ୍ଗ) ମଠ, ପୁରୀର ଭାରତୀ ମଠ ଇତ୍ୟାଦି ଶହଶହ ମଠ ଓଡ଼ିଶାରେ ତଥା ସହସ୍ରାଧିକ ମଠ ସମଗ୍ର ଭାରତ ବର୍ଷରେ ପୂରି ରହିଛି । ବର୍ତ୍ତମାନ ମଦନମୋହନଜୀଉ ମଠର ଦଶମ ପଠାଧୀଶ ଭାବେ ବିଶିଷ୍ଟ ଶିକ୍ଷାବିତ୍, ଧର୍ମପ୍ରାଣ ମହନ୍ତ ଶିଶିର ଭାରତୀ ଗୋସ୍ୱାମୀ ୧୯୯୧ ମସିହା ଫେବୃଆରୀରୁ ଦାୟିତ୍ୱ ଗ୍ରହଣ କରିଛନ୍ତି । ଆଖିଦୃଷ୍ଟିଆ ଆଙ୍ଗିକ ବିକାଶ ନହେଲେ ମଧ୍ୟ ଏହାର କାର୍ଯ୍ୟକ୍ରମ, ଆଧ୍ୟାତ୍ମିକ, ସାଂସ୍କୃତିକ ବଳୟ ମଧ୍ୟରେ ଆତ୍ମିକ ବିକାଶରେ ସହାୟକ ହୋଇ ପାରିଛି । ମଦନମୋହନଜୀଉ ମଠ ପାଖାପାଖି ଅଞ୍ଚଳର ଏକ ସାଂସ୍କୃତିକ କେନ୍ଦ୍ରବିନ୍ଦୁ । ବିଶେଷ ଦିନମାନଙ୍କରେ ଠାକୁରଙ୍କ ଉତ୍ସବ ସହ ଅଷ୍ଟମ, ଚତୁର୍ଥ ପ୍ରହରୀ ନାମଯଜ୍ଞ, ହୋମଯଜ୍ଞ, ଅନ୍ନଯଜ୍ଞ, ଜ୍ଞାନଯଜ୍ଞ ଇତ୍ୟାଦି କାର୍ଯ୍ୟ ଏଠାରେ ସଂପାଦିତ ହୋଇଥାଏ । ମହନ୍ତ ଶିଶିର ଭାରତୀ ଗୋସ୍ୱାମୀଙ୍କ ତତ୍ତ୍ୱାବଧାନରେ ମଠର ବିକାଶ କ୍ରମଶଃ ଆଗେଇ ଚାଲିଛି । ଆପଦକାଳୀନ ସହାୟତା ପ୍ରଦାନ, ସାମାଜିକ ଶାନ୍ତି ଓ ସହାବସ୍ଥାନ, ପାରସ୍ପରିକ ସହଯୋଗ, ସମଝୌତା ପାଇଁ ମଠ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ତୁଲାଇ ଆସିଛି ।

**ସଂପାଦକ**

**ଯୁଗାନ୍ତର ସାଂସ୍କୃତିକ ପରିଷଦ, ରଇପୁର**

ମୋ:- ୯୭୭୭୨୨୮୮୪୮



# ମୋ' ଅନୁଭୂତିରେ ଖଣ୍ଡିତର ମଠ



*ଶ୍ରୀ ଗଗନ ବିହାରୀ ଜେନା*

"ଓଁ ନମୋ ଭଗବତେ ବାସୁଦେବାୟ ।

ଶ୍ରୀମାନ ଶିଶିର କୁମାର ଭାରତୀ, ଶିକ୍ଷାବିତ୍‌, ଗୀତାପ୍ରେମୀ, ମଦନମୋହନ ମଠ (ଖଣ୍ଡିତର)ର ମଠାଧୀଶ । ଦୀର୍ଘ ୧୦ ବର୍ଷ ଧରି ତାଙ୍କ ସହ ପରିଚୟ । ଭଗବାନଙ୍କର ମୁଖନିସୃତ ଭଗବତ୍ ଗୀତାକୁ ଜୀବନର ଆଦର୍ଶ ରୂପେ ଗ୍ରହଣ କରି ଏ ପର୍ଯ୍ୟନ୍ତ ସେ ୧୨୭ ତମ ପୂର୍ଣ୍ଣିମା ଗୀତା ପାରାୟଣ ଅନୁଷ୍ଠାନ କରିଛନ୍ତି । ଗୀତାର ସେହି ଦିବ୍ୟ ସନ୍ଦେଶ- "ଜୀବନ ନୁହଁଇ ଗୋଲାପର ଶେଯ ଅଛି କେତେ କଣ୍ଟାଫୁଲ । ହସକାନ୍ଦ ଭରା ବିରହ ମିଳନ ଛାଇ ଆଲୁଅର ଖେଳ ।" ଜୀବନର ଚଲାପଥରେ ସେ ଜୀବନର ପରିଧିକୁ ବିଭିନ୍ନ ଦିଗରୁ ଦେଖିଛନ୍ତି । ଜୀବନର ନାଡ଼ୀ ନକ୍ଷତ୍ରକୁ ପରୀକ୍ଷା କରିଛନ୍ତି । ଅନେକ ଅନୁଭୂତି ସାଉଁଟିଛନ୍ତି । ମଣିଷର ଜନ୍ମ ମୁଖ୍ୟତଃ ଦୁଇଟି କାର୍ଯ୍ୟ ପାଇଁ ଉଦ୍ଦିଷ୍ଟ । ୧. ପରୋପକାର, ୨. ଈଶ୍ୱରଭକ୍ତି । ଏହି କ୍ଷଣଭଙ୍ଗୁର ସଂସାରରେ ଜୀବନ ଅବଧି ଏକ ମୁହୂର୍ତ୍ତ ପାଇଁ ଆମ୍ଭକୁ ମିଳିଛି । ତେଣୁ ଏହାକୁ ପ୍ରାଣୀହିତରେ ବିନିଯୋଗ କରାଯିବା ଉଚିତ୍ । ମନୁଷ୍ୟ ସଂସାର ମରୁଭୂମିରେ ଏକ ପଥିକ ମାତ୍ର । ପଥିକର କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ପ୍ରତି ମୋହ ରହିବା ଅନୁଚିତ୍ । ସର୍ବଦା ତା'ର ଧ୍ୟାନ ତା'ର ଲକ୍ଷ୍ୟସ୍ଥଳରେ ରହିବା ହିଁ ଦରକାର । ସେବା ଦ୍ୱାରା ମନ ପବିତ୍ର ହୁଏ, ମନକୁ ପ୍ରସନ୍ନତା ମିଳେ, ଏହା ହିଁ ଭାଗବତ ଗୀତାର ମୂଳତତ୍ତ୍ୱ ।

ଜୀବନର ଶେଷ ସନ୍ଧ୍ୟାରେ ମଦନମୋହନଙ୍କ ସେବାରେ ନିୟୋଜିତ ଶ୍ରୀଭାରତୀ ମହାଶୟ ମଦନମୋହନ ପୀଠକୁ କେନ୍ଦ୍ର କରି ଏ ଅଞ୍ଚଳର ଶିକ୍ଷା, ସଂସ୍କୃତି, ମଦନ ମୋହନଙ୍କ ଲୀଳାକୁ ନେଇ ଏକ ଆଧାତ୍ମିକ ରଚନା ତାଙ୍କରି ସୃଜନୀ ଶକ୍ତିର ଦିବ୍ୟ ପରିପ୍ରକାଶ । ଆଗାମୀ ପିଢ଼ି ଏଥିରୁ ଦିଗ୍‌ଦର୍ଶନ ପାଇବେ । ପ୍ରେରଣା ପାଇବେ । ତାଙ୍କର ଏହି ସୁମହାନ ଇଚ୍ଛା ପୂର୍ଣ୍ଣ ହେଉ, ଶ୍ରୀମଦନ ମୋହନଙ୍କର ଚରଣରେ ନିବେଦନ ।

ଅବସରପ୍ରାପ୍ତ ଶିକ୍ଷକ
ଗ୍ରା. ବଡ଼ବାଲିକୁଦା
ମୋ:- ୯୯୩୮୪୧୨୯୯୧



# AND QUIET FLOWS THE KHARASROTA

Subin Dash

It is said that man is predestined from his birth with whom he will meet on his lives' journey. Some become dear to us and remain as a permanent attachment to our life. Time and space cannot separate them. When they next meet, may be in a year or two gap, they fell that they have not been separated ever. Friendship is a matter the mind and self, hence true friends not separated in the life, only death causes their separation.

Such a friend of mine is Sisira Bharati Goswami and Bada Bhai, I met when I was studying English Hons. (1972-74), Bada Bhai was in political science Hons. He was the eldest among friends. He dressed in dhoti and shirt to cover his from neck to waist of his body. Another friend was Ananda Sahu.

Mostly I spend holidays with Bada Bhai in his Matha. Since his elder father was alive and Mahanta of Matha; Bada Bhai was Mahanta designate .

I took many Baishnavites to the Matha. When they saw the idol of Madan Mohan Jeu, they recall the travels of Chaintan Maha Prabhu. They said provably on his way too puri Chaitnya Mahaprabhu at left the idol with the them Mahanta of the Matha.

The mathas were like the Zamidaris, Khanditara Matha came under father, Madan Mohan Patnaik's father Bhikari Patuari was a Revenue Collector of the king of Keonjhar. During the tax collection Bhikari Patuari stayed in Khanditara Matha. One year while staying in Matha to collect tax, the then Mahana informed his that his wife who was staying in Balibaruan, has

delivered a child, as the custom of the time. When a child was born in one's house he can't stay in the premises of Matha or temple. Bhikari Patuari left the Matha immediately. Before he left the village the then Mahanta of Khanditara Matha requested Patuari, if the child born was a mate, he should be named after the presiding diety, Madan Mohan, that in how my maternal grandfather got his name.

Tmples and mathas are the cultural center of different parts of Odisha where they were situated. In due course of time people forgot the importance of Mathas and temples, there was a period when Mathas and temple were brushed aside and temples, there was a period when Mathas and temple were brushed aside and people refused to give there due to these institution. In due to give there due to these institution. In due course of time maths and temple suffered from cultural and financial distress. Visit to these places of worship dwindled. The care takers of Mathas and temple were present as exploiters of people who came from the periphera to worship in these institutions.

Recently people are beginning to feel inclined towards these places of worship. They are beginning to realize that temple and mathas were epic centress of local cultured. The inmates of mathas are being educated and many of them have become teachers, Head Masters, clearks et-al. hence commanded respect of the denizens of the locality. The new matha mahantas organized religious discussions and gave vital knowledge of our sacred books.

In Khanditara all kinds of cultural activities of the place is being supervised and supported by the Mahanta. In the long run the bazaars and business centers may vanished. Generation of people will come and go but the Mathas like the Khanditara Matha will remain as the epic centers of local cultures.



# ମୋ' ସ୍ମୃତିରୁ ଖିଏ

*ପଲ୍ଲୀଶ୍ରୀ କବି ପ୍ରଫୁଲ୍ଲ କୁମାର ସାହୁ*

ପବିତ୍ର ଗୀତାରେ ବାସୁଦେବ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ମାଧ୍ୟମ କରି ଅଷ୍ଟାଦଶ ଯୋଗରେ ଅମୃତ କଣ୍ଠ ନିସୃତ ବାଣୀ ପ୍ରଦାନ କରିଛନ୍ତି । ଯାହା ସମଗ୍ର ଜଗତରେ ପ୍ରାଣୀଙ୍କର ହିତ ସାଧନ କରିପାରିବ । ଭଗବାନ ସ୍ୱୟଂ ବ୍ୟାସଦେବ ସ୍ୱର୍ଣ୍ଣାକ୍ଷରରେ ସେ ଅମୃତ ଗୀତାଜ୍ଞାନ ବିତରଣ କରିଛନ୍ତି । ଯାହାକୁ ଶ୍ରଦ୍ଧାଳୁ ଗୀତା ପାଠକ ପ୍ରତିଟି ଅକ୍ଷରରେ ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କର ସତ୍ତା ଦର୍ଶନ କରି ଜୀବନକୁ ଗୀତା ଜ୍ଞାନ ଗଂଗାରେ ଅବଗାହନ କରି ପାରିବ ।

ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ
ଅହଂ ତ୍ୱା ସର୍ବ ପାପେଭ୍ୟୋ ମୋକ୍ଷୟିଷ୍ୟାମି ମାଶୁଚଃ ॥

ଅର୍ଥାତ:- ସବୁଧର୍ମର ଆଶ୍ରୟ ଛାଡ଼ି ତୁମେ କେବଳ ମୋର ଶରଣକୁ ଆସିଯାଅ ମୁଁ ତୁମକୁ ସମସ୍ତ ପାପରୁ ମୁକ୍ତ କରିଦେବି । ଗୀତା ଅଷ୍ଟାଦଶ ଅଧ୍ୟାୟ ୬୫ ତମ ଶ୍ଳୋକ ସ୍ପଷ୍ଟ କରିଦିଏ ପ୍ରଭୁଙ୍କ ଶରଣ ବ୍ୟତୀତ ଜୀବନର କୌଣସି ଗତି ମୁକ୍ତି ନାହିଁ । ତେଣୁ ଭକ୍ତିର ସହ ପ୍ରଭୁଙ୍କୁ ସମର୍ପଣ ସ୍ମରଣ କରି ତାଙ୍କୁ ସର୍ବସ୍ୱ ଭାବି ଭକ୍ତି ନିକେତନ କରିବା ।

ମଣିଷ ଜନ୍ମ ନେବାପରେ ଯେତେବେଳେ ହେତୁ ପ୍ରାପ୍ତ ହୁଏ । ସେତେବେଳେ ସେ ଭକ୍ତି କ'ଣ, ଆଚରଣରେ ଶିକ୍ଷା ଲାଭ କରିଥାଏ । ତାହା ଗୁରୁ ମଠ ମନ୍ଦିର ମାଧ୍ୟମରୁ ଦେଖି ଶିଖିଥାଏ । ସେଥିପାଇଁ ପ୍ରାଚୀନ କାଳରୁ ମଠ ମନ୍ଦିର ଆର୍ଯ୍ୟଭୂମିରେ ଗଢ଼ିଉଠିଛି । ଗ୍ରାମମାନଙ୍କରେ ଭାଗବତ ଟୁଙ୍ଗୀ, ସାଧୁସନ୍ଥଙ୍କର ଧର୍ମୀୟ ମହତବାଣୀ ଲୋକଙ୍କ ମନରେ ଭକ୍ତି ସଞ୍ଚାର କରେ ।

ମଠ କଥା କହିବାକୁ ହେଲେ ମଠମାନଙ୍କ ମଧ୍ୟରୁ ମଦନ ମୋହନ ଜୀଉ ମଠ (ଖଣ୍ଡିତର) ପୁଣ୍ୟସ୍ରୋତା ଖରସ୍ରୋତା ନଦୀ ତଟ ଦେଶରେ ବିଦ୍ୟମାନ । ଯାହାକି ୧୭ ଦଶ ଶତାବ୍ଦୀର ଆରମ୍ଭରେ ସ୍ଥାପିତ ହୋଇଥିଲା । ରାଜା ଜମିଦାର ଶାସନ କାଳରେ ମଠ ପାଇଁ ଜମି ଖଞ୍ଜା ହୋଇଥିଲା । ତତ୍‌କାଳୀନ ମଠାଧୀଶ (ମହନ୍ତ ମହାରାଜ) ମଠର ସର୍ବାଧିକାରୀ ରୂପେ ମଠ ପରିଚାଳନା କରି ଆସୁଛନ୍ତି । ପରମ୍ପରା କ୍ରମେ ମଠାଧୀଶଙ୍କ ସମାଧିସ୍ଥ ପରେ ନୂତନ ମଠାଧୀଶ ଗାଦି ମଣ୍ଡନ କରି ଏଯାବତ୍ ପ୍ରଚଳିତ ହୋଇ ଆସୁଛି ।

ବର୍ତ୍ତମାନର ମଠାଧୀଶ ଭାବେ ମହାରାଜ ଶିଶିର ଭାରତୀ ମଠର ସମସ୍ତ ଦାୟିତ୍ୱ ବହନ କରୁଛନ୍ତି । ସେ ଅତି ସରଳ ଅମାୟିକ ସୁମିଷ୍ଟଭାଷୀ ଜନପ୍ରିୟ ମହାତ୍ମା ଅଟନ୍ତି । ମଦନମୋହନଜୀଙ୍କର ବାରମାସରେ ତେର ପର୍ବ ଉତ୍ସବ ପାଳନ କରୁଛନ୍ତି । କାର୍ତ୍ତିକ ମାସରେ ରାସ ପଞ୍ଚକ, ଦୋଳରେ ଦୋଳଗୋବିନ୍ଦ, ବିମାନ ଯାତ୍ରା, ଚନ୍ଦନ ଯାତ୍ରା, ଝୁଲଣ ଯାତ୍ରା ଇତ୍ୟାଦି ପାଳନ କରୁଛନ୍ତି । ତତ୍‌ସଙ୍ଗେ ପ୍ରତ୍ୟେକ ପୂର୍ଣ୍ଣିମା ଦିନ ପବିତ୍ର ଗୀତା ପାରାୟଣ ସହ ପ୍ରସାଦ ସେବା କରାଉଛନ୍ତି ।

ଜାଣି ଖୁସି ହେଲି ପୂଜ୍ୟ ଶିଶିର ମହାରାଜ ବର୍ତ୍ତମାନ ଏକ ପୁସ୍ତକ ରଚନା କରୁଛନ୍ତି । ତାହା ମଠ ସଂପର୍କିତ ଏବଂ ଅନୁମାନ ତଥ୍ୟ ସମ୍ବଳିତ ଅଟେ । ପାଠକର ହୃଦୟରେ ଭକ୍ତିଭାବ ସୃଷ୍ଟି କରି ପାରିବ, ତାହା ଏକ ଉପାଦେୟ ଏବଂ ଶିକ୍ଷଣୀୟ ।

ଏହି ପୁସ୍ତକଟିର ବହୁଳ ପ୍ରଚାର ହେବା ସହ ଜନାଦୃତ ହେଉ । ପୂଜ୍ୟ ଶ୍ରୀ ଶିଶିର ମହାରାଜଙ୍କ ନିରାମୟ ଜୀବନ କାମନା ସହ ତାଙ୍କ ଲେଖନୀ ଚଞ୍ଚଳ ଥାଉ ଶ୍ରୀ ଶ୍ରୀ ଶ୍ରୀ ମଦନ ମୋହନ ଜୀଉଙ୍କ ନିକଟରେ ପ୍ରାର୍ଥନା କରୁଛି ॥

ଇତି
ପଲ୍ଲୀଶ୍ରୀ କବି ପ୍ରଫୁଲ୍ଲ କୁମାର ସାହୁ
ସଠିଆଟିକିରୀ







# ଭାବନାର ବିନ୍ଦୁ

*ଶ୍ରୀ ପଦ୍ମନାଭ ନାୟକ*



କଳି ଯୁଗେ ନାମ ରୂପେ
ଭିନ୍ନ ଅବସ୍ଥାନ,
ଜପ ତପ ସଂକୀର୍ତ୍ତନେ
ମଦନ ମୋହନ ।
କେଉଁ ନାମ କେତେ ଧାମ
ସବୁ ବ୍ରହ୍ମ ଏକ,
ଭକ୍ତି ଭାବେ ଡାକ ଯେବେ
ହରି ସିଏ ଦୁଃଖ ।
ଜଗନ୍ନାଥ ବିଶ୍ୱନାଥ
ଅନନ୍ତ ବ୍ରହ୍ମାଣ୍ଡ,
ଜଳେ ସ୍ଥଳେ ମହାଶୂନ୍ୟେ
ନାମ ତା' ଅଖଣ୍ଡ ।
ପିତା ମାତା ସେହି ସଖା
ସେହି ସହୋଦର,
ବନ୍ଧୁ ସିଏ ପାରିକରେ
ଏ ଭବ ସାଗର ।
ଖରସ୍ରୋତା ନଦୀକୂଳେ
ଖଣ୍ଡିତର ଗ୍ରାମ,
ସେହି ସ୍ଥାନେ ବିରାଜିତ
ମଦନ ମୋହନ ।
ମଠାଧିଶ ମହନ୍ତଙ୍କ
ଆରାଧ୍ୟ ଦେବତା,
ପୂଜା ପାଉ ଅଛନ୍ତି ସେ
ବହୁଦିନ କଥା ।

କେତେ ଦିନୁ କାଳୁ ଏଠି
ଗୋ ସ୍ୱାମୀ ମହନ୍ତ,
ସେବକ ସେ ସାଜିଛନ୍ତି
ନାହିଁ ଆଦି ଅନ୍ତ ।
ଥିଲେ ଏଠି ପୂର୍ବୁ କେତେ
ଏବେ ଯେ ମହନ୍ତ,
ଶିକ୍ଷକତା ବୃତ୍ତିଥିଲା
ମାହାଜ୍ଞାନ ବନ୍ତ ।
ମଠକଥା ମାଆ ଚିନ୍ତା
ଶିବଙ୍କ ମନ୍ଦିର,
ବୁଝିଥାନ୍ତି ପ୍ରଜାଙ୍କର
ଧୈର୍ଯ୍ୟ ସହକାର ।
ଦୁଃଖ ଲାଗେ ଚିନ୍ତା କଲେ
ଆଗାମୀ ଦିନରେ,
ଧରିବକେ ମଙ୍ଗ ଦିନେ
ଖୋଲା ହୃଦୟରେ ।
ସତ୍ୟ ସାଇ ଆଜ୍ଞା ପାଇ
ରହିଲେ ସେ ଏକା,
କହିଥିଲେ ଦିନେ ସିଏ
କରିଥିଲି ଦେଖା ।
ଧନ ଜନ ଗୋପ ଲକ୍ଷ୍ମୀ
ଥିଲେ ଥାଉ ଯେତେ,
ଜୀବନର ଶେଷ କାଳେ
କେହି ନାହିଁ ପାଖେ ।

ସଂପତ୍ତିର ମୂଲ୍ୟ ନାହିଁ
ନାହିଁ ଯେବେ ଶାନ୍ତି,
ସବୁଠାରୁ ଦୂରେ ରହି
ମାଗେ ଖାଲି ମୁକ୍ତି ।

ମକଦ୍ଦମା ଜମି ଜମା
ଯେତେ କେଲଙ୍କାରୀ,
ସତରେ ସେ ଭୋଗିଛନ୍ତି
ବହୁଧୈର୍ଯ୍ୟ ଧରି ।

କେବଳ ସେ ମହାପ୍ରଭୁ
ମଦନ ମୋହନ,
ପୂର୍ବପରି ରଖିଥାନ୍ତୁ
ତାଙ୍କର ଏ ଧାମ ।

ନୀଳଚକ୍ରେ ବାନା ଉଡ଼େ
ନୀଳାଚଳ ଧାମେ,
ବିରାଜିତ ଚାରି ଦେବ
ରତ୍ନ ସିଂହାସନେ ।

ମଦନ ସେ ମୋହନ ସେ
ସେହି ବଂଶୀଧାରୀ,
ସଦାବେଳେ ଭକ୍ତଙ୍କର
ଶୁଣଇ ଗୁହାରୀ ।

ପ୍ରଭୁଙ୍କର ଜମିବାଡ଼ି
କେତେ ଖାଉଛନ୍ତି,
ଠକି ଥିଲେ ଠାକୁରଙ୍କୁ
ଠକି ସେ ଯାଆନ୍ତି ।

ସତ୍ୟ ଫଳେ କଳିଯୁଗେ
ନ ଜାଣନ୍ତି କେହି,
କର୍ମଫଳ ବୋଲି ତାକୁ
ଆମ୍ଭେ କହିଥାଇ ।

ସାରା ବିଶ୍ୱେ ପାପଭାରେ
ଆସେ ମହାମାରୀ,
ଦୋଷୀକୁ ସେ ଦଣ୍ଡ ଦିଏ
ବିଚାର ସେ କରି ।

ରହିଥାଉ ପରମ୍ପରା
ରହିଥାଉ ନୀତି,
ସେବା କରି ଦୁଇ ହସ୍ତେ
ଦିନ ଯାଉ ବିତି ।

ଜଗନ୍ନାଥେ ଧାମେ ଦେଖ
କେତେ ଅଛି ମଠ,
ଏବେକାର ସେବା ଦେଖ
ସବୁ ହେଲା ନଷ୍ଟ ।

ମହନ୍ତ ସେ ମହାରାଜା
ମଠର ଅଧିଷ୍ଟ,
ନିର୍ଯାତନା ପାଉଛନ୍ତି
ସହି ବହୁ କଷ୍ଟ ।

ସବୁଧାମ ସବୁଦେବ
ସବୁଠି ଅଳିଆ,
ପୁଣ୍ୟ କାର୍ଯ୍ୟେ ପାପ ଧାରା
କରୁଛି ଗୋଳିଆ ।

ବେଳ ଥାଉ ଧ୍ୟାନ କର
ପୂର୍ବଜଙ୍କ କଥା,
ପଦ୍ମନାଭ ହାତ ଯୋଡ଼େ
ତଳେ ରଖି ମଥା ।

ମହାପ୍ରଭୁ ମଦନ ମୋହନ ଖଣ୍ଡିତର ମଠ ମଠାଧିଶ ମହନ୍ତ ମହରାଜା ଗୋସ୍ୱାମୀ ଶ୍ରୀମାନ ଶିଶିର ଭାରତୀ ଓ ତାଙ୍କ ପୂର୍ବଜଙ୍କ ସେବା ପ୍ରଚେଷ୍ଟାର ପ୍ରତୀକ ବର୍ତ୍ତମାନର ପରିସ୍ଥିତି ଏବଂ ଆଗାମୀ ଦିନର ଭବିଷ୍ୟତ । ସେବା ଓ କର୍ମ ହିଁ କହିବା

ଆମ୍ଭେ ଏଠାରେ କୋଟୋଚି ବିନ୍ଦୁକୁ ମାତ୍ର ପାଥେୟ କରି ମଠ ମହିମା ଓ ପରମ୍ପରା ବିଷୟରେ ଜଣାଇବାକୁ ଚେଷ୍ଟା କରିଅଛୁ । କାରଣ କର୍ମମୟ ଜୀବନ ମଧ୍ୟରେ ସ୍ୱଳ୍ପ ସମୟ ଦେଖା ସାକ୍ଷାତରେ ଯାହା କିଛି ପ୍ରାପ୍ତ ହୋଇଛି । ଏହାସବୁ ସେଇ ମଦନ ମୋହନଙ୍କ ଇଚ୍ଛା । ବାବା ସତ୍ୟ ସାଇ କହିଥିଲେ-God has a million names Select any name of his any name that appeal to you. ଅର୍ଥ ଅତି ସହଜ, ଭଗବାନଙ୍କ ଯେତେ ନାମ ଥାଉ, ଗୋଟିଏ ନାମକୁ ତୁମେ ପାଥେୟ କର ତାହା ହିଁ ଯଥେଷ୍ଟ । କାରଣ ଈଶ୍ୱରଙ୍କର କେତେକ ସ୍ଥାନରେ ଧାମକୁ ନେଇ ନାମ ହୋଇଥାଏ, ହେଲେ ଈଶ୍ୱର ଜଣେ । ଏ ପୃଥିବୀ ବକ୍ଷରେ ସଜୀବ/ ନିର୍ଜୀବ ସମସ୍ତଙ୍କର ସ୍ଥାନ ଅଛି । ଆକାଶରେ ଚନ୍ଦ୍ର, ସୂର୍ଯ୍ୟ, ତାରା, ଗ୍ରହ, ନକ୍ଷତ୍ର ମେଘ, ବିଜୁଳି, ବାୟୁ ଏବଂ ସ୍ଥଳ ବିଶେଷରେ ଦେଶ ମହାଦେଶ ସାଗର, ମହାସାଗର, ନଦୀ, ହ୍ରଦ, ପର୍ବତ, ବୃକ୍ଷଲତା, ଜୀବଜଜଗତ, ମାନବ, ପଶୁ, ପକ୍ଷୀ, କୀଟପତଙ୍ଗ ସରୀସୃପ ସମସ୍ତେ ପୃଥିବୀ ବକ୍ଷରେ ଆଶ୍ରିତ । ଭଗବାନଙ୍କ ସୃଷ୍ଟିରେ ପୃଥିବୀରେ କୋଟିକୋଟି ପ୍ରାଣୀ ଅଛନ୍ତି । କିନ୍ତୁ ସମସ୍ତଙ୍କର ଗଠନ ଆଚାର ବ୍ୟବହାର ସମାନ ନୁହଁ ।

ପୃଥିବୀପୃଷ୍ଠରେ ମାନବ ହେଉଛି ଶ୍ରେଷ୍ଠ ଜୀବ । ଏମାନଙ୍କ ମଧ୍ୟରେ ଜ୍ଞାନୀ, ବିଜ୍ଞାନୀ, ବହୁଗୁଣଧାରୀ ବ୍ୟକ୍ତିମାନେ ଅଗାଧ ପାଣ୍ଡିତ୍ୟର ଅଧିକାରୀ ହୋଇଅଛନ୍ତି । ଯେଉଁମାନଙ୍କ ପାଇଁ ଆଜି ମାନବ ଜାତି ବହୁ ଉପରେ । ଭଗବାନ ଜୀବ ଜଗତକୁ ଏପରି ତିଆରି କରିଛନ୍ତି, କେହି କାହା ପରି ନୁହଁନ୍ତି । ସମସ୍ତଙ୍କର ଗଠନ ଭାବନା, ଚିନ୍ତାଧାରା, ଶିକ୍ଷା, ସଂସ୍କାର, ମାନବିକତା ବ୍ୟବହାର ସଂପୂର୍ଣ୍ଣ ଅଲଗା ହୋଇଥାଏ । ଆଜି ମାନବ ସଂପଦଯୋଗୁ ପୃଥିବୀ ତା'ର ନୂଆ ରୂପ ପାଇଛି । ଆଉ ସେ ଆଦିମ ଝକ୍‌ମକି ପଥରର ନିଆଁ ଦରକାର ପଡୁନାହିଁ ବା ଆବଶ୍ୟକ ନାହିଁ । ବର୍ତ୍ତମାନ ରିମୋଟ୍ ଦାବିଲେ ନୂଆ ନୂଆ ତଥ୍ୟ ଆସୁଛି । ବିଜ୍ଞାନର ଅଗ୍ରଗତି ବୁଝାଏ ଦେଶର ପ୍ରଗତି ।

କିନ୍ତୁ ମୂଳ ରିମୋଟ୍ ପ୍ରଭୁ ଭଗବାନଙ୍କ ହାତରେ ଅଛି । ଏହା ଭୁଲିଯିବା ଉଚିତ୍ ନୁହେଁ । ଏଗୁଡ଼ିକୁ ନିୟନ୍ତ୍ରଣରେ ରଖିବା ପାଇଁ, ସୃଷ୍ଟିକର୍ତ୍ତା କେତେକ ସ୍ଥାନକୁ ନିରୁପଣ କରିଥାନ୍ତି ଏବଂ ସେହି ସ୍ଥାନରେ ତାଙ୍କର ପରମ ଭକ୍ତ ବା ଆଦ୍ୟ ସେବକମାନଙ୍କୁ ଏ କଳିଯୁଗର କାଳିମାରୁ ମୁକ୍ତି ପାଇବା ପାଇଁ ବାଟ ଦେଖାଇଥାନ୍ତି । ଯେପରି ବଡ଼ ବଡ଼ ଯାତାୟତ ସ୍ଥାନମାନଙ୍କରେ ବହୁ ଯାନକୁ ତଥା ଗାଡ଼ି ମଟର ଚଳାଚଳକୁ ନିୟନ୍ତ୍ରଣ କରିବା ପାଇଁ ଟ୍ରାଫିକ୍ ପରି ସ୍ଥାନ ନିରୁପଣ କରି ଏହି ସ୍ଥାନମାନଙ୍କରେ ଶ୍ରେଷ୍ଠ ମାନବ ବା ପ୍ରଭୁ କୃପା ଲାଭ କରିଥିବା ସାଧନାର ଶ୍ରେଷ୍ଠ ପୁରୁଷମାନଙ୍କୁ ନିୟୋଜିତ କରିଥାନ୍ତି ।

ଭାରତୀୟ ଆର୍ଯ୍ୟ ପରମ୍ପରାରେ ଚତୁରାଶ୍ରମ ବ୍ୟବସ୍ଥା ପ୍ରଚଳିତ । ଯଥା-

୧. ବ୍ରହ୍ମଚର୍ଯ୍ୟ, ୨. ଗୃହସ୍ଥ, ୩. ବାନପ୍ରସ୍ଥ, ୪. ସନ୍ନ୍ୟାସ ଏମାନେ କିଏ? କିପରି ଏମାନଙ୍କ ସୃଷ୍ଟି ହେଲା, ତାହା ସବୁ ଭଗବାନଙ୍କୁ ଜଣା ଏବଂ ମାନବଜାତି ମଧ୍ୟ ବୁଝିସାରିଛି। ଏପରି ବ୍ୟକ୍ତି କିଏ ଏବଂ କାହା ଦ୍ୱାରା ହୋଇଥାଏ ଏଥିପାଇଁ ଭାବନାର ଆଧାର କ'ଣ ହୋଇପାରେ! ଜାତି ହେଉଛି ଗୋଟିଏ ତାହା ମାନବ ଜାତି, ଧର୍ମ ହେଉଛି ଗୋଟିଏ ମାନବଧର୍ମ, ପ୍ରେମ ହେଉଛି ଗୋଟିଏ ତାହା ହୃଦୟର ପ୍ରେମ, ସେବା ହେଉଛି ଗୋଟିଏ ତାହା ସଜୀବ ସେବା, ଜ୍ଞାନ ହେଉଛି ଗୋଟିଏ ତାହା ଗୁରୁ ପ୍ରାପ୍ତ ଜ୍ଞାନ, ଧନ ହେଉଛି ଗୋଟିଏ କେବଳ ପାଦତଳର ଧୂଳି ଭଳି, ଜୀବନ ହେଉଛି ଗୋଟିଏ ବର୍ଷା ଜଳର ଫୋଟକା ଭଳି, ଯୌବନ ହେଉଛି ଗୋଟିଏ ପାହାଡ଼ିଆ ନଦୀ ସ୍ରୋତର ଧାର ଭଳି, ପରମାୟୁ/ ଅୟୁଷ ଗୋଟିଏ ଚଳଚଞ୍ଚଳ ବିନ୍ଦୁ ଭଳି। ଏଗୁଡ଼ିକୁ ଜାଣିବାର ଅର୍ଥ ହେଉଛି, ଯେଉଁମାନେ ଏହି ସବୁ ଶବ୍ଦର ଅର୍ଥକୁ ଠିକ୍ ରୂପେ ବୁଝି ପାରିବେ, ତେବେ ସେହିମାନେ ହିଁ ଏହି ମହାସାଧନରେ ଯୋଗ ଦେଇ ପାରିବେ। ଏଣୁ ଶସ୍ତ୍ର କହେ ନିଜର ସମୃଦ୍ଧ କିମ୍ବା ଅହଙ୍କାରର ବଶବର୍ତ୍ତୀ ନହୋଇ ଯେଉଁମାନେ ଏହି ଗୁଣର ଅଧିକାରୀ ହୋଇପାରନ୍ତି, ସେମାନେ ଅନ୍ୟ ପ୍ରତି ଦୟା କ୍ଷମା ଓ ବିନୟ ପ୍ରଦର୍ଶନ କରିଥାନ୍ତି। ସେହିମାନେ ହିଁ ଭଗବାନଙ୍କ ସେବା କରିବା ପାଇଁ ଯୋଗ୍ୟ ହୋଇଥାନ୍ତି।

ଅନ୍ୟ କ୍ଷେତ୍ରରେ ଆତ୍ମା କ'ଣ ଓ ପରମ ଆତ୍ମା କିଏ, ଏହାର ଅର୍ଥକୁ ବୁଝିଥିବା ମହାମାନବ ହିଁ ଜଣେ ସେବକ ହୋଇଥାଏ। ଆତ୍ମା ହେଉଛି- ମନ- ବୁଦ୍ଧି- ସଂସ୍କାର। ଏଗୁଡ଼ିକ ଯେଉଁମାନେ ଠିକ୍ ସୂଚାରୁ ରୂପେ ପରିଚାଳନା କରିଥାନ୍ତି। ସେମାନେ ହିଁ ଆତ୍ମାକୁ ଚିହ୍ନିବା ସହିତ ଅନ୍ୟର ଆତ୍ମା କଥା ବୁଝିପାରନ୍ତି।

ପରମ ଆତ୍ମା- ହେଉଛନ୍ତି ଆତ୍ମାର ପିତା। ପିତା ଶବ୍ଦର ଅର୍ଥ-ଯାହା ପାଳୟତି ସହଃ ପିତା।

ତେଣୁ ବ୍ରହ୍ମା- ସୃଷ୍ଟିକର୍ତ୍ତା- ବିଷ୍ଣୁ- ପାଳନ କର୍ତ୍ତା ମହେଶ୍ୱର, ଯେଉଁନାମରେ ୨ଟି ଅର୍ଥ। ସୃଷ୍ଟି ଶିବ ଓ ଶଙ୍କର ଏହି ନାମର ଅର୍ଥ ହେଉଛି ନିଜେ ପାଳନ କର୍ତ୍ତା ଓ ବିନାଶ କର୍ତ୍ତା। ଏମାନେ ତତ୍ତ୍ୱତଃ ଏକ ପରମ ପିତା ପରମ ଆତ୍ମା, ଏଣୁ ଯେଉଁମାନଙ୍କ ହୃଦୟରେ ଏ ସଞ୍ଜ୍ଞା ଜଣାଥିବ, ସେ ହିଁ ପରମ ସେବକ ହୋଇପାରିବ। ମାନବ ସମାଜ ସୃଷ୍ଟି ହେଲା ଦିନୁ, ମାନବ ସର୍ବଦା ବିଚାରଶୀଳ ବୁଦ୍ଧିମାନ ଓ ଜ୍ଞାନର ଅଧିକାରୀ ହୋଇଆସୁଛି। କାରଣ, ସମୟାନୁକ୍ରମେ ବିକାଶ ଧାରା ଦ୍ରୁତଗତିରେ ଗତି କରୁଥିବାରୁ ମାନବ ସମାଜ ବର୍ତ୍ତମାନ ବହୁ ଉପରେ ପହଞ୍ଚିଛି। ଜଣେ ବୁଦ୍ଧିମାନ ବ୍ୟକ୍ତି କୌଣସି କାର୍ଯ୍ୟ କରିବା ପୂର୍ବରୁ ତାହା ଚିନ୍ତା କରିଥାଏ ତା'ପରେ ସେ ଆଗକୁ ଗୋଟିଏ ପାଦ

ଥାପିବା ପାଇଁ ଚେଷ୍ଟା କଲା ପରେ ୨ୟ ପାଦ ଉଠାଏ ଏବଂ ଏହି କ୍ରମରେ ସେ ଆଗକୁ ଆଗକୁ ଆଗେଇ ଚାଲେ ।

ମନୁଷ୍ୟ ଜନ୍ମ ନେଲା ପରେ, ତା' ଜୀବନକାଳ ମଧ୍ୟରେ ସବୁଠାରୁ ବଳଶଳୀ ହେଉଛି ମନୁଷ୍ୟର ଭାଗ୍ୟ । ଯଦି ଭାଗ୍ୟରେ କୌଣସି ଦୋଷ ଲେଖାଥାଏ, ତାହା ହେଲେ ଦିନ ଓ ରାତିର ଅଧୀଶ୍ୱର ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ପରି ଗ୍ରହପୀଡ଼ାରେ ଶିକାର ହୁଅନ୍ତି । ଅର୍ଥାତ୍ ସୂର୍ଯ୍ୟଙ୍କୁ କେତୁ ଓ ଚନ୍ଦ୍ରଙ୍କୁ ରାହୁ ଗ୍ରାସ କରେ । ଏହା କିଛି ନିର୍ଦ୍ଦିଷ୍ଟ ସମୟ ପାଇଁ ହୋଇଥାଏ । ସେହି ପରି ମଣିଷମାନେ ଦୈବଶକ୍ତିରୁ ବା ଭାଗ୍ୟଠାରୁ ବଳି ଯାଇପାରନ୍ତେ କିପରି ! ନିଜର କର୍ମଫଳ ହିଁ ନିଜେ ମନୁଷ୍ୟ ଭୋଗ କରିଥାଏ । କିନ୍ତୁ ଭାଗ୍ୟର ଡୋରି ମନୁଷ୍ୟ ହାତରେ ନଥାଏ । ତାହା ଈଶ୍ୱରଙ୍କ ହାତରେ ଥାଏ । ତାଙ୍କ ନିର୍ଦ୍ଦେଶରେ ମନୁଷ୍ୟର ଭାଗ୍ୟ ଡୋରି ଚାଲିଥାଏ । କିନ୍ତୁ ଈଶ୍ୱର ସେବା କଲେ ବହୁ ପୂର୍ବ କର୍ମଫଳ ସୁଧୁରିଯାଏ । ତାହା ସମାଜରେ ତଥା ପୁରାଣମାନଙ୍କରେ ପ୍ରମାଣ ରହିଛି । ଏହାର ଭଗବତ ପ୍ରେମର ଉଦାହରଣ ବହୁତ ଅଛି ।

ଆମ ସଂସ୍କୃତି କହେ 'ବର୍ଷାଣାଂ ଭାରତ ଶ୍ରେଷ୍ଠଃ, ଦେଶାନାଂ ଉତ୍କଳଃ ଶ୍ରୁତଃ । ଉତ୍କଳସ୍ୟ ସମୋଦେଶଃ ଦେଶ ନାସ୍ତି ମହୀତଳେ । ଏହା କାହିଁକି କୁହାଯାଇଛି । ଓଡ଼ିଶାର ଇଷ୍ଟ ଦେବତା ଶ୍ରୀଜଗନ୍ନାଥ ଯୁଗ ଯୁଗାନ୍ତରରୁ ଆସି ଏହି ଯୁଗରେ ଶ୍ରୀକୃଷ୍ଣଙ୍କ ପରବର୍ତ୍ତୀ ଅବତାର ହୋଇଛନ୍ତି । ଏହା କେବଳ ଭଗବତ ଚିନ୍ତାରୁ ହିଁ କୁହାଯିବ । ଶ୍ରୀ ଜଗନ୍ନାଥଙ୍କ ସେବା କର୍ମ ହେଉଛି ଏକ ମାନବୀୟ ସେବା । ସେବା କରିବାର ସୁଯୋଗ ସମସ୍ତଙ୍କ ଭାଗ୍ୟରେ ନଥାଏ । ଯେଉଁମାନେ ପ୍ରକୃତ ସାଧନା କରିଥାନ୍ତି, ପ୍ରକୃତ ଜ୍ଞାନର ଅଧିକାରୀ ହୋଇଥାନ୍ତି ସେମାନେ ହିଁ ପ୍ରକୃତ ସେବା କରିପାରନ୍ତି । କିନ୍ତୁ ଏହା ପାଇଁ ବହୁ ବାଧାବିଘ୍ନ ଥାଏ । ଶ୍ରୀମାଙ୍କ ଭାଷାରେ- When ever one wants to achieve same thing in life difficulties come to take them as a discipline to make you strong and you will more easily-over come them. ଏହାର ଅର୍ଥ ଅତି ସହଜରେ ବୁଝି ହୁଏ । ଯେତେବେଳେ ମଣିଷ ଜୀବନରେ କିଛି ପ୍ରାପ୍ତ କରିବାକୁ ଚାହେଁ ସେତେବେଳେ ନାନା ପ୍ରକାର ବାଧାବିଘ୍ନ ତା' ଜୀବନରେ ଦେଖାଦିଏ । ସେ ସବୁକୁ ଯଦି ତୁମେ (ମନୁଷ୍ୟ) ତପସ୍ୟା ରୂପେ ବରଣ କର ତାହା ତୁମକୁ ଦୃଢ଼ ସମର୍ଥ କରି ଗଢ଼ି ତୋଳିବ ଏବଂ ଏହା ଦ୍ୱାରା ତୁମେ ଅତି ସହଜରେ ସେ ସବୁକୁ ଅତିକ୍ରମ କରି ଆଗକୁ ଯାଇପାରିବ । ଜଣେ ଭଲ ସେବକ ବା ଭଲ ମଣିଷ ହୋଇପାରିବ ।

ଉତ୍କଳର ବିରଜା କ୍ଷେତ୍ର ଯାଜପୁର ଜିଲ୍ଲା ରସୁଲପୁର ବ୍ଲକ୍ ଖଣ୍ଡିତର ଗ୍ରାମ ମଠ ଶ୍ରୀ ଶ୍ରୀ ମହାପ୍ରଭୁ ମଦନମୋହନ ମୁରୁନି ପ୍ରତିମାରେ ବିରାଜିତ । ତ୍ରିଭଙ୍ଗୀ ଛନ୍ଦରେ

ହାତରେ ବଂଶୀଧାରଣ କରି ବିଦ୍ୟମାନ ହୋଇଛନ୍ତି । ଏହି ମଠର ପରମ୍ପରା ବହୁ ପୁରାତନ । ଏଠାରେ ମଠାଧିଶ ମହନ୍ତମାନେ ବା ମହାପ୍ରଭୁଙ୍କ ସେବକମାନେ ବଂଶାନୁକ୍ରମିକ ଭାବେ ସେବା କରି ଆସୁଛନ୍ତି । ଏଠାରେ ନୀତି, କାନ୍ତି, ସେବା ପୂଜା ପ୍ରଚଳିତ ନିୟମ ଧାରାରେ ହୋଇଥାଏ । ମଠରେ ମହନ୍ତଙ୍କ ସହିତ ପୂଜାରୀ, ରୋଷେୟା, ମାଳୀ, ଝାଡୁଦାର ଓ ଅନ୍ୟାନ୍ୟ ସେବକ ଅଛନ୍ତି । ମହାପ୍ରଭୁ ମଦନ ମୋହନଙ୍କର ଦୈନନ୍ଦିନ ଅନ୍ନ ନୀତି ହୁଏ । ବିଭିନ୍ନ ପର୍ବପର୍ବାଣିରେ ଝୁଲଣଯାତ୍ରା, ଦୋଳପର୍ବ, କାର୍ତ୍ତିକ ପୂର୍ଣ୍ଣିମା, ହବି ସନୀତି ମୁଖ୍ୟ ରୂପେ ପାଳିତ ହୋଇଥାଏ । ଏଠାକୁ କେତେକ ସମୟରେ ଆସୁଥିବା ଅତିଥି ଅଭ୍ୟାଗତଙ୍କୁ ମଧ ମହାପ୍ରଭୁଙ୍କ ପ୍ରସାଦ ମିଳିଥାଏ । ଖରସ୍ରୋତା ନଦୀ କୂଳ ଜାତୀୟ ରାଜପଥ ନିକଟସ୍ଥ ଏହି ସ୍ଥାନଟି ଶ୍ରୀମଦନ ମୋହନଙ୍କ ବାସସ୍ଥଳୀ । ଏହାଙ୍କ ନିକଟରେ ଗାଁ' ମୁଣ୍ଡରେ ମାଆ ମଙ୍ଗଳା ବିରାଜମାନ । ପୂର୍ବରୁ ମା' ମଙ୍ଗଳାଙ୍କ ଘାଟ ଦେଇ ବ୍ରିଟିଶ୍ ସରକାରଙ୍କ ସମୟରୁ ବହୁ ଗାଡ଼ି ମଟର ଯାନବାହନ ଡଙ୍ଗାରେ ପାରି ହୋଇ ଖରସ୍ରୋତା ନଦୀ ଏପଟକୁ ଆସି ଜାତୀୟ ରାଜପଥରେ ଯାଇଥାନ୍ତି । କିନ୍ତୁ ବର୍ତ୍ତମାନ ଏହା ପୋଲ ହୋଇଗଲାଣି । ଆଉ ସେ ଘାଟ ନାହିଁ । ପୁରୁଣା ରାଜପଥ ବର୍ତ୍ତମାନ ନୂତନ ରାଜପଥରେ ପରିଣତ ହୋଇ ଖରସ୍ରୋତା ନଦୀ ଉପରେ ଏଠାରେ ୨ଟି ପୋଲରେ ଯାତାୟତ ହେଉଛି । ଶ୍ରୀଶ୍ରୀ ବାବା ମଦନମୋହନଙ୍କ ନିକଟସ୍ଥ ନଦୀକୂଳରେ ପୁରୁଣା ଓ ନବନିର୍ମିତ ଶିବ ମନ୍ଦିର ଅଛି । ଏହା ମଧ ସେହି ମଦନ ମୋହନଙ୍କ ସେବାୟତ ଦ୍ୱାରା ନିର୍ମିତ ହୋଇଛି । ମହନ୍ତ ମହାରାଜ ଏହାର ଦାୟିତ୍ୱ ମଧ ବୁଝନ୍ତି ।

ମଠରେ ମଦନ ମୋହନଙ୍କର ବହୁତ ସମ୍ପତ୍ତି ଅଛି । ମହାପ୍ରଭୁଙ୍କର ଜିଲ୍ଲାର ବହୁସ୍ଥାନରେ ଜମିବାଡ଼ି ରହିଛି । ବିଭିନ୍ନ ସ୍ଥାନରେ କର୍ମକର୍ତ୍ତା ଓ ସେବକମାନେ ଏହାର ଦାୟିତ୍ୱ ବୁଝିଥାନ୍ତି । ଏବଂ ପ୍ରତିବର୍ଷ ମଠର ସେବା କାର୍ଯ୍ୟରେ ଜମିରୁ ମିଳୁଥିବା ପ୍ରାପ୍ୟ ପୈଠ କରିଥାନ୍ତି । ଏହି ପ୍ରାପ୍ୟ ମଠର ଉନ୍ନତି ନୀତିକାନ୍ତି ଓ ସେବା କାର୍ଯ୍ୟ ଚାଲିଥାଏ । ବର୍ତ୍ତମାନ ଏହାର କେତେକ ବ୍ୟତିକ୍ରମ ଦେଖା ଦେଉଛି । ଯାହା ଫଳରେ ମଠର ଉନ୍ନତିରେ ବାଧା ସୃଷ୍ଟି ହେଉଛି ବୋଲି ଚଳନ୍ତି ମହନ୍ତ ମହାରାଜ କୁହନ୍ତି । ଲୋକମାନଙ୍କର ଚିନ୍ତାଧାରା ବଦଳି ଯାଇଛି । ପୂର୍ବପରି ଆଉ ଈଶ୍ୱର ପ୍ରେମ ଦେଖାଯାଉ ନାହିଁ । ଈଶ୍ୱର ସଂପତ୍ତିକୁ ନିଜର ବୋଲି କେତେକ ଭାବିଲେଣି । କିନ୍ତୁ ଏହା ଅପରିଣାମ ଦର୍ଶିତା । କଥାରେ ଅଛି ରାଜସ୍ୱ ଦେବସ୍ୱ ବ୍ରହ୍ମସ୍ୱକୁ କେହି ହଜମ କରି ପାରିନାହାଁନ୍ତି । ଯିଏ ଅବାଟରେ ଯିବ ସେ ନିଶ୍ଚିତ ତା'ର ଫଳ ଭୋଗିବ । ଈଶ୍ୱର ସବୁ ଦେଖୁଛନ୍ତି । ସବୁ ଜାଣୁଛନ୍ତି । ସମୟ ଆସିଲେ ତା'ର ଫଳ ମିଳିବ । ସଦ୍ୟ ଫଳନ୍ତି କଳିଯୁଗେ,

ସବୁଲୋକ ସମାନ ନୁହଁନ୍ତି । କେତେକ ବଦାନ୍ୟ ବ୍ୟକ୍ତି ଅଛନ୍ତି, ଯେଉଁମାନଙ୍କ ପାଇଁ ଧର୍ମ ଓ ଧର୍ମାନୁଷ୍ଠାନ ବଂଚିରହିଛି । ଏମାନେ ମଧ୍ୟ ଈଶ୍ୱରଙ୍କ ପରମ ଭକ୍ତ ଅଟନ୍ତି । ଏହିମାନେ ହିଁ ପ୍ରକୃତ ସେବକ । ସେଥିପାଇଁ ସତ୍ୟ ସାଇ କହିଛନ୍ତି- ମସ୍ତକକୁ ଜ୍ଞାନରେ, ହୃଦୟକୁ ପ୍ରେମରେ ଓ ହସ୍ତ ଦ୍ୱୟକୁ ସେବାରେ ନୟୋଜିତ କର, ତେବେ ଯାଇଁ ଈଶ୍ୱର କ'ଣ ଜାଣି ପାରିବ ଏବଂ ସେବାର ମହତ୍ୱ ବୁଝିପାରିବ ।

ମଦନମୋହନଙ୍କ ମଠ ସେବାରେ ବହୁ ପୁରାତନ ପରମ୍ପରା ରହିଆସିଛି । ଏଠାରେ ଦୈନନ୍ଦିନ ଓ ପୂଜାପାର୍ବଣରେ ଭଜନ, କୀର୍ତ୍ତନ, ନାମ ଯଜ୍ଞ ହୋଇ ଆସୁଛି । ଏଠାରେ ମଠାଧୀଶ ମହନ୍ତ ମହାରାଜମାନେ ପାରମ୍ପାରିକ ନୀତିରେ ଏହା ସବୁ କରିଥାନ୍ତି । ଏଠାକୁ ବହୁ ଶ୍ରଦ୍ଧାଳୁ ଆସନ୍ତି । ମଦନମୋହନଙ୍କୁ ଦର୍ଶନ କରିଥାନ୍ତି । ପ୍ରସାଦ ମଧ୍ୟ ପାଆନ୍ତି । ମଠ ପ୍ରତିଷ୍ଠା ହେବାର ଦଶ ପୁରୁଷ ଠାରୁ ଯଦି ଆମ୍ଭେ ଜାଣିବା, ତାହା ହେଲେ ମଠାଧୀଶ ମହନ୍ତ ମହାରାଜମାନଙ୍କର ବହୁତ ଜୀବନୀ କାହାଣୀ ଜାଣିପାରିବା । କେବଳ ଏଠାରେ ସେମାନଙ୍କର ଉପସ୍ଥିତି କଥା କୁହାଯାଉଛି । ପ୍ରଥମେ ମଠର ପ୍ରତିଷ୍ଠାତା ଗୋସ୍ୱାମୀ ସଦାଶିବ ଭାରତୀ ମହନ୍ତ ମହାରାଜଙ୍କ ସମୟରେ ହୋଇଥିଲା । ମଠ ଇତିହାସ କହେ ତା'ପରେ ୨ୟରେ ଗୋସ୍ୱାମୀ ଗରିବ ଭାରତୀ ମହନ୍ତ ମହାରାଜ, ତା'ପରେ ୩ୟରେ ଗୋସ୍ୱାମୀ ଦେଓ ଭାରତୀ ମହନ୍ତ ମହାରାଜ । ତା'ପରେ ୪ର୍ଥରେ ଗୋସ୍ୱାମୀ ପୁରୁଷୋତ୍ତମ ଭାରତୀ ମହନ୍ତ ମହାରାଜ, ୭ମରେ ଗୋସ୍ୱାମୀ ଲୋକନାଥ ଭାରତୀ ମହନ୍ତ ମହାରାଜ, ୮ମରେ ଗୋସ୍ୱାମୀ କୃଷ୍ଣଚନ୍ଦ୍ର ଭାରତୀ ମହନ୍ତ ମହାରାଜ, ୯ମରେ ଗୋସ୍ୱାମୀ ନବକିଶୋର ଭାରତୀ ମହନ୍ତ ମହାରାଜ । ବର୍ତ୍ତମାନ ୧୦ମ ସ୍ଥାନରେ ଚଳନ୍ତି ମହନ୍ତ ଗୋସ୍ୱାମୀ ଶିଶିର ଭାରତୀ ମହନ୍ତ ମହାରାଜ ତା/ ୦୮.୦୩.୧୯୯୧ ମସିହାରୁ ମଠର ଦାୟିତ୍ୱ ବୁଝି ଆସୁଛନ୍ତି । ସେ ଜଣେ ବିଭାଗ ଓଡ଼ିଶା ସରକାରଙ୍କ କାର୍ଯ୍ୟରତ ପ୍ରଧାନ ଶିକ୍ଷକ ଥିଲେ । ବହୁ ଉଚ୍ଚ ବିଦ୍ୟାଳୟମାନଙ୍କରେ ଶିକ୍ଷକତା କରି ଗତ କିଛି ଦିନ ହେଲା ସେ ଅବସର ଗ୍ରହଣ କରିଛନ୍ତି । ତାଙ୍କର ଶିକ୍ଷକତା ଜୀବନ ଅତି ପ୍ରଶଂସନୀୟ ଥିଲା । ଶିକ୍ଷକତା ସମୟରେ ମଠ କଥା ତୁଲାଉଥିଲେ । ବର୍ତ୍ତମାନ ମଧ୍ୟ ତାଙ୍କ ଦ୍ୱାରା ସବୁ କାର୍ଯ୍ୟ ଚାଲୁଛି । ତାଙ୍କର ନିଷ୍ଠା ଓ ପରାକାଷ୍ଠା ଅନ୍ୟକୁ ଆକର୍ଷିତ କରିଥାଏ । ତାଙ୍କ ଦ୍ୱାରା ଆମ୍ଭେ ମଧ୍ୟ ଅନୁପ୍ରାଣିତ ହୋଇପାରିଛୁ । ସେ ସର୍ବଦା ମଠରେ ଅବସ୍ଥାପନ କରିଥାନ୍ତି । ମହନ୍ତ ମହାରାଜ ମଠର ଦାୟିତ୍ୱ ବୁଝିବା ସହିତ ଖଣ୍ଡିତର ଗ୍ରାମରେ ପୂଜା ପାଉଥିବା ମା' ଘାଟ ମଙ୍ଗଳା ଓ ନୂତନ କରି ଗଢ଼ି ଉଠିଥିବା ଶିବମନ୍ଦିର ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମରେ ଜଡ଼ିତ ଥା'ନ୍ତି । ମଦନମୋହନ ମଠ ଖଣ୍ଡିତର ଏହାର ଏକ ସ୍ୱତନ୍ତ୍ର, ନୀତି, ନିୟମ ଅଛି ।

ଯାହା, ପ୍ରାୟ ଅନ୍ୟ କେଉଁଠାରେ ଥିବାର ଆମ୍ଭେ ଜାଣି ନାହୁଁ । ଏଠାରେ ମଠାଧିଶ ମହନ୍ତଙ୍କର ଦେହାନ୍ତ ହେଲେ, ସେମାନଙ୍କୁ ସମାଧି ପ୍ରଭୁ ମଦନ ମୋହନଙ୍କ ଡାହାଣ ପାର୍ଶ୍ୱରେ ଥିବା ସମାଧି ଗୃହରେ ସମାଧି ଦିଆଯାଇଥାଏ ଏବଂ ପ୍ରତିଦିନ ମହାପ୍ରଭୁ ମଦନମୋହନଙ୍କ ନିକଟରେ ପୂଜାରୀ ସେବକ ଅନ୍ନପ୍ରସାଦ ନୀତି ଲଗାଇଥାନ୍ତି । ବଂଶାନୁ ପରମ୍ପରା ଅନୁଯାୟୀ ପ୍ରତିଦିନ ମଧ୍ୟ ମହନ୍ତମାନଙ୍କ ସମାଧି ନିକଟରେ ଅନ୍ନ ଭୋଜନ ଦିଆଯାଇଥାଏ । ଯାହାକି ଏହା ଏକ ପ୍ରତିଦିନର ବ୍ୟୟ ବହୁଳ କାର୍ଯ୍ୟ । ତାହା କାର୍ଯ୍ୟରତ ମହନ୍ତ ମହାରାଜମାନଙ୍କ ଅଦ୍ୟାବଧି କରି ଆସୁଛନ୍ତି । ଏହି ମଠ ମଧ୍ୟରେ ଶିବ ମନ୍ଦିର ଅଛି । ମହାଦେବଙ୍କର ପ୍ରତି ପୂଜା ପାର୍ବଣ ଓ ମେଳା ଅନୁଷ୍ଠିତ ହୋଇଥାଏ ।

ମଦନମୋହନ ମଠ କେଉଟଲଗୁଆଁ ଖଣ୍ଡିତରଙ୍କର ବହୁ ନିଜସ୍ୱ ସଂପତ୍ତି ଅନେକ ସ୍ଥାନରେ ଅଛି । ଏଠାରେ ମଠର ଜମି ଓ କାର୍ଯ୍ୟାଳୟ ମଧ୍ୟ ଅଛି । ପ୍ରାୟ ଆମ୍ବ ଜଣାତରେ ବହୁ ଏକର ଜମି ଓ ଘର ବାଡ଼ି, ସୋଲପଟା ମୌଜା, ବର୍ତ୍ତମଣା ମୌଜା ବେଗନା ମୌଜା ଏବଂ ଓଚିନ୍ଦା ମୌଜା ଆଲଡ଼ା ମୌଜାରେ ଅଛି । ଅନ୍ୟ ସ୍ଥାପନମାନଙ୍କରେ ଥାଇପାରେ । ଖଣ୍ଡିତର ମୌଜାରେ ମଦନମୋହନଙ୍କ ଆଶ୍ରମସ୍ଥଳୀ । ଏଠାରେ ମଧ୍ୟ ବହୁଜମି ବାଡ଼ି ଅଛି । ପୂର୍ବରୁ ଏହି ସବୁ ସ୍ଥାନମାନଙ୍କରୁ ମଠ ଜମିବାଡ଼ିର ମାସୁଲ ଆଦାୟ ହୋଇ ମଠକୁ ଆସୁଥିଲା । ଏହି ସବୁ କାର୍ଯ୍ୟ ପାଇଁ ପ୍ରତି ମୌଜାରେ ମହନ୍ତଙ୍କର ଗୋଟିଏ କଚେରି ଘର ଥିଲା ଏବଂ ଏଠାରେ କେତେକ କର୍ମଚାରୀ ଥିଲେ । ଏମାନେ ମଠ ପ୍ରାପ୍ୟ ଆଦୟ କରୁଥିଲେ । ମହନ୍ତ ମହାରାଜ ଏସବୁ ସ୍ଥାନକୁ ଗଲେ ସେବକ କର୍ମଚାରୀମାନେ ମହନ୍ତଙ୍କ ସବୁ କଥା ବୁଝନ୍ତି ଏବଂ ମଠର ପ୍ରାପ୍ୟ ହିସାବ ମହନ୍ତଙ୍କୁ ଦିଅନ୍ତି । ବର୍ତ୍ତମାନ ପ୍ରାୟ ଏସବୁ ନାହିଁ । ମଠର ଜମି ବାଡ଼ି ଚାଷ କରୁଥିବା ଲୋକମାନେ ବର୍ତ୍ତମାନ ମଠର ପ୍ରାପ୍ୟ ଠିକ୍ ରୂପେ ଆଉ ଦେଉ ନଥିବାର ମହନ୍ତ କୁହନ୍ତି । ମଦନମୋହନଙ୍କ ଜମିବାଡ଼ିକୁ ଏମାନେ ନିଜସ୍ୱ ମନେ କରୁଛନ୍ତି । ପୂର୍ବ ପରି ମଠକୁ ଠିକ୍ ରୂପେ ଠାକୁରଙ୍କ ମାସୁଲ ବା ପ୍ରାପ୍ୟ ଦେଉ ନାହାଁନ୍ତି । ଏଥିପାଇଁ ବହୁସ୍ଥାନରେ ଜମି ଜମା ବିବାଦ ମାଲିମକଦମା ଚାଲିଥିବାର ଦେଖିବାକୁ ମିଳୁଛି । ବର୍ତ୍ତମାନ ଏପରି ହେବା ଦ୍ୱାରା ମଠର ପରମ୍ପରା, ମଠର ସେବା, ନୀତି, କାନ୍ତି, ପୂଜା, ପାର୍ବଣ କାର୍ଯ୍ୟରେ ବ୍ୟାଘାତ ଘଟୁଛି । କିନ୍ତୁ ବର୍ତ୍ତମାନର ମହନ୍ତ ମହାରାଜ ଗୋସ୍ୱାମୀ ଶିଶିର ଭାରତୀ, ତାଙ୍କର ନିଜସ୍ୱ ଅର୍ଥ ବ୍ୟୟ କରି ମଠର କାର୍ଯ୍ୟ ଯଥାରୀତି ତୁଲାଉଥିବାର ଦେଖିବାକୁ ମିଳୁଛି । ଏହା ଯଦି ହୁଏ, ତାହା ହେଲେ ଭବିଷ୍ୟତରେ ମଠରେ ସେବା କାର୍ଯ୍ୟ ହେବା ଅସମ୍ଭବ । ପୂର୍ବଭଳି ସବୁ ନୀତି କାନ୍ତି ହେବା କଷ୍ଟହେବ ବୋଲି ମହନ୍ତ ମହାରାଜ ମଧ୍ୟ କୁହନ୍ତି ।

ବିଭିନ୍ନ ସ୍ଥାନମାନଙ୍କ ମଧ୍ୟରେ ଆମ୍ଭ ଓଟିନ୍ଦା ମୌଜାରେ ଥିବା ମଦନମୋହନଙ୍କର ବହୁ ଜମି ବାଡ଼ି ଅଛି । ପୂର୍ବରୁ ମହନ୍ତ ଗୋସ୍ୱାମୀ ଶ୍ରୀଯୁକ୍ତ ନବକିଶୋର ଭାରତୀ ମହାରାଜଙ୍କ ସମୟରେ ଓଟିନ୍ଦା ପାଟଣା ସାହିରେ ଗୋଟିଏ ମହନ୍ତଙ୍କ କଚେରି ଘର ଥିଲା । ଯାହାକି ବର୍ତ୍ତମାନ ସେହି ସ୍ଥାନରେ ଶ୍ରୀ ଶ୍ରୀ ଜଗଦୀଶ୍ୱର ମହାଦେବ ଅଛନ୍ତି । ଏହି ମହାଦେବଙ୍କୁ ପୂର୍ବ ମହନ୍ତ ସ୍ଥାପନ କରିଥିଲେ । କିନ୍ତୁ ତାଙ୍କର ମନ୍ଦିର ନଥିଲା । ଏହା ଏକ ଖୋଲାସ୍ଥାନ ଥିଲା । ଏହା ପ୍ରାୟ ୨୦୦ ବର୍ଷର ଆସ୍ଥାନ । ଶ୍ରୀ ଶ୍ରୀ ଜଗଦୀଶ୍ୱରଙ୍କ ପରେ ହୋଇଥିବା ମନ୍ଦିର ଓ ତାଙ୍କ ଅବସ୍ଥିତି ବିଷୟରେ ଆମ୍ଭେ ପ୍ରଭୁଙ୍କ ଦାସ ଓଁ ଶ୍ରୀ ଶ୍ରୀ ଶିବ ଆରାଧନାରେ ଉଲ୍ଲେଖ କରି ଅଛୁ । ବର୍ତ୍ତମାନ ଗୋସ୍ୱାମୀ ଶିଶିର ଭାରତୀ ମହାରାଜାଙ୍କର ଗୋଟିଏ ପ୍ରଦତ୍ତ ପଟ୍ଟା ମିଳିଛି । ଏହା ମଦନମୋହନଙ୍କ ସଂପତ୍ତି ଶ୍ରୀ ଶ୍ରୀ ଜଗଦୀଶ୍ୱରଙ୍କ ବିଜେସ୍ଥଳୀ ପ୍ଲଟ୍ ନଂ ୧୦୯୧ରେ ଅଛି । ଏବଂ ଏହି ପଟ୍ଟାରେ ଅନ୍ୟ ଜମି କେତେକ ଅଛି । ଯାହାକି ବର୍ତ୍ତମାନ ଅନ୍ୟମାନେ ଜବରଦସ୍ତ ଦଖଲ କରି ଠାକୁରଙ୍କ ସଂପତ୍ତି ଉପରେ କେସ୍ କରିଛନ୍ତି ମହନ୍ତ ମହାରାଜ ଏଥିପାଇଁ କୋର୍ଟର ଦ୍ୱାରସ୍ଥ ହୋଇଛନ୍ତି । ଆମ୍ଭେ ତାଙ୍କର ଆଶ୍ରିତ । ତାଙ୍କ ଆଶ୍ରିତ ରହି ନିଜକୁ ଧନ୍ୟ ମନେ କରୁଅଛୁ । ତେଣୁ ଏହାର ବିଚାର ସବୁ ତାଙ୍କରି ହାତରେ ।

ଓଟିନ୍ଦା ପାଟଣା ସାହିର ମଠାଧିଶ ମହନ୍ତଙ୍କର କଚେରି ଘର ଥିଲା । ଏଠାରେ କେତେକ କର୍ମଚାରୀ ମଧ୍ୟ ନିଯୁକ୍ତି ପାଇଥିଲେ । କଟୁଆଳ ବୈକୁଣ୍ଠ ଭାରତୀ, କୋଷାଧକ୍ଷ ହରିପୁରୀ, ପରିଚାଳକ ଶ୍ୟାମସୁନ୍ଦର ମହାପାତ୍ର (ମୂଳାପାଳ), ଚୌକିଦାର ବାସୁମଳିକ, ସେବକ ଅଲେଖ ଭାରତୀ (ମାଗୁ ଭାରତୀ) ଏହିପରି କେତେକ କର୍ମଚାରୀ ଥିଲେ । ଯେଉଁମାନେ ପାଖ ପଡ଼ିଶା ଗ୍ରାମର ଓ ଏଠାକାର ମଠର ଥିବା ଜମି, ବାଡ଼ିର ପ୍ରାପ୍ୟ ଆଦାୟ କରି ତା'ର ହିସାବ ମଠକୁ ଦେଉଥିଲେ ।

ଅନ୍ୟ ମୌଜାର କର ଦାତା ଏଠାକୁ ଆସନ୍ତି । ମହନ୍ତଙ୍କ ଉପସ୍ଥିତ ସମୟରେ ନିଜର ଗୁହାରୀ ଜଣାନ୍ତି । ସେହି ସମୟରେ ମହନ୍ତ ନବ କିଶୋର ଭାରତୀଙ୍କର ମଧ୍ୟ ଏଠାରେ ମହାପ୍ରଭୁ ମଦନମୋହନଙ୍କ ଜମି ଉପରେ ମାଲି ମକଦ୍ଦମା ଚାଲିଥିଲା । ଯାହାକି ଠାକୁରଙ୍କ ଜମି ସେମାନେ କୁଟୀଳତା କରି ହାତେଇ ନେବାରେ ଜୟଲାଭ କରିଥିଲେ । ଏହି ପରିପ୍ରେକ୍ଷୀରେ ମହନ୍ତ ମହାରାଜ ଆଉ ଏଠାକୁ ଆସିଲେ ନାହିଁ । ତା' ପରେ ଧୀରେ ଧୀରେ, ସବୁ ଏଠାକାର ସ୍ଥିତି ଚାଲିଗଲା । ଏସବୁ କଥା ବାବ ଶ୍ରୀ ମଦନ ମୋହନଙ୍କୁ ସବୁ ଜଣା । ମଣିଷ ଯାହା କରେ ତାହା ନିଜ ଇଚ୍ଛାରେ ନୁହେଁ । ସବୁ ସେଇ ପ୍ରଭୁଙ୍କ ଇଚ୍ଛା ।

ଯେଉଁମାନେ ଈଶ୍ୱରଙ୍କୁ ଠକିଛନ୍ତି ସେମାନେ ନିଜେ ପର ମୁହୂର୍ତ୍ତରେ ତା'ର

ଫଳ ଭୋଗିଛନ୍ତି । ଈଶ୍ୱରଙ୍କୁ ଯିଏ ହୃଦୟ ସହ ନିବେଦନ କରେ ସେହିହ ତାଙ୍କର ସାନ୍ନିଧ୍ୟ ଲାଭ କରେ । କବିରଙ୍କ ଭାଷାରେ ଈଶ୍ୱରଙ୍କୁ ଯଦି ଡାକବାଜି ଯନ୍ତ୍ର ବଜାଇ ବଡ଼ ପାଟରେ ଡକାଯାଏ ତାହା ଈଶ୍ୱର ଶୁଣନ୍ତି । କିନ୍ତୁ ଯଦି ଗୋଟିଏ ପିମ୍ପୁଡ଼ି ପାଦରେ ଛୋଟିଆ ଘୁଙ୍ଗୁରଟିଏ ବାନ୍ଧି ଦିଆଯାଏ । ତାହା ମଧ୍ୟ ଘୁଙ୍ଗୁର ଶବ୍ଦ ଈଶ୍ୱର ଶୁଣି ପାରନ୍ତି । ଈଶ୍ୱର ହେଲେ ସର୍ବ ଶକ୍ତିମାନ । ବାବା ମଦନମୋହନଙ୍କ କୃପା ବା ଈଶ୍ୱରଙ୍କ କୃପା ସମସ୍ତଙ୍କୁ ପ୍ରାପ୍ତ ହେଉ, ଏହା ହିଁ ଆମ ଅନ୍ତରର କାମନା ।

ପରିଶେଷରେ ଗୋଟିଏ ମହାଦ୍ରୁମ ତଳେ ଛୋଟିଆ ଘାସଗଛ ଗୋଟିଏ ପିମ୍ପୁଡ଼ିକୁ ଛାଇ ଦେଲା ଭଳି ଆମ୍ଭର ଏ ପ୍ରୟାସ । ମଣିଷ ଜୀବନ କାଳ ମଧ୍ୟରେ ବହୁବାଧା ବିଘ୍ନ ସହ୍ୟ କରି ଆଗକୁ ଯାଇଥାଏ । ଆମ୍ଭେ ମଧ୍ୟ ସେହି ବାଟର ବାଟୋଇ ଶ୍ରୀ ଶ୍ରୀ ଜଗଦୀଶ୍ୱର ମହାଦେବଙ୍କୁ ଆଶ୍ରୟ କରି ତାଙ୍କରି ଆରଧନା ବଳରେ ଆମ୍ଭେ କିଛି ପ୍ରାପ୍ତ କରିପାରିଛୁ । ଶ୍ରୀ ଜଗଦୀଶ୍ୱରଙ୍କ ମୂଳକ୍ଷେତ୍ର ହେଉଛି ଶ୍ରୀ ଶ୍ରୀ ବାବା ମଦନମୋହନ । କାରଣ ତାଙ୍କ ପ୍ରଦତ୍ତ ଜମିପଟ୍ଟାରେ ହିଁ ତାଙ୍କ ନାମ ଉଲ୍ଲେଖ ଅଛି । ତାଙ୍କର ନାମ ପୂର୍ବରୁ ଏଠାରେ ସେ ସର୍ବେଶ୍ୱର ନାମରେ ପରିଚିତ ଥିଲେ । ବର୍ତ୍ତମାନର ଗୋସ୍ୱାମୀ ମହନ୍ତ ଶ୍ରୀଯୁକ୍ତ ଶିଶିର ଭାରତୀଙ୍କୁ କୋଟି କୋଟି ପ୍ରଣାମ । ସେ ତାଙ୍କର ପୂର୍ବଜମାନଙ୍କର କୀର୍ତ୍ତିକଳାପ, ତାଙ୍କ ଲେଖାରେ ବର୍ଣ୍ଣନା କରିଥିବେ । ଆମ୍ଭେ କିଛି ମାତ୍ର ଜାଣି ଯାହା ଜଣାଇଲୁ ଯଦି କିଛି ତ୍ରୁଟିଥାଏ ତାହାହେଲେ କ୍ଷମା ଭିକ୍ଷା କରୁଛୁ । ମୁଁ ମହନ୍ତ ମହାରାଜଙ୍କୁ ଅନୁରୋଧ କରିବି କିପରି ପୂର୍ବ ପରମ୍ପରା ଆଗାମୀ ଦିନର ଉତ୍ତରାଧିକାରୀ ମଠର ଭବିଷ୍ୟତ କଥା ଚିନ୍ତା କରି ଠିକ୍ ନିଷ୍ପତ୍ତି ନିଅନ୍ତୁ । ପରମ୍ପରା ବଞ୍ଚି ରହୁ । ଏହା ବଂଶାନୁକ୍ରମିକ ଭାବେ ଚାଲିଥିବା ମଠ ପରବର୍ତ୍ତୀ ପର୍ଯ୍ୟାୟ କିପରି ଚାଲିବ, ମଦନମୋହନଙ୍କୁ ସେବା କରିବାର ଭାଗ୍ୟ କାହାର ହେବ, ତାହା ହିଁ ଚଳନ୍ତି ମହନ୍ତ ଧାର୍ଯ୍ୟ କରିବେ ।

ଏଠାକୁ ଆସୁଥିବା ଶ୍ରଦ୍ଧାଳୁ, ଭକ୍ତ, ସେବକ ତଥା ମଠର ସମସ୍ତ କର୍ମକର୍ତ୍ତା ଏବଂ ମଠାଧିଶ ମହନ୍ତ ମହାରାଜଙ୍କର ଶ୍ରୀ ଶ୍ରୀ ମଦନମୋହନ, ପୂର୍ବଭଳି ଆଶୀର୍ବାଦ ରଖିଥାନ୍ତୁ । ଏହା ହିଁ ଆମ୍ଭର ପ୍ରାର୍ଥନା । ପରିଶେଷରେ ମୁଁ ମୋର ଏହି ସ୍ୱଳ୍ପ ଉପଲବ୍ଧ କାହାଣୀ 'ଅନୁଭବର ବିନ୍ଦୁ' ଲେଖାଟିକୁ ଗୋସ୍ୱାମୀ ଶିଶିର ଭାରତୀ ମହନ୍ତ ମହାରାଜାଙ୍କୁ ଅର୍ପଣ କଲି । ସିଏ ଜଗଦୀଶ୍ୱର ସିଏ ଜଗନ୍ନାଥ ସିଏ ମଦନମୋହନ ।

ଶ୍ରୀ ପଦ୍ମନାଭ ନାୟକ, ଶିକ୍ଷକ
ପ୍ରାଥମିକ ଶିକ୍ଷା ଓଡ଼ିଶା ସରକାର
ଗ୍ରା: ଓଚିନ୍ଦା, ପୋ: ପାଣିକୋଇଲି, ଜି: ଯାଜପୁର



# ମୋ’ ଦୃଷ୍ଟି ଓ ଦର୍ଶନରେ ଖଣ୍ଡିତର ମଠ

*ଶ୍ରୀ ହାଡ଼ିବନ୍ଧୁ ରଣା*

ରସୁଲପୁର ପଞ୍ଚାୟତ ସମିତର ପଞ୍ଚକୋଶୀ ପରିସୀମା ଉପରେ ଆଖି ପକାଇଲେ ବିଭିନ୍ନ ଗ୍ରାମରେ ଦେବଦେବୀ ଓ ଶିବମନ୍ଦିର ଅନେକ ଦେଖିବାକୁ ମିଳେ, ମାତ୍ର ମଠ ମନ୍ଦିର ଭିତରେ "ପୁରୁଷୋତ୍ତମପୁର ମଠ", ଦକ୍ଷିଣରେ ବ୍ରାହ୍ମଣୀ ନଦୀ କୂଳରେ "କାଳିକାହୁଡ଼ା ମଠ" ପଶ୍ଚିମରେ ଖରସ୍ରୋତା ନଦୀକୂଳରେ "ହାଣ୍ଡିଆ ମଠ", ପୂର୍ବ ପଶ୍ଚିମ କୋଣରେ "ଖଣ୍ଡିତର ମଠ", ମଧ୍ୟବର୍ତ୍ତୀ ସ୍ଥାନରେ "ବେତଣ୍ଡା ମଠ" ଏସବୁ କେଉଁକାଳରୁ ରାଜାରାଜୁଡ଼ାଙ୍କ ଅମଳରୁ ପ୍ରତିଷ୍ଠିତ ଯେ, ତାହାର ଅଭ୍ୟୁଦୟ ବା ସ୍ଥାପନ ସମୟ ସଠିକ୍ ଭାବେ ଉଲ୍ଲେଖ କରିବା ମୋ’ ପକ୍ଷେ ସମ୍ଭବ ନୁହେଁ । ଏତଦ୍ ବ୍ୟତୀତ ନରସିଂହପୁର ବା ହରିପୁରରେ ଅନେକଗୁଡ଼ିଏ ଛୋଟ ବଡ଼ ମଠ ଅଛି । ଏ ସମସ୍ତ ମଠର ସ୍ଥିତି ଓ ଖ୍ୟାତି ସଂପର୍କରେ ସମସ୍ତେ ଅବହିତ ଥିଲେ ମଧ୍ୟ ଉତ୍ପତ୍ତି ସଂପର୍କରେ ନିର୍ଦ୍ଦିଷ୍ଟ ଭାବେ ସାଧାରଣ ଲୋକେ ବିଶେଷ କିଛି ଜାଣନ୍ତି ନାହିଁ ।

ମୋ’ ମା’ଙ୍କ ମାମୁଁ ଘର ଖଣ୍ଡିତରରେ ହୋଇଥିବାରୁ ସେ ଗ୍ରାମର "ମଙ୍ଗଳା" ଓ ଖଣ୍ଡିତର ମଦନ ମୋହନ ମଠରେ ବିଭିନ୍ନ ପର୍ବପର୍ବାଣିରେ ଅନୁଷ୍ଠିତ ହୋଇଥିବା ଉତ୍ସବମାନ ଦେଖିବା ପାଇଁ ସେ (ଜାଗାକୁ) ଗ୍ରାମକୁ ଯାଏ । ଏ ଗ୍ରାମର ୨ଟି ଦର୍ଶନୀୟ ଓ ଆକର୍ଷଣୀୟ କ୍ଷେତ୍ରରେ ପ୍ରତିଷ୍ଠିତ ମା’ ଘାଟମଙ୍ଗଳାଙ୍କ କୀର୍ତ୍ତି ଓ ଖ୍ୟାତି ଥିବାରୁ ପ୍ରାୟ ଚତୁଃପାର୍ଶ୍ୱର ଗ୍ରାମରେ ବସବାସ କରୁଥିବା ଲୋକମାନେ କିଛି ଦୁଃଖ ଦୁର୍ଦ୍ଦଶାର ସମ୍ମୁଖୀନ ହେବା ମାତ୍ରେ "ନିରାଶ୍ରୟ ମାଂ ମା’ ମଙ୍ଗଳା" ରକ୍ଷାକର ବୋଲି ଶରଣାପନ୍ନ ହୋଇ ଯାଆନ୍ତି । ସେଇ ଘରେ ବସି ଦୁଃଖ ଜଣାଇ କିଛି ମାନସିକ କରି ଦିଅନ୍ତି । କିଛି ଉପାୟ ନଥାଏ । ଡାକ୍ତରଙ୍କ ଅଭାବ ଥାଏ । ଗ୍ରାମ ବୈଦ୍ୟ / କବିରାଜ ନହେଲେ ମା’ ମଙ୍ଗଳା ରକ୍ଷାକର ବୋଲି ଘରେ ଥାଇ ଜୁହାର ପକାଇ ଦୁଃଖ ଜଣାନ୍ତି । ବିଶେଷ କରି ମଙ୍ଗଳବାର ଓ. ଶନିବାରରେ ଆର୍ତ୍ତଜନଙ୍କର ଖୁବ୍ ଗହଳି ଲାଗେ । ମାନସିକ ପୂରଣ ହେଲେ ଭୋଗରାଗ, ଧୂପଦୀପ ଧରି ସେ ସ୍ଥାନରେ ପହଞ୍ଚିଥାନ୍ତି । ଏ ହେଲା ମା’ ମଙ୍ଗଳା କୀର୍ତ୍ତି କାହାଣୀ ସଂପର୍କରେ ସ୍ମୃତି ଅନୁଭୂତି ।

ସେଇ ଗ୍ରାମର ପୂର୍ବ ଦିଗରେ ସେ କାଳର ଜଗନ୍ନାଥ ସଡ଼କ, ଉତ୍ତର ଦିଗରେ ଚିର ଖରସ୍ରୋତାର ଗଭୀର ଜଳରାଶୀ, ପଶ୍ଚିମରେ ବହୁ ଜନବସତି, ଦକ୍ଷିଣରେ ବିଭିନ୍ନ

ଫଳ ଫୁଲ ବଗିଚାର ମଧ୍ୟବର୍ତ୍ତୀ ସ୍ଥଳରେ ତ୍ରିଭଙ୍ଗୀ ଚାହାଣିରେ ରତ୍ନ ସିଂହାସନା ରୁଢ଼ ପ୍ରଭୁ ମଦନମୋହନଜୀଉଙ୍କ ସୁଶୋଭିତ ବିଗ୍ରହ । ତାଙ୍କ ଆଖିରେ ଥରେ ଆଖି ମିଳାଇ ଦେଖିଲେ ସେ ଜାଗାରୁ ସେହି ମହିମାମୟ ପ୍ରଭୁଙ୍କ ଆକର୍ଷଣର ମଣିଷ କେବେ ଅପସରି ଆସିବାକୁ ପ୍ରୟାସ କହିବ ନାହିଁ । ମଠର ଚତୁଃପାର୍ଶ୍ୱରେ ଶୋଭିତ ବୃକ୍ଷରାଜି ଯେପରି ମନୋମୁଗ୍ଧକର ମଦନମୋହନଜୀଉଙ୍କ ଆକର୍ଷଣ ସେହିପରି ବିଶ୍ଳେଷଣର ଗନ୍ତାଘର । ଏ ହେଲା ଚତୁଃପାର୍ଶ୍ୱରେ ଅନୁଭୂତି, କିନ୍ତୁ ଆଉଟିକେ ଭିତରକୁ ପ୍ରବେଶ କଲେ ଯେଉଁ ସେବକ ମହନ୍ତ ମହାରାଜଙ୍କ ଦର୍ଶନ ମିଳେ ସେ ହେଉଛନ୍ତି ଅତିପ୍ରିୟ ଜ୍ଞାନଦୀପ୍ତ, ଦୂରଦ୍ରଷ୍ଟା ଓ ସାହିତ୍ୟ, ସଙ୍ଗୀତ, ସଂସ୍କୃତି ସଂପନ୍ନ ବ୍ୟକ୍ତିତ୍ୱ । ସେଠାରେ ବର୍ଷକ ବାରମାସ ବିଭିନ୍ନ ପର୍ବପର୍ବାଣିରେ ଭଜନ, ଜଣାଣ, ପାଲା, ନାଟକ ପ୍ରଭୃତି କାର୍ଯ୍ୟକ୍ରମ ସଂପାଦିତ ହୁଏ । କାରଣ ମହନ୍ତ ମହାରାଜ ହେଉଛନ୍ତି ଓଡ଼ିଶାର ଜଣେ ବିଶିଷ୍ଟ କଳାକାର, ବାଳକୃଷ୍ଣ ଦାଶଙ୍କ ସମସାମୟିକ ବେତାର ଶିଳ୍ପୀ । ତାଙ୍କ ସଂସ୍ପର୍ଶରେ ଯିଏ ଆସିଛି ସେ କଳାକାରଟିଏ ହୋଇଯାଇଛି । ସେତେବେଳେ ଆମ ଅଞ୍ଚଳରେ ଗୋଟିଏ ବିଖ୍ୟାତ ଥିଏଟର ପାର୍ଟି ଥିଲା । ଯାହାର ସତ୍ତ୍ୱାଧିକାରୀ ଥିଲେ କୁରାଂଶ ଜମିଦାର ପରିବାରର ଶ୍ରୀଯୁକ୍ତ ଯୋଗେନ୍ଦ୍ର ନାଥ ପଣ୍ଡା । ସେ ଯେଉଁ ଥିଏଟର ପାର୍ଟିଟି କରିଥିଲେ ସେଥିରେ ଆମ ଅଞ୍ଚଳରୁ, ଅଞ୍ଚଳ ବାହାରୁ ଅନେକ ଶିକ୍ଷିତ ବ୍ୟକ୍ତି ସଂପୃକ୍ତ ଥିଲେ । ଏ ସମସ୍ତେ ଶିକ୍ଷିତ ଓ ଜଣେଜଣେ ଦକ୍ଷ କଳାକାର । ବର୍ତ୍ତମାନର ଲୋକମାନେ ଶୁଣିଲେ ଆଶ୍ଚର୍ଯ୍ୟ ହେବେ । କାରଣ ସେ ଦଳର ସଂଗୀତ ଶିକ୍ଷକ ଥିଲେ ସ୍ୱାଧୀନତା ସଂଗ୍ରାମୀ- ଶ୍ରୀଯୁକ୍ତ ଗୋବର୍ଦ୍ଧନ ମହାନ୍ତି ଓ ଗୋକୁଳି ମହାନ୍ତି । ଏ ହେଉଛନ୍ତି ଦୁଇଭାଇ । ଘର ଯାଜପୁର ।

ମଠ ପରିସରଟି ଖୁବ୍ ପ୍ରଶସ୍ତ ଥିଲା । ପରିବେଶ ଉତ୍ତମ ଥିଲା । ଖାଦ୍ୟପେୟର କିଛି ଅଭାବ ନଥିଲା ।

ଏହି କାଯ୍ୟକ୍ରମ ବର୍ଷର ଅଧିକାଂଶ ସମୟ ଲାଗି ରହିବାରୁ ସେ ଗ୍ରାମର କେତେକ ଆଗ୍ରହୀ ଯୁବକ ଏଥିରେ ଯୋଗ ଦାନ କରି କଳାକାର ହୋଇ ଯାଇଥିଲେ । ସେ ଦଳରେ ସେତେବେଳେ ୧୨ ଜଣ ସ୍ତ୍ରୀଲୋକ ଅଭିନୟ କରୁଥିଲେ । ତେଣୁ ନାଟକ ପରିବେଷଣ ଖୁବ୍ ଜୀବନ୍ତ ହୋଇଉଠୁଥିଲା ।

ଏଥିପାଇଁ ଖୁବ୍ ଦକ୍ଷ ଅଭିନେତା ଓ ଆଗ୍ରହୀ ବ୍ୟକ୍ତି ଏଥିରେ ମିଶି ଅଭିନୟ କରିବାକୁ ଆଗେଇ ଆସିଥିଲେ । ସମସ୍ତେ ଜାଣନ୍ତି ମାଷ୍ଟର ମାଣିଆଙ୍କୁ । ସେ ମହାଶୟ ହରିପୁରକୁ ଯାତ୍ରା ଶିଖାଇବା ପାଇଁ ଆସିଥିଲେ ମଧ୍ୟ ଏଭଳି ବିଖ୍ୟାତ ଦଳର ସୁନାମ ଶୁଣି ଏଠିକି ମଧ୍ୟ ଆସୁଥିଲେ । ଠିକ୍ ସେତିକି ବେଳେ ବୈଷ୍ଣବ ପାଣି ଯାହାଙ୍କ ସୁନାମ ଚତୁର୍ଦ୍ଦିଗରେ ବ୍ୟାପି ଯାଇଥିଲା ସେ ମହାଶୟ ସେତେବେଳେ ଗୋଟିଏ ରଜକୀକୁ

ରଖିଥିବାରୁ ଗ୍ରାମରେ ରହି ପାରି ନଥିଲେ । ତେଣୁ ସେ ଧର୍ମଶାଳାରେ ଘରଟିଏ ନେଇ ରହୁଥିଲେ । ଏ ଦଳର ସୁନାମ ଶୁଣି ମଝିରେ ମଝିରେ ଆସି କିଛି ପରାମର୍ଶ ଦେଉଥିଲେ । ଆବଶ୍ୟକ ଗୀତ ମଧ୍ୟ ଲେଖି ଦେଉଥିଲେ । ଦଳର ସୁନାମ ଶୁଣି ରାହାମ୍ମା, ସଦାନନ୍ଦପୁର, ଚଣ୍ଡୀପୁର, ଅବଦଲପୁର, ଦେଓଦା ବାସୁଦେବପୁର, ବଡ଼ଚଣାର ନୂଆ ଶାସନ, କାଦୁଆମାଗୁରା କେଶବ ବାବୁ, ମାଧବ ବାବୁ ଏମିତି କେତେ ଯେ ଶିକ୍ଷିତ ଓ ଦକ୍ଷ ପ୍ରତିଭାସପନ୍ନ ଲୋକ ଏଥିରେ ଅଂଶ ଗ୍ରହଣ କରିଥିଲେ । ସେତେବେଳେ ମହନ୍ତ ମହାରାଜଙ୍କର ମଠର ଥିଏଟର ଦଳର କୀର୍ତ୍ତି କାହାଣୀ ଖୁବ୍ ପ୍ରଶଂସନୀୟ ହୋଇ ଉଠିଥିଲା ।

ପରବର୍ତ୍ତୀ ଅବସ୍ଥାରେ ନୃତ୍ୟଶିଳ୍ପୀ, ଶିକ୍ଷାଦାତା ଭାବେ ଯିଏ ସାରା ଭାରତରେ ଓ ଭାରତ ବାହାରେ ପ୍ରଶଂସାର ଅଧିକାରୀ ହୋଇପାରିଥିଲେ । ସେଇ କେଳୁ ଚରଣ ମହାପାତ୍ର, ଯୋଗୀ ପଣ୍ଡାଙ୍କର ଏଇ ଦଳରେ ନାଟୁଆ ବାଳକ ଭାବରେ କାର୍ଯ୍ୟ କରୁଥିଲା ।

ବର୍ତ୍ତମାନ ମନେପଡୁଥିବା ସେ ସେତେବେଳର କଳାକାରମାନେ ହେଲେ ଶିକ୍ଷକ ଗୋବର୍ଦ୍ଧନ ମହାନ୍ତି, ଶିକ୍ଷକ ଗୋକୁଳି ଚରଣ ମହାନ୍ତି, କଣ୍ଟାବଣିଆର ଯଦୁନାଥ ଶତପଥୀ, କେଶବ ଶତପଥୀ ଓ ମାଧବ ଶତପଥୀ, ନୂଆ ଶାସନର ଦ୍ୱାରିକା ନାଥ ମିଶ୍ର, ଅଭିନେତା ଭାବରେ ଦେଓଦା ବାସୁଦେବ ପାଢ଼ୀ, ଚଣ୍ଡୀପୁର ମହେଶ୍ୱର ପଣ୍ଡା (ମିଛୁଆନା), ଚଣ୍ଡୀପୁର କୃଷ୍ଣଚନ୍ଦ୍ର ସାହୁ, ରାହାମ୍ମା- ଗୋବିନ୍ଦ ଚନ୍ଦ୍ର ମହାନ୍ତି, ଗରୁଆଳ ବନମାଳୀ ବାରିକ, ଅବଦଲପୁରର (ଯୋଗୀ ବାବୁଙ୍କର ବନ୍ଧୁ) ମିର୍ଜାପୁରରୁ ସାହୁ ପରିବାରର ୪/୫ ଜଣ ଏମିତି କେତେଯେ ଥିଲେ ତାହା ଏବେ ସଂପୂର୍ଣ୍ଣ ମନେ ପଡୁନାହିଁ ।

ସହଯୋଗ କରୁଥିବା ବା ପ୍ରଶଂସା କରୁଥିବା ଲୋକମାନଙ୍କ ମଧ୍ୟରେ ଥିଲେ ସ୍ୱାଧୀନତା ସଂଗ୍ରାମୀ ଦାଶରଥୀ ମହାନ୍ତି, ଅଭିନେତା ପୀତାମ୍ବର ମହାନ୍ତି, ସଦାନନ୍ଦପୁର ରାହାମ୍ମାରେ ରହୁଥିବା ଅଭିନେତା ଡାକ୍ତର ହାରବାବୁ ।

ଏ ଲିଖିତ ପତ୍ର ପଢ଼ିବା ପରେ କୌଣସି ନା କୌଣସି ଲୋକ ମନରେ ପ୍ରଶ୍ନ ଉଠିବ ଏ ଲୋକ ଏତେକଥା କିମିତି ଜାଣିଲେ ? ଏହାର ଉତ୍ତର ହେଉଛି- ମୋର ବୟସ ବର୍ତ୍ତମାନ ୮୪ । ମୁଁ ୧୯୩୭ ମସିହାରେ ଜନ୍ମ । ମୁଁ ଓ ମୋ' ପରିବାର ବାପା, ସାନ ବାପା ଜଣେ ଜଣେ କଳାକାର !

ଏହି ଦଳଟି ୧୯୪୭ ମସିହା କାର୍ଯ୍ୟ କରୁଥିଲା ଏହି ଅନୁଷ୍ଠାନର ଅନେକ କଳାକାର ୨୦୧୨ ମସିହା ପର୍ଯ୍ୟନ୍ତ ମୋ'ସହିତ ମିଶୁଥିଲେ । କାରଣ ମୋ' ବାପା

ଥିଲେ ଜଣେ କଳାକାର । ମୁଁ ଜଣେ କଳାକାର ସଂଗ୍ରାହକ ଓ ଲେଖକ ତଥା ଏ ଦଳରେ ସଂପୃକ୍ତ ଥିବା ୫/୬ ଜଣ କଳାକାର ମୋ' ସହିତ ମିଶିଥିଲେ । ସେମାନେ ୨୦୧୫/୧୬ ପର୍ଯ୍ୟନ୍ତ ବଞ୍ଚିଥିଲେ । ଏହି ବିଦ୍ୟାଟି ମୋ' ପାଇଁ ଖୁବ୍ ପ୍ରିୟ ହୋଇଥିବାରୁ କୌତୂହଳ ସହିତ ମୋ' ସହିତ ମିଶି ସବୁ କାହାଣୀ ଲେଖୁଥିଲେ । ମୋ' ବାପା ସେ ଗ୍ରାମର ଭାଣିଜୀ ଜ୍ୱାଇଁ ସଂଗୀତଜ୍ଞ ହୋଇଥିବାରୁ ମହନ୍ତ ମହାରାଜଙ୍କ ସହିତ ମିଶୁଥିଲେ । ମୁଁ ଯେତେବେଳେ ୧୯୭୦ ମସିହାରେ ବନ୍ଧଡ଼ିହ ସ୍କୁଲରୁ ଖଣ୍ଡିତର ସ୍କୁଲକୁ ବଦଳି ହୋଇ ଆସିଲି ସେତେବେଳେ ମହନ୍ତ ମହାରାଜ ସେ ସ୍କୁଲର ଚେୟାରମ୍ୟାନ୍ ଥିଲେ । ସେ ମୋ' ସଂପର୍କରେ ଜାଣି ମୋତେ ଶ୍ରଦ୍ଧା ଦେଲେ । ଖଣ୍ଡିତର ମୁଁ ଯେତେବେଳେ କେଉଟଲଗୁଆଁ ସ୍କୁଲକୁ ଗଲି ସେଠାରେ ପ୍ରତିଦିନ ୪ଟା ବେଳେ ତାଙ୍କ ସହିତ ମିଶିଲି । ମୋତେ ସେ ପିଲାଭଳି ଭଲ ପାଉଥିବାରୁ ତାଙ୍କ ମଠକୁ ଡାକନ୍ତି । ମୁଁ ଛୁଟି ଦିନମାନଙ୍କରେ ମଠକୁ ଯାଏ । ସେ ମୋତେ ଦେଖିବା ମାତ୍ରେ ପୂଜାରୀକୁ କହି ମୋ' ପାଇଁ ପ୍ରସାଦର ବ୍ୟବସ୍ଥା କରନ୍ତି । ପାଖାପାଖି ବସି ପ୍ରସାଦ ପାଇ କିଛି ସମୟପରେ ତାଙ୍କ ଲେଖାକୁ ସ୍ୱର ଦେଇ ବୋଲିବା ପାଇଁ ମୋତେ ଖାତାଟି ଦିଅନ୍ତି । ମଠରେ ଥିବା ହାରମୋନିୟମ୍ ବଜାଇ ତାଙ୍କ ଲିଖିତ ଗୀତକୁ ମୋ' ସ୍ୱରରେ ଗାଇ ଶୁଣାଏ । ଭାରି ଖୁସି ହୁଅନ୍ତି । ସେ ମଠ ଓ ବଂଶର ଅନେକ କୀର୍ତ୍ତି ଗାଥା ଶୁଣାନ୍ତି । ୩/୪ ଘଣ୍ଟା ତାଙ୍କ ସହିତ କଟାଇ ମୁଁ ଫେରିଆସେ ।

ତାଙ୍କରି ପ୍ରସ୍ତବ ଓ ଆଲୋଚନା କ୍ରମେ ଖରସ୍ରୋତା ନଦୀକୂଳେ (କେଉଟଲଗୁଆଁ) ପରସର ମଧ୍ୟରେ "ମଣିପୀଠ"ର ଜନ୍ମ ଦେଇଥିଲା ।

ଏମିତି କେତେ କ'ଣ ଇତିହାସ ଅଛି ତାହା ବର୍ଣ୍ଣନା କରିବା କଷ୍ଟ ।

ଖଣ୍ଡିତର ଘାଟମଙ୍ଗଳାଙ୍କ ପାଖରେ ଦୋଳପୂର୍ଣ୍ଣିମା ପରେ ଗୋଟିଏ ଦିନ ଅନ୍ତରରେ ଚତୁଃପାର୍ଶ୍ୱ ଗ୍ରାମର ଅନେକ ରାଧାକୃଷ୍ଣ ବିମାନ ନେଇ ମେଳଣଟିଏ ବସେ । ଏହା ବିଭିନ୍ନ ଦୃଷ୍ଟିରୁ ଖୁବ୍ ଆକର୍ଷଣୀୟ ହୁଏ । ଏହା କେବଳ ଦେବତାମାନଙ୍କ ମିଳନ ନୁହେଁ, ଏହା ଗୋଟିଏ ବନ୍ଧୁମିଳନ ଉତ୍ସବ ବୋଲି ମନେହୁଏ ।

ଆମ ଗ୍ରାମର ଥିବା "ରାଧା ଗୋପୀନାଥ" ସେ ମେଳଣକୁ ଯାଆନ୍ତି । ସେଠାରେ ରାତି ୧୦ଟାରୁ ପରଦିନ ୧୦ଟା ପର୍ଯ୍ୟନ୍ତ ବସେ । ଘଣ୍ଟ, ଘଣ୍ଟା, ସଂକୀର୍ତ୍ତନ, ବାଡ଼ି ଖେଳ, ଷେଣ୍ଢ ଲଢ଼େଇ ହୁଏ । ଏଭଳି ଅନେକ ଖେଳ, ବାଣ, ନିଶାଣ ଖୁବ୍ ଯାକଯମକରେ ମେଳଣଟି ହୁଏ । ଏଇ ସୁଯୋଗରେ ଦୂର ଦୂରାନ୍ତରରୁ ଆସିଥିବା ବନ୍ଧୁମାନଙ୍କ ସହିତ ସାକ୍ଷାତ୍, ଆଳାପ, ଆଲୋଚନା ଖୁବ୍ ଆନନ୍ଦଦାୟକ ହୁଏ । ଏହା ଗୋଟିଏ ବନ୍ଧୁମିଳନ କ୍ଷେତ୍ର କହିଲେ ଅତ୍ୟୁକ୍ତି ହେବନାହିଁ ।

ବିଶେଷ କରି ପ୍ରତ୍ୟେକ ବିମାନ ରୋଷଣୀ କରିଯାଇଥିବା ବେଳେ ଖୁବ୍ ସୁନ୍ଦର ଭାବରେ ସଜା ଯାଇଥିବା ବିମାନଗୁଡ଼ିକ ସମ୍ମୁଖରେ ସେ ଗ୍ରାମର ସଂକୀର୍ତ୍ତନିଆ ଭାଇମାନେ ନାଲି ନେଳୀ ଅବିର ଉଡ଼ାଇ ଯେଉଁ ଗୀତ ବୋଲୁଥାନ୍ତି ତାକୁ ଶୁଣିଲେ କେହି ସେ ସ୍ଥାନ ଛାଡ଼ି ଯିବାକୁ ଇଚ୍ଛା କରିବ ନାହିଁ ।

ଆମ ଗ୍ରାମର ବିମାନଟି ସାଜସଜାରେ ଏତେ ଉନ୍ନତ ନହେଲେ ମଧ ଅସୁନ୍ଦର ନୁହେଁ । ସବୁକୁ ସୁନ୍ଦର ଓ ଆକର୍ଷଣୀୟ କରିଦିଏ ଆମ ଗ୍ରାମ ସଂକୀର୍ତ୍ତନ ଭାଇମାନଙ୍କ ସୁମଧୁର ସ୍ୱର, ତାଳ, ବାଜା ଖୁବ୍ ସରସ ହୁଏ ବୋଲି ଲୋକେ କହନ୍ତି । ମହନ୍ତ ମହାରାଜ ଏ ମେଳନର ମୁଖ୍ୟ ପରିଚାଳକ ଏବଂ ଆମ ଗ୍ରାମର ଅନେକ ଲୋକ ତାଙ୍କର ଜଣାଶୁଣା । ଆମ ଗ୍ରାମର ବିମାନ ପାଖରେ ଛିଡ଼ା ହୋଇ ଘଣ୍ଟାଘଣ୍ଟା ଧରି ଆନନ୍ଦ ଅନୁଭବ କରନ୍ତି । ମୋତେ ବରାଦ କରନ୍ତି ହୋରୀ ଗୀତ ଗାଇବାକୁ । ମୁଁ ବିଭିନ୍ନ ଲେଖକଙ୍କ ଲେଖା ଓ ନିଜ ଲେଖା ଗୀତକୁ ନିଜ ସ୍ୱରରେ ଗାନ କଲେ ତାହା ଖୁବ୍ ରସସିକ୍ତ ହୁଏ । କେହି ସେ ସ୍ଥାନରୁ ଛାଡ଼ି ଯାଇପାରନ୍ତି ନାହିଁ । କାରଣ ଆମର ସ୍ୱତନ୍ତ୍ର ଲୋଖା, ସ୍ୱତନ୍ତ୍ର ସ୍ୱର ଓ ଏ ଅଞ୍ଚଳର ବିଖ୍ୟାତ ମୃଦଙ୍ଗ ଚାଳକଙ୍କ ଭାବଭଙ୍ଗୀ ସଙ୍ଗୀତକୁ ଯେ ଶୁଣେ ସେ ମୁଗ୍ଧ ହୋଇଯାଏ । ମହନ୍ତ ମହାରାଜ ଆମ ପାଖରେ ଦୁଇ ଘଣ୍ଟା ଛିଡ଼ା ହୋଇ ରହି ଗୀତକୁ ଶୁଣନ୍ତି ।

ସେତେବେଳ ସମୟରେ ଖଣ୍ଡିତର ମହାତ୍ମ୍ୟ କହିଲେ ଘାଟମଙ୍ଗଳା, ମଠ ମନ୍ଦିର ଏବଂ ମଠରେ ପ୍ରସ୍ତୁତ ନାଟକ ମନସା ପୂଜା (ବାଞ୍ଛାନିଧି ପଣ୍ଡାଙ୍କ ରଚିତ) ହୋଇ ମଙ୍ଗଳାଙ୍କ ସମ୍ମୁଖରେ ଅନ୍ତତଃ ଦୁଇ ଥର ମଞ୍ଚସ୍ଥ ହେଉଥିବାରୁ ସେ ସ୍ଥାନ ଅଞ୍ଚଳବାସୀଙ୍କୁ ଆନନ୍ଦ ଦିଏ । ଏ ଦୃଷ୍ଟିରୁ ବିଭିନ୍ନ ଦରକୁ ବିଚାର କଲେ ଜଣାଯାଏ ମହନ୍ତ ମହାରାଜ ଯାହା ଚାହୁଁଥିଲେ ତାହା କରିପାରୁଥିଲେ । "ସମୟ ବଡ଼ ବଳବାନ" ଏଇ ଖଣ୍ଡ ବାକ୍ୟଟିର ତାତ୍ପର୍ଯ୍ୟ ଏତେ ଗୁରୁତ୍ୱପୂର୍ଣ୍ଣ ଯେ ତାହା କେତେବେଳେ ମନକୁ ଆନନ୍ଦରେ ଉତ୍ଫୁଲ୍ଲିତ କରିଦିଏ ତ ଆଉ କେତେବେଳେ ମନ, ପ୍ରାଣକୁ ଆଶଙ୍କାୟିତ କରିଦିଏ ।

ଏ କ୍ଷେତ୍ରରେ ଉଦୟ- ଅସ୍ତ, କାଳର ଘଟଣାବଳୀକୁ ବାପାଙ୍କ ପାଖରୁ ମୁଁ ଶୁଣିଥିଲି, ଜାଣିଥିଲି ଓ ପରେ ପ୍ରତ୍ୟେକ୍ଷ ଭାବେ ଅନୁଭବ କଲି । ଏ ସବୁ ଉଲ୍ଲେଖ କରିବାକୁ ମୁଁ ପ୍ରାସଙ୍ଗିକ ମନେ କରୁନାହିଁ, ତେବେ ସଂକ୍ଷେପରେ ଗୋଟିଏ ଉଦାହରଣ ଦେଉଛି- ମତେ ସେ ଦିନ ମହନ୍ତ ମହାରାଜ କିଛି ସମୟ ଦୁଃଖ, ସୁଖର ଆଲୋଚନା କରି କଟେଇବାକୁ ଡାକିଥାନ୍ତି । ମୋ' ପାଇଁ ପ୍ରସାଦ ବ୍ୟବସ୍ଥା ହୋଇଥାଏ । ମୁଁ ମଠ ଭିତରେ ପଶିବା ମାତ୍ରେ ମହନ୍ତ ମହାରାଜ ଜଣେ ଅତିଥିଙ୍କୁ ଗେଟ ପାଖରେ ବିଦାୟ

ଦେଉଥାନ୍ତି । ସେ ମହାତ୍ମା ଆମ ଗ୍ରାମର ହିସାବରେ ମୋ'ର ମାମୁଁ ହେଉଥିବାରୁ ସେ ବାପାଙ୍କର ପ୍ରିୟ ମଧ୍ୟ ତେଣୁ ମୁଁ ତାଙ୍କୁ ଖୁବ୍ ସମ୍ମାନର ସହିତ ପ୍ରଣାମ ଜଣାଇଲି । ସେ ମୋତେ ଓ ମୋ' ପରିବାରକୁ ଭଲଭାବରେ ଜାଣନ୍ତି । ବିଶେଷ କରି ବାପାଙ୍କ ସହିତ ତାଙ୍କର ଖୁବ୍ ଆନ୍ତରିକତା ଥାଏ ବୋଲି ମୁଁ ଜାଣେ । ସେ ମହାଶୟ ଚାଲିଗଲା ପରେ ମହନ୍ତ ମହାରାଜ ଓ ମୁଁ ତାଙ୍କ ବୈଠକଖାନାରେ ବସିଲୁ । ମତେ ଖୁବ୍ ପାଖରେ ବସାଇଲେ । ମୋ'ର ମହନ୍ତ ମହାରାଜଙ୍କ ପ୍ରତି ଭୟଥାଏ ଓ ନଥାଏ । ମୋତେ ଅଫୁରନ୍ତ ଶ୍ରଦ୍ଧା ଦେଉଥିବା ଲୋକଙ୍କୁ ମୁଁ ଭୟ କାହିଁକି କରିବି ?

ବୟସର ବ୍ୟବଧାନ ଓ ସେଭଳି ଜଣେ ଆମ ଅଞ୍ଚଳର ଖ୍ୟାତିସଂପନ୍ନ ଲୋକଙ୍କ ସହିତ ମୁଁ ଖୁବ୍ ସମ୍ଭ୍ରମ ରକ୍ଷାକରି ପ୍ରଥମେ ତାଙ୍କର ଅନୁମତି ଚାହିଁଲି । ମୁଁ କହିଲି ଆଜ୍ଞା ଏ ଭଦ୍ର ବ୍ୟକ୍ତିଙ୍କ ସଂପର୍କରେ ମୋର ଜାଣିବା ପାଇଁ ଇଚ୍ଛା ହେଉଛି । ଆପଣ କିଛି କହିବେ ?

ମହାରାଜ ଏ ଧାଡ଼ିଟା ଶୁଣି ଅବାକ ହୋଇଗଲେ । କିଛି ସମୟ ଅଟକି ଯାଇ ମୋ' ପିଠିରେ ହାତ ମାରିଦେଇ କହିଲେ- ଆରେ ହାଡ଼ିବନ୍ଧୁ କହି ଦେଇ ମୋ' ମୁହଁକୁ ଅନାଇ ଟିକେ ମୁରୁକି ହସି ମୋତେ କହିଲେ "ଆରେ ଏଭଳି ପ୍ରଶ୍ନ ମୋତେ ଏ ପର୍ଯ୍ୟନ୍ତ କେହି ପଚାରିବାକୁ ସାହସ କରିପାରି ନାହାନ୍ତି । ତୁମେ......

ମୁଁ ଲକ୍ଷ୍ୟକଲି ସେ ଚାହାଣିରେ ଆଶ୍ଚର୍ଯ୍ୟ ଚକିତ ସହିତ କୌତୂହଳ ମିଶି ମିଶିଥିଲା, ତାଙ୍କ ମୋ' ମଧ୍ୟରେ ବାପ- ପୁଅ ବୟସର ବ୍ୟବଧାନ କିନ୍ତୁ ଆମେ ଦୁହେଁ ସମଧର୍ମୀ ହୋଇଥିବାରୁ ମୁଁ ପଚାରି ଦେଇଛି ।

ତାପରେ ଆରମ୍ଭ କଲେ-

ହଉ ଶୁଣ, ଏ ଭଦ୍ରଲୋକ ବାଞ୍ଛାନିଧି ପଣ୍ଡାଙ୍କର ବିଶେଷତ୍ୱ ହେଉଛି- ଏ ଦିନେ ଶିକ୍ଷକ, ଚିକିତ୍ସକ ପରେ ସମୟ ଚକ୍ରରେ ପ୍ରାସଙ୍ଗିକତା ଦୃଷ୍ଟିରୁ ହେଉ ବା ଆଦର୍ଶବାଦକୁ ନେଇ ମୋର ପ୍ରତ୍ୟକ୍ଷ ଓ ବଳିଷ୍ଠ ପ୍ରତିବାଦୀ ହୋଇଗଲେ । ପୁଣି ସମୟ ଆସିଲା ଅଳ୍ପ ଶିକ୍ଷିତରୁ ଉଚ୍ଚଶିକ୍ଷିତ ହୋଇଗଲେ । ଅନେକ ଅନୁଷ୍ଠାନର ସ୍ରଷ୍ଟା ଓ ପରିଚାଳକ ହୋଇଗଲେ । ତାଙ୍କର ଗୋଟିଏ ନିଃଶ୍ୱାସରେ ସୃଷ୍ଟି ତ ଆନ୍ୟ ନିଃଶ୍ୱାସରେ ପ୍ରଳୟ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଖରସ୍ରୋତା ତା'ର ପ୍ରଖର ସ୍ରୋତରେ ଯେପରି କେତେ ସାନବଡ଼ କାଠିକୁଟା ସହିତ କେତେ ଅଳିହାକୁ ନେଇଯାଇ ପରିବେଶକୁ ପରିଷ୍କାର କରିଦିଏ ଠିକ୍ ସେହିପରି ମେଳନର ଆନନ୍ଦ ମଧୁର ଭାବକୁ ନେଇ ନଈ ବାଲିକୁ ଚାଲିଯାଇଥିବା ବେଳେ ଗ୍ରାମର ୧୦/ ୧୫ ଜଣ ବିଶିଷ୍ଟ ଲୋକ ସବୁଦିନ ପରି ଆନନ୍ଦ ଓ ନିରାନନ୍ଦରେ ଭାଗ ନେଉଥିଲେ । ୧୦/୧୫ ଜଣ ଲୋକ ମୋ'

ସହ ଚାଲିଲେ । କେହି ଜାଣିପାରୁ ନଥିଲେ ମହାରାଜ କୁଆଡ଼େ ଯାଉଛନ୍ତି-

ଖରସ୍ରୋତାର ଲହଡ଼ି ଓ ସ୍ରୋତ ଏ ଭଳି ଭାବେ କଅଁଳା ବାଛୁରୀ ଯେପରି ଡେଇଁ ଡେଇଁ ଆଗକୁ ଚାଲୁଥାଏ । ଏଇ ଆକର୍ଷଣୀୟ ଦୃଶ୍ୟକୁ ଦେଖି ଆନନ୍ଦ ପାଇବା ପାଇଁ ଘଣ୍ଟା ଘଣ୍ଟା ଛିଡ଼ା ହୋଇ ଏ ଦୃଶ୍ୟକୁ ଦେଖି ମନକୁ ଆନନ୍ଦ ଦିଅନ୍ତି । ମହନ୍ତ ମହାରାଜ ନଈ ବାଲିକୁ ଯାଇଥିବା ବେଳେ ଅନେକ ମେଳନଯାତ୍ରୀ ଏଇ ଦୃଶ୍ୟକୁ ଦେଖି ଆନନ୍ଦ ପାଇବା ପାଇଁ ଯା' ଆସ କରୁଥିବାବେଳେ ମହନ୍ତ ମହାରାଜ ଯାହାକୁ ପାଉଛନ୍ତି ତା' ମୁହଁରେ ଅବିର ବୋଳୁଥାନ୍ତି । ଏଇଭଳି ଜଣେ ନଦୀର ଲହଡ଼ିକୁ ଦେଖିବାକୁ ବସିଥିବା ଦେଖି ତା'ର ମୁହଁର ପଛପଟରେ ଥାଇ ଅବିର ବୋଳି ଦେଲେ । ମହନ୍ତ ମହାରାଜ ଆଉ ଖସି ଆସିବା ପାଇଁ ବଳ ପାଇଲେ ନାହିଁ, ଅବିର ବୋଳି ହୋଇଥିବା ଲୋକ ଜଣକ ବଳବାନ ହୋଇଥିବାରୁ ମହନ୍ତ ମହାରାଜଙ୍କ ହାତ ଦୁଇଟିକୁ ଧରି ଟାଣିନେଲେ ।

ଦେଖଣାହାରୀ ଚାହିଁକି ଆଶ୍ଚର୍ଯ୍ୟ ହୋଇଗଲେ । ସାଙ୍ଗରେ ଥିବା ଲୋକ ମଧ୍ୟ ଭୟଭୀତ ହୋଇଗଲେ ।

ଏ କ'ଣ ହେଲା ? ସମସ୍ତଙ୍କ ମନରେ ଏଇ ପ୍ରଶ୍ନ, କାରଣ ଏ ଦୁହେଁ ଯେପରି ଅଶାନ୍ତ ସେହିପରି ଅସାଧାରଣ ବ୍ୟକ୍ତି ଥିଲେ । ଏ ହେଲା ଦର୍ଶକ ଓ ସହଚରଙ୍କ ଭାବନାର ବିଷୟ । ସେ ପାଖରେ ଏଇ ଅସାଧାରଣ ବ୍ୟକ୍ତି ଦ୍ୱୟଙ୍କ ଆଖିରୁ ଆନନ୍ଦାଶ୍ରୁ ଝରିବାରେ ଲାଗିଛି । ଏ କୋଳାଗ୍ରତ ଭାବରେ କ୍ଷଣକ ମଧ୍ୟରେ ଖରସ୍ରୋତାର ପ୍ରଖରସ୍ରୋତ ଯେପରି ବିଭିନ୍ନ ସ୍ଥାନରେ ଅଳିଆ, ଆବର୍ଜ୍ଜନା, ତା'ର ପ୍ରଖର ସ୍ରୋତରେ ଟାଣି ନେଇ ପରିବେଶକୁ ନିର୍ମଳ କରିଦିଏ ଏ କ୍ଷେତ୍ରରେ ଏ ଉଭୟଙ୍କ ମନ ମଧ୍ୟରେ ଥିବା ୨୦ ବର୍ଷର ସମସ୍ତ ଆବର୍ଜନା, ଦୁର୍ଭାବନା ଅବାରିତ ନୟନାଶ୍ରୁ ସାଦରେ ଭସେଇ ନେଲା । ଦୁଇଟି ଆତ୍ମା ଏକ ହୋଇଗଲା । ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହୋଇଗଲେ । କେବଳ ଆନନ୍ଦ ହିଁ ଆନନ୍ଦ । ଆଜି ସେ ଉଭୟ ଆମ ଦୃଷ୍ଟି ସମ୍ମୁଖରେ ନାହାନ୍ତି ସତ ମାତ୍ର ମଠର ଚତୁଃପାର୍ଶ୍ୱରେ ତାଙ୍କର ଅନ୍ତରରୁ ଆନନ୍ଦର କଳରୋଳ ଯେଉଁ ସ୍ୱରର ଲହରୀ ଶୁଣାଉଛି ଯା' ଏଇ ଅବ୍ୟକ୍ତ ସ୍ମୃତିକୁ ଅନୁଭବ ବ୍ୟକ୍ତ କରିପାରିବ ।

ଧନ୍ୟରେ ମହାତ୍ମା ଦୁହେଁ । ବର୍ତ୍ତମାନ କେବଳ ଅସୂୟା ଭାବରେ ସ୍ୱର ଦୂରରୁ ଶୁଭୁଛି ସିନା- କିନ୍ତୁ ସ୍ୱରର ଧର୍ମରେ ବହୁ ସମୟ ପରେ ସେ ସ୍ୱର ବାୟୁମଣ୍ଡଳରେ ମିଳେଇ ଯାଏ । ଏହା ହିଁ ସତ୍ୟ, ସତ୍ୟ, ସତ୍ୟ ।



# ମଦନମୋହନ ଶରଣ

*ଶ୍ରୀମତୀ ଆରତୀପ୍ରଭା ଭାରତୀ*

ମଦନ ମୋହନ ମୋ' ପ୍ରଣତି ଘେନ ଶରଣ ତୁମ୍ଭ ପୟରେ
ମାନସ ରାଇଜେ ସନ୍ତୋଷ ନୋହୁଛି ଭ୍ରମଇ ସାରା ସଂସାରେ ।।
ଦହୁଛି ଅନ୍ତର ଘୋର ସନ୍ତାପରେ ଆଧି ବ୍ୟାଧି ଜଳଧିରେ
ଦରଶନେ ବାରେ କର କୃପାମୟ ଅଧମ ଦୀନ ଜନରେ ।
ନ ଇଚ୍ଛଇ ପ୍ରଭୁ ସଂପଦ ବିଭବ ଭୋଗରୁ ତୁଟୁ କାମନା
ନମାଗଇ ଦେବ ମଘବା ଆସନ ତୁମ୍ଭ ଦରଶନ ବିନା ।
ମୋହର ବୋଲଇ ଆପଣାର ଛନ୍ତି ଯେତେ ପରାଣୀ ଦରବ
ମୋହର ମାନସ ତଦାକାର ହୋଇ ଅନ୍ତେ ବିଷାଦିତ ଭାବ ।
ହରୁଅଛି କାଳ ବୟସ ସମ୍ବଳ ଦିନୁଦିନ ଶକ୍ତିହୀନ
ହରାଇ ଶକତି ଶରୀର ଦୁର୍ଗତି ଦିଶଇ ସତେ ମଳିନ ।
ନଶ୍ୱର ଶରୀର ନଶ୍ୱର ସଂପଦ ଅଳୀକ ସଖା ସୋଦର
ନ ବୁଝଇ ମନ ଗୁରୁଶାସ୍ତ୍ର ଜ୍ଞାନ ଶୁଣିଲେ ହେଁ ବାରବାର ।
ଶବଦ ପରଶ ସ୍ୱରୂପ ସୁରସ ଗନ୍ଧେ ରସୁଥାଏ ମନ
ଶରଣ ପଶିବି ଅଭୟ ପୟରେ ଦଅ ପ୍ରଭୁ ଦିବ୍ୟ ଜ୍ଞାନ ।
ରହିନାହିଁ କେହି କ୍ଷତ୍ରୀ ନରପତି ସର୍ବେ କାଳ କବଳିତ
ରକ୍ଷାକର ମୋରେ ଦେଇ ସଦବୁଦ୍ଧି ହୋଇଲି ଏବେ ନିଶତ ।
ନର କଳେବର ମୁକତିର ଦ୍ୱାର ଶସ୍ତ୍ର ପୁରାଣ କଥନ
ନିସ୍ତାର କର ହେ ବଳିଆର ଭୁଜ ଇଷ୍ଟ ମଦନ ମୋହନ ।

(ଖଣ୍ଡିତର)



# ପୁଣ୍ୟପୀଠ ଖଣ୍ଡିତର ମଠ

*ଶ୍ରୀ ବୈରାଗୀ ଚରଣ ଘଡ଼ାଇ*

ଏହି ସେହି ପୂତ ପୀଠ ଖଣ୍ଡିତର
ମଠ ବିରାଜିତ ଏବେ
ଖରସ୍ରୋତା ତୀରେ ବିସ୍ତାରିଛି କାୟା
କୀରତି ପ୍ରସାରି ଭବେ ॥
ଆଦିରେ ମହନ୍ତ ଗୁଣେ ଗରୀୟାନ
ଶ୍ରୀ ସଦାଶିବ ଭାରତୀ
ନିତ୍ୟ ସାଧନାରେ ସିଦ୍ଧ ଗୁରୁବର
ଅସୀମ ତାଙ୍କ କୀରତି ॥
ଅଛି ଜନଶ୍ରୁତି ଛାଲ ପରେ ବସି
ହେଉଥିଲେ ନଦୀ ପାର
ଭାବିଲେ ଏକଥା ଚକିତ ମାନବ
ଧନ୍ୟ ସେହି ତପୀବର ॥
ଦଶଟି ପୁରୁଷ ଧରି ଏହି ମଠ
ରହିଛି ଗରିମା ଧରି
ଆରାଧ୍ୟ ଦେବତା ମଦନ ମୋହନ
ଅପୂର୍ବ ଲୀଳା ମାଧୁରୀ ॥
ଷାଠିଏ ଏକର ଏ ମଠର ଭୂମି
ବିବିଧ ଗ୍ରାମେ ବିରାଜି
ଚାଷୀଏ କର୍ଷଣ ଆପେ ବଞ୍ଚିଛନ୍ତି
ଇଷ୍ଟ ବୃତ୍ତି ହୃଦେ ରଂଜି ॥
ପୀଠ ସମାବୃତ ସୁରମ୍ୟ ବାଟିକା
ବିରାଜିତ ମନୋରମ
ରସାଳ ପିଜୁଳି ପଣସ କଦମ୍ବ
ଚମ୍ପକ ଜମ୍ବୁ ଶୋଭନ ॥

ଆଜିର ମହନ୍ତ ଶିଶିର ଭାରତୀ
ମୋର ସାନଭାଇ ପରି
କୋଳଥଳଠାରେ ପ୍ରଧାନ ଶିକ୍ଷକ
ଶିକ୍ଷା ସେବା ସ୍ନେହ ଭରି ॥
ତିନି ଦଶନ୍ଧିରୁ ଅଧିକ ବେନିଏ
ବିତାଇଛୁ ସେହି ଧାମେ
ବେନିଙ୍କ ଭାବନା କରମ କୁଶଳ
ବେନିଙ୍କୁ ଲୋଡ଼ୁ ମରମେ ॥
ତାହାଙ୍କ ପୂର୍ବରୁ ଥିଲେ ମଠାଧୀଶ
ନବ କିଶୋର ଭାରତୀ
ପ୍ରତିଭା ପ୍ରଦୀପ୍ତ ବିଚକ୍ଷଣ ଗୁଣୀ
ଅମ୍ଳାନ ତାଙ୍କ କୀରତି ॥
ସଂଗୀତ ସାଧକ କବି ଗୀତିକାର
ଅଶେଷ ପ୍ରତିଭାଧାରୀ
ଗୁଣ ଗ୍ରାହୀ ସୁଧୀ ସମାବେଶ କଲେ
ମଦନ ମୋହନ ସ୍ମରି ॥
ପ୍ରଥମ ମଧମ ଉଚ୍ଚ ବିଦ୍ୟାଳୟ
ରଚନାରେ ତାଙ୍କ ଦାନ
ମାନସ ଆର୍ଥିକ ସହାୟତା କରି
ଥାପି କୀରତି ମହାନ ॥
ଖଣ୍ଡିତର ଘାଟ- ମଙ୍ଗଳା ଆଶ୍ରିତ
ତାହାଙ୍କ ସାଧନା ପୀଠ
ମହତ ଉଦ୍ୟମେ ନିର୍ମିତ ମନ୍ଦିର
ସମାଗମ ସାଧୁ ଭକ୍ତ ॥
ଏବର ମହନ୍ତ ମଠରେ ଉନ୍ନତି
ସତତ ଚେଷ୍ଟା ନିରତ
ପ୍ରାଚୀନ ମନ୍ଦିର ଜୀର୍ଣ୍ଣ ଦେବାଳୟ
ନବବିଭା ପ୍ରତିଭାତ ॥

ଖରସ୍ରୋତା ଧାରେ ଗଢ଼ିଛନ୍ତି ରମ୍ୟ
ନବୀନ ଶିବ ମନ୍ଦିର
ନିତ୍ୟ ପୂଜା ବିଧି ମାନସିକ ସିଦ୍ଧି
ଧନ୍ୟ ପ୍ରଭୁ ଯଜ୍ଞେଶ୍ୱର ॥
ବରଷ ବରଷ ନିତ୍ୟ ପୂର୍ଣ୍ଣିମାରେ
କରି ଗୀତା ପାରାୟଣ
ଭକତ ସାଧକ ଆସନ୍ତି ଏ ପୀଠେ
ନିରତ ଗୀତା ଗାୟନ ॥
ମଦନ ମୋହନ ଚରଣ କମଳେ
ଏତିକି ମୋ' ନିବେଦନ
ଶିଶିର ଭାରତୀ ମହନ୍ତ ଗୋସ୍ୱାମୀ
ହୋଇଥାନ୍ତୁ ଆୟୁଷ୍ମାନ ॥
ଏପୀଠ କୀରତି ମଠର ବିକାଶ
ପ୍ରତି ତାଙ୍କ ନିତ୍ୟ ଧ୍ୟାନ
ମଂଗଳ ଦାୟିନୀ ମଂଗଳା କରୁଣା
ପୂର୍ଣ୍ଣ କରୁ ମନସ୍କାମ ॥

ଅବସର ପ୍ରାପ୍ତ ପ୍ରଧାନଶିକ୍ଷକ
ଚିନ୍ତାପଲ୍ଲୀ
ମୋ:- ୯୪୩୭୮୬୭୦୪୩





# ମୋ' ଗାଁ' ଖଣ୍ଡିତର

*ଶ୍ରୀ ଅନାଦି ଚରଣ ସାହୁ*

ଆହାକି ସୁନ୍ଦର ମୋ' ଗାଁ'ର ସେଇ
ମନଲୋଭା ପରିବେଶ
ପ୍ରକୃତି କୋଳରେ ସବୁଜ କ୍ଷେତର
ମୁରୁକି ମୁରୁକି ହସ ॥
ଚିର ଖରସ୍ରୋତା ବହି ଯାଉଅଛି
ମୋ' ଗାଁ'ର ଦେହ ଛୁଇଁ
ସେଥିପାଇଁ ପରା ପ୍ରକୃତି ରହିଛି
ମୋ' ଗାଁ'ର ରାଣୀ ହୋଇ ॥
ମାଟିରେ ମୋ' ଏଠି ସୁନା ଫଳିଥାଏ
ବରଷକ ବାରମାସ
ମା' ମଙ୍ଗଳାଙ୍କ ଅପାର କୃପାରୁ
ମୁହଁରେ ଫୁଟଇ ହସ ॥
ଦେବଦେବୀଙ୍କର ବାସସ୍ଥଳୀ ଇଏ
ଅନାଦି ଅନନ୍ତ କାଳୁ
କେତେ ଯେ ମନ୍ଦିର ମଠ ରହିଅଛି
ପୁରାତନ ଯୁଗ ବେଳୁ ॥
ବହୁ ଦେବଦେବୀ ପୂଜା ପାଉଛନ୍ତି
ମଠ ମଧରେ ରହି
ପ୍ରଭୁ ମଦନ ମୋହନ ଜୀଉଙ୍କର
ବିଜେସ୍ଥଳୀ ପରା ଏଇ ॥
ଶ୍ରୀଶ୍ରୀ ଶିଶିର କୁମାର ଭାରତୀ ଗୋସ୍ୱାମୀ
ମହନ୍ତ ରାଜ ମଠରେ
ମଠ ପ୍ରତି ଥିବା ତାଙ୍କ ଅବଦାନ
ଯେତେ କହିଲେ ବି ନସରେ ॥

ତାଙ୍କ ଯୋଗୁ ମଠେ ଝୁଲଣ ଯାତରା
ହୁଏ ବଡ଼ ଆଡ଼ମ୍ବରେ
ଉତ୍ସବ ମୁଖର ହୋଇଉଠେ ଗାଁ'
ସର୍ବେ ଆନନ୍ଦ ବିଭୋରେ ॥
ପୂର୍ଣ୍ଣିମୀ ସଂକ୍ରାନ୍ତି ପରବପର୍ବାଣି
ଆଉ ଯେତେ ଯାନିଯାତରା
ବହୁ ଆଡ଼ମ୍ବରେ ପାଳନ କରନ୍ତି
ବରଷା ହଉ କି ଖରା ॥
ପାଖରେ ତାଙ୍କର ନଥିଲେ ବି ଧନ
ନିର୍ମଳ ତାଙ୍କରି ମନ
ଦୁଃଖୀ ରଙ୍କୀଟିଏ ତାଙ୍କ ପାଖେ କେବେ
ହୋଇନାହିଁ ହୀନିମାନ ॥
ତାଙ୍କ ପାଇଁ ପରା ସଭଏଁ ସମାନ
ଗରିବ ହଉ କି ଧନୀ
ସଭିଙ୍କର ଦୁଃଖ ସୁଖର ସେ ସାଥୀ
ଅଟନ୍ତି ସେ ସ୍ୱାଭିମାନୀ ॥
ବହୁ ଦୁଃଖ କଷ୍ଟ ଝଡ଼ ଝଞ୍ଜା ସହି
କରୁଛନ୍ତି ଦେବ ସେବା
ନିଃସ୍ୱାର୍ଥ ଭାବନା କର୍ମ କରି କରି
ଅଟନ୍ତି ସେ ମହାଯୋଦ୍ଧା ॥
ତାଙ୍କରି ହାତରେ ଗଢ଼ିଛନ୍ତି ବହୁ
ଛାତ୍ର ଛାତ୍ରୀଙ୍କ ଜୀବନ
ତାଙ୍କରି ଆଶିଷ ପାଇ କରି କେତେ
ଜୀବନ ହୋଇଛି ଧନ୍ୟ ॥
ଫଗୁଣରେ ଫଗୁ ଖେଳିବା ପାଇଁକି
ବିମାନରେ ଝୁଲି ଝୁଲି
ବରଷକ ଥରେ ପ୍ରଭୁ ରାଧା କୃଷ୍ଣ
ଆସନ୍ତି ଗାଁ'କୁ ବୁଲି ॥

ମୋ’ ଗାଁ’ ଆଜି ସାରା ରାଇଜରେ
ଯାହା ପାଇଁ ସିନା ଖ୍ୟାତ
ଜଗତ ଜନନୀ ମଙ୍ଗଳମୟୀ ସେ
ଉଡ଼ାଉଛି ତା’ର ନେତ ॥
ଅଭୟଦାୟିନୀ ମା’ ମଙ୍ଗଳା ସେ
ଅନାଥର ନାଥ ସେହି
ତାଙ୍କରି କଲ୍ୟାଣ ବାରିଧାରା ଯୋଗୁଁ
ବିପଦେ ପଡ଼ିନି କେହି ॥
ଘଣ୍ଟ ଘୋଡ଼ାଇକି ରଖିଛି ସଭିଙ୍କୁ
ସଭିଏଁ ସନ୍ତାନ ତା’ର
ତା’ ଦରବାରେ ସଭିଏଁ ସମାନ
ନାହିଁ କିଛି ବାଛ ବିଚାର ॥
କ୍ରୀଡ଼ା ଜଗତର କେନ୍ଦ୍ରସ୍ଥଳୀ ପୀଠ
ମୋ’ ଗାଁ’ "ଖଣ୍ଡିତର"
ସାରା ଭାରତରେ ଅରଜିଛି ସତେ
କୋଟି କୋଟି ପୁରସ୍କାର ॥
କବାଡ଼ି ଖେଳର ପେଣ୍ଠସ୍ଥଳ ଇଏ
ସାରା ଭାରତରେ ଜଣା
ଏହିଠାରେ ଖେଳି ଅନେକ ଖେଳାଳୀ
ଆଜି ବିଶ୍ୱ ସ୍ତରରେ ଗଣା ॥
ମୋ’ ଗାଁ’ ପ୍ରତିଭା ସରିନି ଏଇଠି
ଆହୁରି ଅନେକ ଅଛି
ସଂକ୍ଷେପରେ ଖାଲି ବାଖାଣିଲି ମୁହିଁ
ସମୁଦ୍ର ବାଲିରୁ କିଛି ॥

କ୍ରୀଡ଼ା ଶିକ୍ଷକ, ଖଣ୍ଡିତର ହାଇସ୍କୁଲ



## ଦଶ ନାମୀ ସାଧୁଃ-

୧. ତୀର୍ଥ- ତ୍ରିବେଣୀ ସଂଗମେ ତୀର୍ଥେ ତତ୍ତ୍ୱ ମସ୍ୟାଦି ଲକ୍ଷଣେ
ସ୍ନାତ୍ୱା ତତ୍ତ୍ୱ ଭାବେନ ତୀର୍ଥନାମା ସ ଉଚ୍ୟତେ ।

୨. ଆଶ୍ରମ- ଆଶ୍ରମ ଗ୍ରହଣେ ପୌଢ଼ ଆଶାପାଶ ବିବର୍ଜିତଃ
ଯାତାୟାତ ବିନିର୍ମୁକ୍ତ ଏଷଃ ଆଶ୍ରମ ଉଚ୍ୟତେ ।

୩. ବନ- ସୁରମ୍ୟେ ନିର୍ଜନ ସ୍ଥାନେ ବନେ ବାସଂ କରୋତି ଯଃ
ଆଶା ପାଶ ବିନିର୍ମୁକ୍ତୋ ବନ ନାମା ସ ଉଚ୍ୟତେ ।

୪. ଅରଣ୍ୟ- ଅରଣ୍ୟେ ସଂସ୍ଥିତୋ ନିତ୍ୟ ମାନନ୍ଦେ ନନ୍ଦନ ବନେ
ତ୍ୟକ୍ତ୍ୱା ସର୍ବ ମିଦଂ ବିଶ୍ୱ ମରଣ୍ୟଂ ପରିକୀର୍ତ୍ତିତେ ।

୫. ଗିରି- ବାସୋ ଗିରି ବନେ ନିତ୍ୟଂ ଗୀତାଧ୍ୟୟନ ତତ୍‌ପରଃ
ଗମ୍ଭୀରା ଚଳ ବୁଦ୍ଧିଶ୍ଚ ଗିରିନାମା ସ ଉଚ୍ୟତେ

୬. ପର୍ବତ- ବସନ୍ ପର୍ବତ ମୂଳେଷୁ ପ୍ରୌଢ଼ ଜ୍ଞାନଂ ବିଭର୍ତ୍ତିଯଃ
ସାରା ସାରଂ ବିଜାନାତି ପର୍ବତଃ ପରିକୀର୍ତ୍ତ୍ୟତେ ।

୭. ସାଗର- ତତ୍ତ୍ୱ ସାଗରୋ ଗମ୍ଭୀରୋ ଜ୍ଞାନରତ୍ନ ପରିଗ୍ରହଃ
ମର୍ଯ୍ୟାଦା ନୈବ ଲଂଘେତ ସାଗରଃ ପରିକୀର୍ତ୍ତ୍ୟତେ ।

୮. ସରସ୍ୱତୀ-ସ୍ୱରଜ୍ଞାନ ରତୋ ନିତ୍ୟଂ ସ୍ୱରବାଦୀ କବୀଶ୍ୱରଃ
ସଂସାର ସାରୋ ସାର ହନ୍ତା ସୌହି ସରସ୍ୱତୀ ।

୯. ଭାରତୀ- ବିଦ୍ୟା ଭାରେଣ ସଂପୂର୍ଣ୍ଣ ପୂର୍ଣ୍ଣ ସର୍ବଂ ଭାର ପରିତ୍ୟଜନ୍
ଦୁଃଖ ଭାର ନଜାନାତି ଭାରତୀ ପରିକୀର୍ତ୍ତ୍ୟତେ ।

୧୦. ପୁରୀ- ଜ୍ଞାନ ତତ୍ତ୍ୱେନ ସଂପୂର୍ଣ୍ଣ ପୂର୍ଣ୍ଣତତ୍ତ୍ୱ ପଦେ ସ୍ଥିତଃ
ପରଂବ୍ରହ୍ମ ରତୋ ନିତ୍ୟଂ ପୁରୀ ନାମା ସ ଉଚ୍ୟତେ ।



# ଆତ୍ମଷଟକମ୍

## (ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ)



ମନୋବୁଦ୍ଧ୍ୟହଂକାରଚିତ୍ତାନି ନାହଂ
ନ ଚ ଶ୍ରୋତ୍ରଜିହ୍ୱେ ନ ଚ ଘ୍ରାଣନେତ୍ରେ ।
ନ ଚ ବ୍ୟୋମଭୂମିର୍ନ ତେଜୋ ନ ବାୟୁଃ
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥୧॥

ନ ଚ ପ୍ରାଣସଂଜ୍ଞୋ ନ ବୈ ପଞ୍ଚବାୟୁଃ
ନ ବା ସପ୍ତଧାତୁର୍ନ ବା ପଞ୍ଚକୋଶାଃ ।
ନ ବାକ୍ ପାଣି ପାଦଂ ନ ଚୋପସ୍ଥପାୟୁଃ
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥୨॥

ନ ମେ ଦ୍ୱେଷରାଗୌ ନ ମେ ଲୋଭମୋହୌ
ମଦୋ ନୈବ ମେ ନୈବ ମାତ୍ସର୍ଯ୍ୟଭାବଃ ।
ନ ଧର୍ମୋ ନ ଚାର୍ଥୋ ନ କାମୋ ନ ମୋକ୍ଷଃ
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥ ୩ ॥

ନ ପୁଣ୍ୟଂ ନ ପାପଂ ନ ସୌଖ୍ୟଂ ନ ଦୁଃଖଂ
ନ ମନ୍ତ୍ରୋ ନ ତୀର୍ଥଂ ନ ବେଦା ନ ଯଜ୍ଞାଃ ।
ଅହଂ ଭୋଜନଂ ନୈବ ଭୋଜ୍ୟଂ ନ ଭୋକ୍ତା
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥୪ ॥

ନ ମେ ମୃତ୍ୟୁଶଙ୍କା ନ ମେ ଜାତିଭେଦଃ
ପିତା ନୈବ ମେ ନୈବ ମାତା ନ ଜନ୍ମଃ ।
ନ ବନ୍ଧୁର୍ନ ମିତ୍ରଂ ଗୁରୁର୍ନୈବ ଶିଷ୍ୟଃ
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥ ୫ ॥

ଅହଂ ନିର୍ବିକଳ୍ପୋନିରାକାରରୂପୋ
ବିଭୁର୍ବ୍ୟାପ୍ୟ ସର୍ବତ୍ର ସର୍ବେନ୍ଦ୍ରିୟାଣାମ୍ ।
ସଦା ମେ ସମତ୍ୱଂ ନ ମୁକ୍ତିର୍ନ ବନ୍ଧଃ
ଚିଦାନନ୍ଦରୂପଃ ଶିବୋଽହମ୍ ଶିବୋଽହମ୍ ॥ ୬ ॥

॥ ଇତି ଶ୍ରୀମତ୍ ଶଙ୍କରାଚାର୍ଯକୃତ ଆତ୍ମଷଟକମ୍ ସମ୍ପୂର୍ଣ୍ଣମ୍ ॥



